# ସମକାଳ କାବ୍ୟତତ୍ତ୍ୱ ଓ କବି ହରିହର ମିଶ୍ର

ନକୁଳ ଚଂଦ୍ର ସାହୁ

ପ କ୍ଷୀ ଘ ର ପ୍ର କା ଶ ନୀ

ସମକାଳ କାବ୍ୟତତ୍ତ୍ୱ ଓ କବି ହରିହର ମିଶ୍ର (ପ୍ରବନ୍ଧ ସଂକଳନ)
ନକୁଳ ଚନ୍ଦ୍ର ସାହୁ, ଗୋଡ଼ି ସାହି, କଟକ -୭୫୪୦୦୬
ଫୋନ୍ - ୯୪୩୭୭ ୪୦୨୬୪

ପ୍ରକାଶକ : ପକ୍ଷୀଘର ପ୍ରକାଶନୀ

ପ୍ରଥମ ସଂସ୍କରଣ : ୨୦୧୯

..................................................................................

SAMAKALA KABYATATWA 'O' KABI HARIHAR MISHRA

by NAKULA CHANDRA SAHOO

Publisher : **Pakshighar Prakashanee**
32, Madhusudan Nagar
Bhubaneswar-01 Odisha, India.
Ph. +91 94385 59778,
e-mail : pakshighara1@gmail.com
Cover : Sushil Pohan

1st Edition : 2019

Price : ₹200

..................................................................................

# ସୂଚୀପତ୍ର

# ଏଇ ବହି କଥା

ସମାଲୋଚନା କ'ଣ ଏବଂ ଏହାର କାର୍ଯ୍ୟ କ'ଣ? କଳା ସର୍ଜନା ପାଇଁ ଆଲୋଚନା, ବିଶ୍ଳେଷଣ, ମୂଲ୍ୟାୟନ ଓ ସମାଲୋଚନା କେତେଦୂର ଅପରିହାର୍ଯ୍ୟ? ସୃଷ୍ଟି ସ୍ରଷ୍ଟାକୁ ଅମର କରେ ଯେତେବେଳେ ସୃଷ୍ଟିଟି ରହେ ଅମୃତ। ସୃଷ୍ଟିଟି ସପ୍ରାଣ, ସୃଷ୍ଟିଟି ଏଣୁ ଅମୃତ, ସମାଲୋଚନା ଦ୍ୱାରା ଏହା ହୋଇଥାଏ ପ୍ରମାଣିତ! ମଣିଷକୁ ଯେମିତି ଚିହ୍ନାଏ ତା'ର ନାମ, କଳାକୁ ସେମିତି ପରିଚିତ କରାଏ ତାହାର ସମୀକ୍ଷା ଓ ବିଶ୍ଳେଷଣ।

... Criticism promotes creation; critical activity of a high order is considered necessary for successful creation. (History and Principles of Literary criticism, by Dr. Raghukul Tilak, Page 5)!

ସ୍ପିଙ୍ଗାର୍ଣ୍ଣ ଲେଖିଛନ୍ତି, The sole task of criticism is to answer three questions: what has the artist tried to express? How has he succeeded in expressing it? Was it worth expressing?

ଏହି ତିନୋଟି ଦୃଷ୍ଟିରୁ ସାଧାରଣତଃ କୃତିତ୍ୱକୁ ମାପି ମୂଲ୍ୟାୟନ କରିଥାନ୍ତି ସମୀକ୍ଷକ, ସମାଲୋଚନାର ସ୍ୱଭାବ ଓ ସଂଜ୍ଞା ଡ଼. ତିଳକଙ୍କ ବିବେଚନ: Criticism is play of the mind on a work of literature, and its function is to examine its excellencies and defects, and finally to evaluate its artistic worth.

ସମାଲୋଚନା ଦ୍ୱାରା ପ୍ରଶଂସନୀୟ ଗୁଣ ଓ ତ୍ରୁଟି ଧରା ପଡ଼େ ଏବଂ ରଚନାର କଳାତ୍ମକ ମୂଲ୍ୟ ହୁଏ ନିର୍ଦ୍ଧାରଣ । ଝିଅଟିଏ ପାଇଁ ଜାମାତାଟିଏ ପରି ସୃଷ୍ଟିଟିଏ ପାଇଁ ସମାଲୋଚନାର ଆବଶ୍ୟକତା ଅପରିହାର୍ଯ୍ୟ । ଯେମିତି ମାତୃତ୍ୱ ଲାଭ ରହିତ ଜଣେ ନାରୀର ଜୀବନ ବ୍ୟର୍ଥ ଠିକ୍ ସେମିତି ଯେଉଁ କବିତା, କାବ୍ୟ, କଳା ବା ସୌନ୍ଦର୍ଯ୍ୟ ସମୀକ୍ଷାର କଷଟିରେ କଷା ନଯାଇଥାଏ ଓ ତାହା ପରିତ୍ୟକ୍ତ ଉପଳ ! ବ୍ୟର୍ଥ ତା' ଜୀବନ । ମୂଲ୍ୟାୟନ ଦିଏ ସର୍ଜ୍ଜନା ଉତ୍କର୍ଷତାର ପ୍ରମାଣ । ସମୀକ୍ଷା, ବିଶ୍ଳେଷଣ, ଆଲୋଚନା ଓ ସମାଲୋଚନା ଏକ ପ୍ରକାର କଳା ମାପକ ପଦ୍ଧତି । କଳାର ଗୁଣାତ୍ମକତା ଓ ଉତ୍କର୍ଷତାକୁ କରାଇଥାଏ ଅନୁଭବ । ସୁନ୍ଦରକୁ ଚିହ୍ନିବାକୁ ମୂଲ୍ୟାୟନ ଓ ସମୀକ୍ଷଣ ହିଁ କଳାର ପ୍ରାଣ ! ମୃଗ ଜାଣି ନଥାଏ ମୃଗମଦର ଗୁଣ, ଜାଣେ କବିରାଜ । ଯେମିତି ବନରୁ ବଜାରକୁ ବହନ କରି ଚଂଦନ କାଷ୍ଠ ଆଣୁଥିବା ବାହକଟି ଜାଣିନଥାଏ ଚଂଦନର ମହତ୍ୱ, ଠିକ୍ ସେମିତି କବିତା ତତ୍ତ୍ୱ ଓ ସମାଲୋଚନାକୁ ଅନୁଭବ କରିଥାଏ କେବଳ କ୍ରିଟିକ୍ । କଳାର ପରିଚୟକୁ କାଳ ଲିଭାଇ ଦେବା ବେଳେ ଏକମାତ୍ର ସମାଲୋଚନା ତାକୁ ବଂଚାଇ ରଖେ ସୁରକ୍ଷିତ ।

ଅଟକିନ୍ସ ଲେଖିଛନ୍ତି, କ୍ରିଟିସିଜିମ୍ ଇଜ୍ ଦି ପ୍ଲେ ଅଫ୍ ମାଇଣ୍ଡ ଅନ୍ ଦି ଏସ୍ଥେଟିକ୍ କ୍ୱାଲିଟିସ୍ ଅଫ୍ ଲିଟରେଚର୍ ହାଭିଙ୍ଗ୍ ଫର୍ ଇଟ୍ସ ଅବ୍‌ଜେକ୍ଟ ଆନ୍ ଇଣ୍ଟେରପ୍ରିଟେସନ୍ ଅଫ୍ ଲିଟିରାରୀ ଭାଲ୍ୟୁସ୍ । ସମାଲୋଚନାର ପରିବର୍ତ୍ତିତ ଭୂମିରେ ନିର୍ଦ୍ଧାରିତ, ସମାଲୋଚନାର ପ୍ରଧାନ କାର୍ଯ୍ୟ ନାଂଦନିକ ଅର୍ଥାତ୍ ଟୁ ପ୍ରମୋଟ ଆପ୍ରିସିଏସନ୍ ଏଣ୍ଡ୍ ଇଂଜଏମେଣ୍ଟ ଅଫ୍ ଲିଟିରେଚର ! ଯାହା ଏହି ବହିର ଆଭିମୁଖ୍ୟ । ଜଣେ କବିଙ୍କ କେତୋଟି ବହିର କଳାର ସୂକ୍ଷ୍ମ ଗୁଣର ହୋଇଛି ମୂଲ୍ୟାୟନ । ଜଣେ ପ୍ରବଳ ସ୍ରଷ୍ଟାଙ୍କୁ ପ୍ରଦାନ କରାଯାଇଛି କାବ୍ୟ -ନ୍ୟାୟ ।

ଯେଉଁ କାବ୍ୟିକ ପ୍ରତିଷ୍ଠାର ନାମ ହରିହର ମିଶ୍ର, ତାହାଙ୍କ ଜନ୍ମଭୂମି 'ଶଙ୍ଖନାଭି' (ପ୍ରଥମ ପ୍ରକାଶ ୧୯୭୩) ! ଯଦିଓ ଏହା ୧୯୬୪ର ଲେଖା । ରଚନାକାଳ ଓ ପ୍ରକାଶ ସମୟ ଭିତରେ ବ୍ୟବଧାନ ଥାଏ ହରିହର ମିଶ୍ରଙ୍କ କୃତିରେ ।

ନାଭିଚ୍ଛେଦ କରି ସେ ଯେତେବେଳେ 'ଅକ୍ଷମଦେବତା'କୁ ଜନ୍ମ ଦେଲେ ସେତେବେଳେ ବିଂଶ ଶତକ ଇତିହାସ ଫର୍ଦ୍ଦରେ କାଳାଙ୍କ ୧୯୭୮ ମସିହା । ତାଙ୍କ ଚେତନରୁ 'ଚନ୍ଦ୍ରବିମ୍ବ' ପ୍ରକାଶିତ ହେବାବେଳକୁ ସମୟ ୧୯୮୧ । ୧୯୮୨ ପ୍ରକାଶିତ ହୋଇଛି 'ଲାଲ କଢ଼ର ତପସ୍ୟା' । ଆଗକୁ ସମୟର ଅକ୍ଷାଂଶରେ ସର୍ଜନାର ଦ୍ରାଘିମାରେ ଦିଶିଛି ଗୋଟିଏ ଦୃଶ୍ୟ, ଚରୈବତି ! ଏକମାତ୍ର ଚରୈବତି !

୧୯୮୭ର ଝରକାରେ ଦିଶିଛି 'ଚାହାଣୀ ମଣ୍ଡପ' । 'ସ୍ୱପ୍ନ ବିନିମୟ' ବେଳକୁ ୧୯୯୨, ବିଂଶ ଶତକର ଶେଷ ଦଶନ୍ଧି ଡେ଼ଉଁଛି ସଂସ୍କୃତିର ଦ୍ରୁତ ଭୂଗୋଳକୁ ! ୧୯୯୪ ପ୍ରକାଶିତ ହୋଇଛି 'ଭିତିରି ଚନ୍ଦନ' କାବ୍ୟଚିତ୍ର । 'ଦର୍ପଣଶିଳା' ଏବଂ 'ଶବ୍ଦ ଏକା ଏକା ଏକତ୍ର' ୧୯୯୫ ମସିହାରେ ସମୟକୁ କରିଛନ୍ତି ମୁଖରିତ । ୧୯୯୮ ମସିହା 'ଅଣ ଅକ୍ଷର' ଓ 'ସଂଧ୍ୟା ଦର୍ଶନ'ର ପ୍ରକାଶନ ଘଟିଥିବା ବେଳେ ୧୯୯୯ ମୁକ୍ତି ପ୍ରାପ୍ତ ହୋଇଥିଲା 'ସ୍ୱରବର୍ଣ୍ଣ' ଶୀର୍ଷକ କାବ୍ୟିକ ନକ୍ଷତ୍ର । ମହାନ୍ ବିଂଶ ଶତକ ଏକ ଡ଼ଜନ କାବ୍ୟିକ ସୁଷମା କବି ହରିହର ମିଶ୍ରଙ୍କ ଠାରୁ ଉପହାର ଗ୍ରହଣ କରିବା ପରେ ଏକବିଂଶ ଶତକକୁ ପୁଷ୍ପ ପ୍ରସ୍ଫୁଟିତ କରାଇବାକୁ ଦେଇଛି ଅନୁମତି ।

ଏକବିଂଶ ଶତକ ପ୍ରଥମ ଦଶନ୍ଧି 'ଅର୍ଦ୍ଧମାନବୀ', 'ପାହାଡ଼ର ଡେ଼ଣା', 'ନେତ୍ରୋତ୍ସବ', 'ଧୂଳିମାଟିର ସ୍ୱର୍ଗ', 'ଶୟନ ପ୍ରତିମା', 'ଅନେକ ଆଶ୍ଚର୍ଯ୍ୟ', ଓ 'ଦିବ୍ୟ ଅସନ୍ତୋଷ' ପରି ସାତୋଟି ରତ୍ନ କରିଛି ସମର୍ପଣ । ଦ୍ୱିତୀୟ ଦଶକର ପରିପକ୍ୱ ସୃଷ୍ଟି ଯଥାକ୍ରମେ –

ବ୍ରହ୍ମ କଣିକା (୨୦୧୨)

କୋଇଲି ତୁ ଚୁପ୍ ରହ (୨୦୧୩)

ଦିଷ୍ଟି (୨୦୧୫)

ଇନ୍ଦ୍ରାଣୀ (୨୦୧୫)

ଗୂଢ଼ପଦ (୨୦୧୭) ଏବଂ

ଭୁଜବର୍ଣ୍ଣ (୨୦୧୭) ଓ ଅକିଞ୍ଚନ (୨୦୧୮)। ଏ ସବୁର ପ୍ରକାଶକାଳ ଓ ରଚନାକାଳ ଭିତରେ ରହିଛି ତାରତମ୍ୟ।

କବିତା ଏକ ଅସ୍ତିତ୍ୱ, ହରିହର ମିଶ୍ରଙ୍କ ଶ୍ରେଷ୍ଠତମ କଳାତ୍ମକ ଅସ୍ତିତ୍ୱ। ସେ ବିସ୍ମୟକର ସାରସ୍ୱତ 'ଧ୍ରୁବ' ନକ୍ଷତ୍ର, ତାଙ୍କ ଆଲୋକ ସମୟ ସମୁଦ୍ରରେ ଦିଗହରା ଶବ୍ଦଶିଳ୍ପୀଙ୍କ ଦିଗ ନିର୍ଣ୍ଣୟକ ପ୍ରେରଣାର ଉତ୍ସ। ହରିହର ମିଶ୍ର କବି; ଗୋଟିଏ ଦୁଇ ଶତାବ୍ଦୀ ଦୈର୍ଘ୍ୟ କାବ୍ୟିକ ଆନ୍ଦୋଳନର ଅନ୍ୟ ନାମ! ସାରସ୍ୱତ ଇତିହାସର ପ୍ରାଣ! ନାଟ୍ୟ ଚେତନା, କଥାକଳା, ଆଲୋଚନା, ଉପନ୍ୟାସ ଓ କବିତା – କେଉଁ ବିଷୟରେ ଯେ ସେ ନୁହନ୍ତି ସାରସ୍ୱତ ନାୟକ, କିମ୍ବଦନ୍ତୀ ପୁରୁଷ! ପୁଣି ତାଙ୍କ ପୁରୀ-ଶ୍ରୀକ୍ଷେତ୍ରବାସ, ଆସ୍ପୃହା ଓ କରୁଣାର ନିତ୍ୟ ରାସ କ୍ଷେତ୍ର, ତାହାଙ୍କ ବାହ୍ୟ ଓ ଚେତନାର ଅନ୍ତର୍ମଣ୍ଡଳକୁ କରିଛି ପ୍ରଭାବିତ। ନିଜେ ଅଣ ଅକ୍ଷର ଯେମିତି ପୁଣ୍ୟର ପଂକ୍ତି ରୂପରେ ଧବଳ ପୁଷ୍ପର ଧାଡ଼ି ହୋଇ ବସି ଯାଇଛନ୍ତି ଫର୍ଦ୍ଦରେ! ହରିହର ମିଶ୍ରଙ୍କ କବିତା ସାର୍ଥକ, ରସୋତ୍ତୀର୍ଣ୍ଣ ଓ ସୁନ୍ଦର। କବିତାର ଏକମାତ୍ର ବ୍ୟାଖ୍ୟା ଯେ ତାହା କବିତା! ତାହାକୁ ବୁଝାଇବା ଦରକାର ନଥାଏ। ଆଷାଢ଼ ଆକାଶର ଖଣ୍ଡେ ଭାସମାନ ନବମେଘକୁ ଅନୁଭବ କରି ହେବ, ହେବନାହିଁ ବୁଝାଇ! ଗୋଟିଏ ସଦ୍ୟ ପ୍ରସ୍ଫୁଟିତ ଗୋଲାପକୁ ବୁଝାଇବ କିପରି? କୋକିଳର ମଧୁ ବର୍ଷି କୂଜନ କିମ୍ବା ଝରଣାର କଳକଳ ଯେମିତି ଜୀବନ ସଂଗୀତ! ଠିକ୍ ସେମିତି କବିତାର ଆଙ୍ଗିକ।

ମୌଖିକ ରୀତି ସହିତ କାବ୍ୟରୀତିକୁ ମିଶ୍ରିତ କରି ହରିହର ମିଶ୍ର ରଚନା କରିଛନ୍ତି ପଂକ୍ତି। ତାଙ୍କ ପଂକ୍ତିରେ ଆବେଗ ସଂଚାରୀ ସ୍ୱଭାବ ସହିତ ଗଦ୍ୟର ପରିଛନ୍ନତା ରଚନା କରିଛି କାବ୍ୟ ସୁଷମା। ପ୍ରାତ୍ୟହିକ ଜୀବନର ବ୍ୟବହାର୍ଯ୍ୟ ଭାଷା ସହିତ ପ୍ରାଣ ପ୍ରାଚୁର୍ଯ୍ୟ ପୂର୍ଣ୍ଣ ସାଂସ୍କୃତିକ ଭାଷା ମିଶ୍ରଣରେ ସମକାଳ ସାଂସ୍କୃତିକ ଜୀବନ ଦୃଶ୍ୟପଟର ଅନୁଭବ ହରିହର ମିଶ୍ରଙ୍କ ଧାଡ଼ିର ମନୋହାରିଣୀ ଗୁଣ।

'ଚାହାଣୀ ମଣ୍ଡପ', 'ଭିତିରି ଚନ୍ଦନ', 'ସଂଧ୍ୟା ଦର୍ଶନ', 'ଅଣ ଅକ୍ଷର' ଓ 'ବ୍ରହ୍ମ କଣିକା' ପରି ଗୁଡ଼ିଏ ଶୀର୍ଷକ ପାଠକଙ୍କୁ

ପଠନ ପୂର୍ବରୁ କରେ ଅତର୍କ୍କ ଏବଂ କବିତା ଲାଗେ ଜଗନ୍ନାଥ ଜଗନ୍ନାଥ ! ଓଡ଼ିଆ କବି ସାଧାରଣତଃ ଉଚ୍ଚ ପ୍ରଶାସକ ଗୋଟିଏ ଗୋଷ୍ଠୀ ହେବା ବେଳେ ଭିନ୍ନ ଅନୁଜ୍ଞପ୍ତି ପ୍ରାପ୍ତ ଗୋଷ୍ଠୀ ଅଧ୍ୟାପକ ! ସାଧାରଣ ଲୋକଙ୍କ କଥା କବିତା କହୁଥିବାବେଳେ କବିତା ପାଖରେ ନଥାଏ ସେମାନଙ୍କ କିଛି କାମ ! ସେମାନଙ୍କ କାମ ଥାଏ ଆଧ୍ୟତ୍ମିକ ସଂଧ୍ୟା ଦର୍ଶନରେ ଓ ବ୍ରହ୍ମ କଣିକାଟିରେ ! ଗଣ ଚେତନାକୁ ସ୍ୱର୍ଶ କରିବା ଉଦ୍ୟମ କରିଛି ହରିହର ମିଶ୍ରଙ୍କ ସୃଷ୍ଟି ।

ମନୁଷ୍ୟର ସର୍ବୋତ୍କୃଷ୍ଟ ରଚନା ଅଟେ କବିତା । ଯେଉଁମାନେ ଲେଖନ୍ତି ସେମାନେ ସମାଜର ସର୍ବୋତ୍କୃଷ୍ଟ ବ୍ୟକ୍ତିତ୍ୱ । ଜୀବନ ପ୍ରତି କବିର କୃତଜ୍ଞତା କବିତା । ଅଭିବ୍ୟକ୍ତି ଇଚ୍ଛୁକ ସତ୍ତାଙ୍କୁ ସୃଜନଶୀଳ ଶକ୍ତି କରାଇ ଥାଏ ଉତରିତ । ଅନ୍ତର୍ଚେତନାରେ ସାଇତା ଅଭୀପ୍ସା ଆଲୋକିତ ହେବା ମହିମାର ଶବ୍ଦାବୟବ ଅଟେ କବିତା । କୁହାଯାଇଛି, ସୌନ୍ଦର୍ଯ୍ୟ ସଂରଚନା କବିତାର ଅବିଚ୍ଛେଦ୍ୟ ବୈଶିଷ୍ଟ୍ୟ, ଶବ୍ଦରେ ଆକୃତି ତିଆରି ( Semblance) ମୁଖ୍ୟ ! ସୌନ୍ଦର୍ଯ୍ୟ ଚରି ଚିନ୍ମୟ ଏକ ଅସୀମ ଅବ୍‌ଜେକ୍ଟ, ଯାହା ଚେତନାର ସ୍ନାୟୁରେ ସୃଷ୍ଟି କରେ ବିମଳ ଉଦ୍ଦୀପନା !

ସମକାଳ କବି ଲେଖନ୍ତି, ଏହାର କାରଣ ଏକମାତ୍ର 'ଟୁ କମ୍ୟୁନିକେଟ୍' ! କବିତାର ଷ୍ଟ୍ରକଚର (ବିଶେଷତଃ ଇଂରାଜୀ ଭାଷାର) ଛ' ଶହ ବର୍ଷର ପ୍ରାଚୀନ ସମ୍ପଦ । କବିତା ନୁହେଁ ଆଧୁନିକ । କବିତା କାଳ ସହିତ ହୋଇଛି ପରିବର୍ତ୍ତିତ । କବିତା ସହିତ ବଦଳିଛି କବିତା ତତ୍ତ୍ୱ । ଦି ଏଜ୍ ଅଫ୍ ପୋଏଟ୍ରୀ ଇଜ୍ ଦି ଏଜ୍ ଅଫ୍ କ୍ରିଟିସିଜିମ୍ କୁହାଯାଇଛି । ମୁହୂର୍ତ୍ତପରି କବିଙ୍କ ଜୀବନଧାରା ସର୍ବଦା ନୂତନ । କବି ଅନ୍ତର୍ଚେତନାରେ ପ୍ରତିଟି ନୂଆ ମୁହୂର୍ତ୍ତରେ ପ୍ରସ୍ଫୁଟିତ ହେଉଥାଏ ନବୀନ ଗୋଲାପ ! ନବ ମଲ୍ଲିକା ଓ ନୂତନ କଦମ୍ବପୁଷ୍ପ ମୁହଁ କାଢ଼ି ଚତୁର୍ଥୀର ଚନ୍ଦ୍ରପରି ହ୍ୱାଲୁଥାନ୍ତି ସ୍ମିତ । ମୁହୂର୍ତ୍ତ ସହିତ ବଦଳୁ ଥାଏ ଯଦି କାହା ଜୀବନ, ସେ କବି । ସେହି କବି ହରିହର ମିଶ୍ର, ସମୟର ପରିବର୍ତ୍ତନ ସହିତ କବିତାରେ ଘଟିଛି ତାଙ୍କ ଜୀବନର ପରିବର୍ତ୍ତନ ! ଭୋରପରି ବାସୁଥିବା 'ଶଙ୍ଖନାଭି' 'ଭୁଜବର୍ଣ୍ଣ' ବେଳକୁ ଶଙ୍ଖକ୍ଷେତ୍ର ହୋଇ ଗଲାଣି ! ଆତ୍ମାର ନିଭୃତ ପରିପ୍ରକାଶ କବିତା । ତାଙ୍କ ପ୍ରାଣର

ଆସ୍ପୃହା ଓ ଅଭିଳାଷର ସୁମିଶ୍ରିତ ମଧୁଗଙ୍ଗା କବିତା! କବିତାର ଆଙ୍ଗିକ ଉପାଦାନ ଶବ୍ଦ। ସେଇ ଶବ୍ଦ ହୁଏ କବିତା ଯାହା ଭିତରେ ସଂଚିତ ଓ ସଂରକ୍ଷିତ ଥାଏ ନୂଆଭାବ, ନୂଆଦୃଶ୍ୟ ଓ ନୂଆ ରୂପ। କବିତା ପଢ଼ିଲେ ଘଟେ ଦୁଇଟି ଜିନିଷ, ଏକ : ଆଲୋକିତ ହୁଏ ଚେତନା ଏବଂ ଦୁଇ: ଚେତନା ହୋଇଥାଏ ପରିବ୍ୟାପ୍ତ।

ଚେତନା କ'ଣ? ଚେତା ଅହଂକାରର ସାତ୍ତ୍ୱିକ ଅବସ୍ଥା। ପ୍ରାଣଶକ୍ତି, ଇଚ୍ଛା ଶକ୍ତି ଓ ବାକ୍‌ଶକ୍ତିଙ୍କ ମିଶ୍ରିତ ଅବସ୍ଥାର ନାମ ଚେତନା। ଚେତନା ଆତ୍ମଶକ୍ତି। ଗୂଢ଼ପଦ ଜାଙ୍ଗଳିକର ଧ୍ୱନିରେ ନାଚି ଉଠିବାପରି ସର୍ପିଣୀ କୁଣ୍ଡଳିନୀ ସେହି କବିତା ଧ୍ୱନି ଶ୍ରବଣରେ ଆହ୍ଲାଦିନୀ ହୋଇ ନାଚି ଉଠେ, ଯାହାକୁ କାବ୍ୟାଚାର୍ଯ୍ୟ ଶ୍ରୀ ଅରବିନ୍ଦ କହନ୍ତି, 'ମନ୍ତ୍ର ଅଫ୍ ଦି ରିଅଲ୍' ଏବଂ କବିତା 'ଏ ପ୍ରେୟାର୍'! ପ୍ରେମ ରସରେ ସୁବିଶାଳ ଓ ବ୍ୟାପକ ଗୋଟିଏ ହୃଦୟରୁ ଯାହା ନିଗିଡ଼େ ତାହା ମୁହୂର୍ତ୍ତର ବ୍ରହ୍ମପୁତ୍ର! ସସାଗରା ଧରାକୁ ଭାବୋଚ୍ଛ୍ୱାସରେ କରିଦିଏ ଆର୍ଦ୍ର! ଅନେଶତ ଶ୍ରାବଣ ଓ ଫଗୁଣକୁ ଏକତ୍ର ଶବ୍ଦର ପାଟୁଙ୍ଗାରେ ବାନ୍ଧିରଖିଥାନ୍ତି କବି।

ଶବ୍ଦ କ'ଣ? ଶବ୍ଦ ଏକ ଆଚ୍ଛାଦନ! ଶବ୍ଦ କବିତାର ଉପାଦାନ ରୂପକ ଭୂମି! କବିତାକୁ ଆଚ୍ଛାଦିତ କରି ରଖିଥାଏ ଶବ୍ଦ। ଶବ୍ଦର ଭୂମି ଭିତରେ ପୋତି ହୋଇ ରହିଥାଏ କବିତାର ରତ୍ନ। ପୁଣି ଶବ୍ଦ ଶିବ ଓ ଶକ୍ତି, ଦୁହିଁଙ୍କ ମିଶ୍ରିତ ରୂପ। ଶବ୍ଦ ଅର୍ଥ ବଂଦୀ। ଶବ୍ଦ ଶିବ ହେଲେ ଅର୍ଥ ତାଙ୍କ ଶକ୍ତି, ମାତ୍ର ଆଧୁନିକ କବିତାରେ ଅର୍ଥର ପ୍ରାଧାନ୍ୟ ଗୌଣ। ଶବ୍ଦରେ ରୂପ ଓ ସୌନ୍ଦର୍ଯ୍ୟ ସଂରଚନା ମୁଖ୍ୟ। ଏହାର କାରଣ? ସମକାଳ ଜୀବନର ଜଟିଳତମ ସ୍ଥିତି! ପାପୁଲିର ରେଖାପରି ମସ୍ତିଷ୍କ ଭିତରେ ଅସଂଖ୍ୟ ସମସ୍ୟାର ରେଖା, ବିକ୍ଷିପ୍ତ ଚିନ୍ତା ଓ ମାନସିକ ଦ୍ୱନ୍ଦ୍ୱ ଜାଲ ଭିତରେ ଛଟପଟ ହେଉଛି ଅସ୍ତିତ୍ୱର ମୀନ। ଗୋଟିଏ ମୁହୂର୍ତ୍ତର ବିନ୍ଦୁରେ ଏକାଧିକ ଭାବନା ଓ ଶାରୀରିକ କ୍ରିୟାପରି ଶବ୍ଦ ସଂଦିଗ୍ଧ ଏବଂ ଏକାଧିକ ଇଙ୍ଗିତର ମିଶ୍ରିତ ବର୍ଣ୍ଣନାରେ ଗଠିତ ଇନ୍ଦ୍ରଧନୁ! ଇମ୍ପସନ୍‌ଙ୍କ ଭାଷାରେ କବିତାରେ ବ୍ୟବହୃତ ଶବ୍ଦ ଗୋଟିଏ ଆମ୍ବିଗ୍ୟୁଟୀ (Ambiguity), ଶବ୍ଦ ଏକ ଇଙ୍ଗିତ (Gesture), ଶବ୍ଦର ଅର୍ଥ ଏହା ତଳ ଛପିଲା ଆବେଗ (Emotion), ମୋଟ

ଦୃଷ୍ଟାନ୍ତଟି ଏକ 'ଫିଲିଂ' (ଭାବ) ବା 'Existence Assertion' ଜୀବନ ପ୍ରକ୍ରିୟାର ଘୋଷଣା! ହରିହର ମିଶ୍ରଙ୍କ ସେହି ଜୀବନ ପ୍ରକ୍ରିୟାର ଘୋଷଣା କେଉଁ ବହିରେ କେମିତି ଏବଂ କେତେ ପରିମାଣ 'ଫିଲିଂ' ଶିଖର ସ୍ପର୍ଶ କରିଛି, ତାହା ଏଠାରେ କହିବାକୁ ଉଦ୍ୟମ କରାଯାଇଛି। କବିତାର ଉତ୍କର୍ଷ ଉଚ୍ଚାରଣ କରିବା ବେଳେ ତତ୍ତ୍ୱ ଓ ଜ୍ଞାନର ମାନଦଣ୍ଡ ପ୍ରୟୋଗ କରାଯିବା ସହିତ ଭାବର ଯୁକ୍ତିଯୁକ୍ତ ସଫଳତା ପ୍ରତିପାଦିତ ହୋଇଛି। ପାଠ୍ୟ ପୁସ୍ତକୀୟ ଆଲୋଚନା ପଦ୍ଧତି ବିମୁକ୍ତ, ମୁକ୍ତ ଓ ସ୍ୱାଧୀନ ଅନୁଭବ ମୋ ବିଶ୍ଳେଷଣ ଓ ଦୃଷ୍ଟିକୋଣ।

୧୯୯୯ ମସିହା, 'ସୃଷ୍ଟିର ରହସ୍ୟ: ହରିହର ମିଶ୍ରଙ୍କ ମେଟାଫିଜିକାଲ୍ ତତ୍ତ୍ୱ' ଆଲୋଚନାଟି ହୋଇଥିଲା ପ୍ରକାଶିତ। ୨୦୧୨ ମସିହା, ପୁଣିଥରେ ଏହାର ପୁନଃ ପ୍ରକାଶନ ମତେ ଆକର୍ଷିତ ଓ ବିସ୍ମିତ କରିଛି। ୨୦୧୫ ରୁ ୨୦୧୯ ସୁଦ୍ଧା ମୋଟ ଏଗାରଟି ଆଲୋଚନା ପ୍ରକାଶିତ ହୋଇ ପ୍ରବଳ ପାଠକୀୟ ଆଦୃତି ଓ ଉତ୍ସାହ ପ୍ରଦାନ କରିଛି। ସେହି ଆଦୃତି ଓ ଉତ୍ସାହର ସାରସ୍ୱତ ଫଳ ରୂପେ ଆଉ ଚାରିଗୋଟି ପ୍ରବନ୍ଧ ଲେଖିଅଛି ଏବଂ ସେ ସମସ୍ତଙ୍କ ଏକତ୍ର କରି ବହିଟିର ହେଲା ରୂପନ୍ୟାସ।

ଯେଉଁ ସଂପାଦକବୃନ୍ଦ ଆଲୋଚନାଗୁଡ଼ିକୁ ବିଜ୍ଞ ପାଠକ ପାଠିକାଙ୍କ ସୁଦୃଷ୍ଟିକୁ ଆଣି ମତେ ଉତ୍ସାହିତ କରିଛନ୍ତି ସେମାନଙ୍କ ପାଇଁ ମୋ ସାଧୁବାଦ।

ମୋର ଅଜସ୍ର ଧନ୍ୟବାଦ ଏହାର ପ୍ରକାଶକ ବଂଧୁଙ୍କୁ ଏବଂ ପ୍ରଣାମ କବିଙ୍କୁ, କବିର୍ମନୀଷୀ ପରିଭୂଃ ସ୍ୱୟଂଭୂଃ, ଅ-ପାର କବିତା ସଂସାରର ପ୍ରଜାପତି!

ଏହି ବହି ରୂପାୟନ ପାଇଁ ପ୍ରିୟବଂଧୁ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ପ୍ରେରଣା ମୋ ପାଇଁ ଅମୂଲ୍ୟ କୃତଜ୍ଞ ହେବାର ସଂପଦ।

-ନକୁଳ ଚନ୍ଦ୍ର ସାହୁ

# ଏକବିଂଶ ଶତକ ଶବ୍ଦ-ଚିତ୍ର 'ଅର୍ଦ୍ଧମାନବୀ' : ଡ଼ିକ୍ସନ, ଷ୍ଟାଇଲ୍ ଓ ଫର୍ମ

ବିଶ୍ୱ ଇତିହାସର ସର୍ବଶ୍ରେଷ୍ଠ ବିକାଶର ସହସ୍ରାବ୍ଦ ବିଂଶ ଶତକ । ବିପଣନ ସଂସ୍କୃତିର ପ୍ରତିଯୋଗିତା ଦୁଇ ଦୁଇଟି ମହାଯୁଦ୍ଧକୁ ଏହି ଶତାବ୍ଦୀରେ କରାଇଛି ସଂଘଟନ । ମହାଯୁଦ୍ଧ ହେତୁ ବିଜ୍ଞାନ ଓ ସାହିତ୍ୟର ଘଟିଛି ଅକଳ୍ପନୀୟ ପରିବର୍ତ୍ତନ ଓ ବିକାଶ । ମୁଖ୍ୟତଃ ଏହି ଦୁଇ ପ୍ରାଧାନ୍ୟଯୁକ୍ତ ବିଷୟର ଟେକ୍‌ନିକରେ ଆସିଛି ଅଭୁତପୂର୍ବ ପରିବର୍ତ୍ତନ । ଦ୍ରୁତ ବିକାଶ । ମଣିଷ ଚେତନାରେ ଏବଂ ଆଧ୍ୟାତ୍ମିକତା କ୍ଷେତ୍ରରେ ମଧ୍ୟ ନବ ଅନ୍ୱେଷା ଫିଟାଇଛି ତାହାର ଫର୍ଦ୍ଦ । ମଣିଷ ବଦଳିଛି ଏବଂ ସେହି ବଦଳା ମଣିଷମାନଙ୍କ ସମାଜ ଓ ସଭ୍ୟତା ପରିବର୍ତ୍ତନର ମୁହାଣରେ ପରିଗ୍ରହଣ କରିଛି ନୂଆ ରୂପ ଓ ନୂଆ ଚିତ୍ର ।

ବହି ସମାଜ ଜୀବନର ମୁଖପତ୍ର । ସମାଜ, ସଭ୍ୟତା ଓ ସଂସ୍କୃତିର ବାହକ ସାହିତ୍ୟ । ଗତ ଶତକ ଶେଷ ଦଶଂଧି ପ୍ରକାଶିତ ପ୍ରାୟ ସବୁତକ ବହି ମାନବୀୟ ଅବସ୍ଥା (Human situation)ର ଗଭୀର ଅଧ୍ୟୟନରେ ପରିପୂର୍ଣ୍ଣ ଏବଂ ଅଭିବ୍ୟକ୍ତିରେ କାଳଜୟୀ (Timeless) । ବଂଦରର ସହରରେ ଏଠି ମୃତ୍ୟୁ ଭୁଲ

କାମ ନ କରିବାକୁ ଅତି ଯତ୍ନଶୀଳ (Scrupulous) ! 'Death is life lived away/life is death coming on' (La Recolete/Jorge Luis Borges) । ପୁନଶ୍ଚ ଜୀବନ ସତ୍ୟ । ନିର୍ବାପିତ ହୋଇଗଲେ ଆଲୋକ ଦର୍ପଣ ହୋଇଯାଏ ବିଫଳ । ଅଣାକ୍ଷର, ମହାକାଳ ତ ମୃତ୍ୟୁ ମନର ମ୍ୟାଜିକାଲ ମୋଡ଼ରେ ହୋଇଯା'ନ୍ତି ଗୋ ଆଉଟ ( Go Out) !

ମୋଟ କଥା ମଣିଷର ଅନ୍ତର୍ଦୃଷ୍ଟି ବଦଳିଛି । ବଦଳିଛି କାବ୍ୟିକ ଅଭିବ୍ୟକ୍ତିର ଚେତନା, ଥିଓରୀ ଅଫ୍ ପ୍ରାଇଭେଟ୍ ଲାଙ୍ଗୁଏଜ୍' ଶୀର୍ଷକ ଆଲୋଚନାରେ କହନ୍ତି ଲୁଡ୍ ଉଇଗ ଉଇଟଗେନ୍ ଷ୍ଟାଇନ୍, ମାନସିକ ଅବସ୍ଥାମାନଙ୍କରୁ ଜନ୍ମ ନିଏ କବିତା । କବିତା ସୃଷ୍ଟିର ପ୍ରେରଣା ଯେଉଁ ଅବସ୍ଥା, ତାହା ହେଲା ଗଭୀର ପ୍ରେମ, ନିଗୂଢ଼ ଅନ୍ତର୍ଦାହ ଓ ଚରମ ହତାଶା ଶ୍ରେଣୀୟ ମାନସିକ ଅବସ୍ଥା । ମନର ବିବିଧ ଅନୁଭୂତି ବ୍ୟକ୍ତି ସତ୍ତାକୁ ଯେତେବେଳେ ଦୋହଲାନ୍ତି ଆବେଗ, ସମ୍ବେଦନ ଓ ବିଚାର ପ୍ରଭୃତି ଆକୃତି ନିଅନ୍ତି । ଭାଷା ସେହି ଆକୃତିକୁ କରେ ମୂର୍ତ୍ତି । କବିତା ଭାଷାର ଅଧୀନ । ଭାଷା ବ୍ୟତୀତ କବିତା ଅ-ଲେଖ, କବିତା ଅଲେଖର ଲେଖ । ଏହା ପ୍ରତିପାଦିତ କରେ କବି ହରିହର ମିଶ୍ରଙ୍କ ଶେଷବିଂଶର ସୃଷ୍ଟି 'ଅଣ ଅକ୍ଷର' (୧୯୯୮) ଏବଂ 'ସନ୍ଧ୍ୟା ଦର୍ଶନ' (୧୯୯୮), କାବ୍ୟିକ ଶବ୍ଦ ଚିତ୍ର ସଂକଳନ ଦୁଇଟି । ଗୋଟିଏ ମହାନ କାଳଖଣ୍ଡର କଳ୍ପନାକୁ ଇତିହାସର ମଂଜୁଷାରେ ରଖି ଦେଇ, ମହାକବି ସ୍ୱାଗତ କରିଛନ୍ତି ୨୦୦୩ରେ ନବ ସହସ୍ରାବ୍ଦରୁ ଜନ୍ମ ନେଇଛି 'ଅର୍ଦ୍ଧମାନବୀ' । 'ଅର୍ଦ୍ଧମାନବୀ' 'ସନ୍ଧ୍ୟା'ର ଉତ୍ତରଣ ଚିତ୍ର । ସନ୍ଧ୍ୟାର ଭାବ ହେଲା ଅର୍ଦ୍ଧେକ ଦିବସ ଓ ଅର୍ଦ୍ଧେକ ରାତ୍ରିର ଗମନ ଓ ଆଗମନ ଦୃଶ୍ୟ । ଏହାର ପରବର୍ତ୍ତୀ ସ୍ତର ହେଲା 'ଅନେକ ଆଶ୍ଚର୍ଯ୍ୟ' । କବିତା ତ କୁହୁକର ଭୂମି ! ଶବ୍ଦକୁ ସାମ୍ନାରେ ବାଡ଼ିଦେଲେ ବସ୍ତୁ ଚେତନା ଖୋଲିଦିଏ ସିନେମାର ରିଲ୍ । କେତେବେଳେ ଦିଶେ 'ପାହାଡ଼ର ଡେଣା (୨୦୦୫)' ତ କେତେବେଳେ ଦିଶେ 'ନେତ୍ରୋତ୍ସବ' (୨୦୦୬) । ୨୦୦୮ ସମ୍ମୁଖକୁ ଆସେ 'ଧୂଳି ମାଟିର ସ୍ୱର୍ଗ' ଖଣ୍ଡିଏ ନାଂଦନିକ ତୃପ୍ତି ତ ଅନ୍ୟ ଖଣ୍ଡିଏ 'ଶୟନ ପ୍ରତିମା', ଦେବ ମୂର୍ତ୍ତି । କବି ହରିହର ମିଶ୍ର ଅସୀମ ଆୟତନ ଶିଳ୍ପୀ, ୨୦୦୯ରେ ତାଙ୍କ କାବ୍ୟିକ ଉତ୍ତରଣକୁ ଦିବ୍ୟ ଅସନ୍ତୋଷ' ବୋଲି ନାମିତ କରିଛନ୍ତି । କବିଚିର ଅତୃପ୍ତ, ଚିର ତୃଷିତ ଓ ଚିର ଅସନ୍ତୁଷ୍ଟ, ତାକୁ ସନ୍ତୋଷ ପ୍ରଦାନ କରିଥାଏ କେବଳ 'ଦିବ୍ୟ' (Divine) । ଯେଣୁ କବି ଜଣେ Divinely inspired frenzy' ଏବଂ ସିଏ 'A Possessed Creature' ବୋଲି ଆଦି କାଳରେ ପ୍ଲାଟୋ ଉଲ୍ଲେଖ କରିଛନ୍ତି । Socretes ତାଙ୍କ ଛାତ୍ର କୁ କହିଥିଲେ, For all good poets, epic as well as lyric, compose their beautiful

poems not by art, but, because they are inspired and possessed 'ଅଣ ଅକ୍ଷର' 'A state of unconsciousness' ଭିତରୁ ଅମୂଲ୍ୟ ଶବ୍ଦ ରତ୍ନ ଝଲସି ଉଠିଲାବେଳେ ତାହାକୁ କବି ଲିପିବଦ୍ଧ କରିପକାନ୍ତି । ହରିହର ମିଶ୍ର କବିତାର Rules of Art କଥା ତାଙ୍କ 'ଶଙ୍ଖନାଭି' (ପ୍ରଥମ କାବ୍ୟିକ ଉଚ୍ଚାରଣ, ପ୍ରକାଶକାଳ ୧୯୭୩, ଲାର୍କବୁକ୍ସ)ରେ ମଧ୍ୟ ଚିନ୍ତା କରିନାହାନ୍ତି ! ବରଂ କବିତା ତାଙ୍କ ସ୍ୱତଃସ୍ଫୂର୍ତ୍ତ ସାରସ୍ୱତ ସରିତର ମଧୁସ୍ରୋତ, 'ମୋ କବିତା ଲଟେଇଛି ତୁମପରି ମୋ ଉପରେ' (ଶଙ୍ଖନାଭି, ୩୬ତମ ପଂକ୍ତି) । ସେହିପରି 'ମୁଁ ଏକ ଉତ୍ତପ୍ତ ଅଂଧାର' ଝରିଛି ଯା' ଟୋପାଟୋପା ତାରାର ସ୍ତନରୁ । 'ତାରା' ଆଲୋକର ନୀଳବିନ୍ଦୁ, ବ୍ରହ୍ମଜ୍ୟୋତି ! ଥିଓରୀ ଅଫ୍ ଇନ୍ସିପିରେସନ୍‌କୁ ଅନୁମୋଦନ କରିଛି । 'ଅର୍ଦ୍ଧେକ ମାନବୀ' ତୁମେ ଅର୍ଦ୍ଧେକ କଳ୍ପନା !! ଯେଉଁ କଳ୍ପନା ଗୋଟିଏ ଅଭିଳାଷ ଭିତରେ ଜନ୍ମଜନ୍ମାନ୍ତରର ଶିକ୍ଷାୟିତ ଅଭୀପ୍ସାପରି ଅନିର୍ବାପିତ ! ଅନିର୍ବାଣ ତୃଷାର ସେ ଏକ ଶାଶ୍ୱତ, ହାତ ମୁଠାରେ ଥିବାବେଳେ ମୁଠାଟିଏ ଅବଶିଷ୍ଟ ରହିଛି କବିଙ୍କ ଅଭୀପ୍ସାରେ, ପଳପଳ ରୋମାନ୍ସର ଫୁଟନ୍ତା ପାଖୁଡ଼ାମାନଙ୍କରେ । କଳ୍ପନା ବି ବାସେ । ସଂପର୍କ ଯେତେବେଳେ ଜିଜ୍ଞାସାର ରୂପ ନିଏ ସ୍ମିତ ତା'ର ବିଯୁକ୍ତ ରଚେ ନାହିଁ । ବାକ୍ ପ୍ରତିମାର ଚିତ୍ର ଶୂନ୍ୟ ମନ୍ଦିରରେ ମରଣକୁ ତ ଘୁଞ୍ଚାଇ ଦିଏ, ତମାଳର ରଙ୍ଗଶାଳାରୁ 'ଗୋଲକ'ର ବିଶ୍ରାମାଗାରକୁ ବାହାରି ଆସେ ।

'ଅବିଚ୍ଛିନ୍ନ ତୁମ ସ୍ମୃତି', 'ତୁମ କିମ୍ବଦନ୍ତୀ' ମରଣକୁ ବି ହେଉଛି ଘୁଞ୍ଚାଇ ! ତୁମେ ଅର୍ଦ୍ଧମାନବୀ ଏକ ପାର୍ଶ୍ୱରେ ତ ତୁମର ଅନ୍ୟପାର୍ଶ୍ୱ 'ଦର୍ପଣୀ ନାୟିକା' । ତୁମେ ନାୟିକା, ନୁହଁ ଜଣେ ସାଦା ନାରୀ । ସାଦା ନାରୀ ପାଇଁ ଗାଲେନ୍ ଗାଲେନ୍ ମଦ୍ୟ କେହି ଚକ୍ଷୁରୁ ଚୁମାଟିଏ ଦେବା ପାଇଁ ଡ଼ାକେ ନାହିଁ ! ଦରକାର ନଥାଏ ସହସ୍ର କୁମ୍ଭ ସୁରାରେ କରିବାକୁ ପୂର୍ଣ୍ଣ । ଫସଲ କଟା କ୍ଷେତପରି ପେଟ ତା'ର, ତା' ଭିତରେ କ'ଣ ଅଛି କ'ଣ ନାହିଁ, କିଏ କହିବ ? 'ଗୋଲକର ବିଶ୍ରାମ ଗାରକୁ ଆସ/ ଭୋରର ଫର୍ଚ୍ଚା କପାଳରେ କିରଣର ଚିକୁରକୁ/ଆସ ଆଉଁଶି ଦିଏ ଥରେ ।'

ଚକ୍‌ମକ ସ୍ୱପ୍ନରେ ଚେଇଁଥିବା / ବୟସ୍କ ଚକ୍ଷମାଟିଏ, ରହସ୍ୟର କନିଷ୍ଠତମ ଚାବିଟି ଖୋଲି ଦେଉଛି ନିବୁଜ ନାଭି କମଳକୁ । ଖୋଲି ଦେଉଛି ସୃଜନର ଅନିଶ୍ଚିତ କମ୍ପନକୁ । ତାହା 'ତନୁତୃଷା' ନା 'ପ୍ରତିଶ୍ରୁତି', ଶୂନ୍ୟ ବଂଦ କବାଟ ଓ ଝରକାର ଅକାମୀ ଅଙ୍ଗପ୍ରତ୍ୟଙ୍ଗ ? ତାହା ଲାବଣ୍ୟବତୀର ଶୂନ୍ୟସ୍ଥାନ ନା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚାରିପଟ ଫୁଟିଥିବା ବାଇଗଣୀର ପାଟ ? ପ୍ରତିମା ଓ ପ୍ରିୟତମା, ସବୁ ଗୋଟିଏ କୋଣାର୍କର ଭଗ୍ନସ୍ୱାସ୍ଥ୍ୟ ମୂର୍ତ୍ତି ! ଆଉ କେମିତି ରୂପ ପରିଗ୍ରହ କରିବ 'ଅର୍ଦ୍ଧମାନବୀ' ? ସହସ୍ର ବକୁଳର ସୁବର୍ଣ୍ଣ ମୁକୁଟ ତମ ପାଇଁ କଳ୍ପନା କରିଛି କାବ୍ୟ ପୁରୁଷର ଆବେଗ ।

ସିଏ ଦୁଃଖୀ ରାଜପୁତ୍ର, ତାହାର ମହାର୍ଘ ଦୁଃଖ କେବଳ ତୁମେ, ତାହାର ମହାର୍ଘ ସୁଖ ଶବ୍ଦ ନିଜେ! ତା ଶବ୍ଦ ଏକ ଅଜଣା ଗାଁ'ର ଆକର୍ଷଣ! ସେଇ ଅଜଣା ଗାଁ, କାବ୍ୟ ପୁରୁଷର ନିଜ ଜୀବନ! ତା' ସ୍ୱପ୍ନ ଓ ସୁଷୁପ୍ତିର ବିରାମ ଚିହ୍ନ। ଶବ୍ଦ ଉଚ୍ଚାରଣରେ ଅଟକି ଯାଏ ନିଦ୍ରିତ ଅନ୍ଧକାର, ଯାତ୍ରା ଆରମ୍ଭ କରେ ସ୍ୱପ୍ନ। ଅବଚେତନର ଇଦ୍ ଓ ଇଗୋ ଭିତରକୁ ନୁହେଁ, ସୁପର କନ୍‌ସେସ ଭିତରକୁ, ଯେଉଁ ଆତ୍ମମଗ୍ନ ଅନ୍ଧକାରରେ ଆତ୍ମଲୀନ! ଶୃଙ୍ଗାରର ଉଜ୍ଜ୍ୱଳ ଶୃଙ୍ଗ (ଶିଖର) ଯେଉଁଠି କାଳକାଳ ବ୍ୟାପି ସଂଚିତ ପ୍ରେମର ଲିପି। ପ୍ରେମର ସେ ଭାଷା ଚିକ୍‌ଚିକ୍ ରୂପା ଖଟୁଲିରେ ଚିହ୍ନାଇ ଦିଏ ନୈର୍ବ୍ୟକ୍ତିକ ତା'ର ଅଣ ଅକ୍ଷର ରୂପ! ତାହା ରୂପ ନୁହଁ, କାବ୍ୟ ପୁରୁଷ ଚେତନାର ପ୍ରତିରୂପ! ଶବ୍ଦ ଏକା ଏକା ହୋଇଛି ବାକ୍ ପ୍ରତିମା! ମୃଣ୍ମୟୀ ପାତାଳ ଭେଦିଛି, ମହାଶ୍ମଶାନରେ ଯେମିତି ମୋହରାତ୍ରି ଭୈରବକୁ ଭେଟି ଦେଉଛି ସ୍ୱପ୍ନ ଓ ସୁନା କଳସ।

ମେଘର ଜୁଡ଼ାରେ ଖୋଜି ଜହ୍ନର କେତକୀ ସରୁ ହସଟିଏ ଟାଣି ଯିଏ ଆସିଛି, ସିଏ ତମେ! ତମେ ଅର୍ଦ୍ଧ ମାନବୀ! ନିଶୂନ୍ ଶାଖାରେ ସୁଡୁସୁଡୁ ବର୍ଷାରେ ତୁମ ଅପେକ୍ଷାରେ ପକ୍ଷୀଟିଏ ମୁଁ! ଏ ପକ୍ଷୀ 'ଦ୍ୱାସୁପର୍ଣ୍ଣା'ର ପକ୍ଷୀ! ମିଠା ଫଳ ଭୁଞ୍ଜି ଜାଣିଥିବା ପକ୍ଷୀ। ତା' ଦୃଷ୍ଟିରେ ରହିଛି, ଦୀପ୍ତି, ସ୍ୱପ୍ନ ଓ କଇଁଫୁଲର ଦ୍ୟୁତି! ଅନ୍ନବ୍ରହ୍ମର ଜ୍ୟୋତି। ପ୍ରାକୃତ ପ୍ରେମ ଭିତରୁ ଅପ୍ରାକୃତ ସ୍ୱପ୍ନ ଉତ୍ତୁରି ଆସୁଛି କେମିତି? ହସ ହିଁ ତମର ଝର୍କା, ଝର୍କା ବାହାରେ ଜହ୍ନ, ସୌନ୍ଦର୍ଯ୍ୟର ଜୁଆର ମାଳା, ସୂଚାଇ ଦିଏ ଚଇତି ପବନର ଠିକଣା! ଦରମେଲା କବାଟ ଫାଙ୍କରେ ତ୍ରସ୍ତା ହରିଣୀର ନୀଳ ଆଖି ଲେଖି ଦିଏ ସଂଗୀତର ଧ୍ରୁପଦୀ! ଯେଣୁ ସିଏ ଅର୍ଦ୍ଧମାନବୀ!

କବି ହରିହର ମିଶ୍ର 'କଳାର ଐତିହାସିକ ଓ ବସ୍ତୁନିଷ୍ଠ ବ୍ୟାଖ୍ୟା' (ଦିଗଂତ, ଜାନୁଆରୀ ୧୯୮୯, ସଂ. ସଚ୍ଚିଦାନନ୍ଦ ରାଉତରାୟ)ରେ ସ୍ପଷ୍ଟ କରିଛନ୍ତି ସାହିତ୍ୟ କ୍ଷେତ୍ରରେ କବିତା ଏକ ଅପରିହାର୍ଯ୍ୟ କଳା। କଳା କଳ୍ପନା। କଳ୍ପନାର ଭିତ୍ତିଭୂମି ବାସ୍ତବ। ବାସ୍ତବତା ଓ ସୃଷ୍ଟି କଳ୍ପନା ଭିତରେ ଥିବା ଭାରସାମ୍ୟ ବାସ୍ତବତାର ବିପୁଳ ଅବସ୍ଥିତିରେ କଳା ଜୀବନ ସହିତ ହରାଇବସିଛି ସୌଷମ୍ୟ ଏବଂ ଏହା ଅବକ୍ଷୟକାଳୀନ ଏକ ଅବସ୍ଥା। ସୃଜନର ଅବ୍ୟାହତ ଧାରାରେ ଏହା ଏକ ସନ୍ଧିକ୍ଷଣ। ସେହି ସନ୍ଧିକ୍ଷଣକୁ ଚମତ୍କାର ଭାବେ 'ମୀରାର ମୃତ୍ୟୁ' 'ଅଭିମନ୍ୟୁ', 'କବି ନା ଶିକାରୀ ତୁମେ' କବିତା ଦୁଇଟି ପ୍ରତିପାଦିତ କରିଛି। 'କାକମିଥୁନ', 'ସୁହାସିନୀ ବର ଯାତ୍ରିଣୀଟି ପାଇଁ' କବିତା ଦୁଇଟି ଅବଗତ କରାଏ କବିତା ନୁହେଁ ଗୋଟାଏ ବିଷୟ, କବିତା ଗୋଟିଏ ବିଷୟକୁ କହିବା ବାଗର ନାମ। କବିତା ଗୋଟିଏ ରମଣୀୟ ବିଶ୍ୱାସର ନାମ। ଯେଉଁ ବିଶ୍ୱାସଟି ସମାଜରେ ମଣିଷ ମନରେ ସଂସ୍କୃତିର

ଆଦ୍ୟ ସକାଳରୁ ଜୀବିତ । 'ମାନମୟୀ, ଝିପିଝିପି ବର୍ଷା ହେଉଛି' - କେତେ ସ୍ୱଷ୍ଟ ଓ ବାସ୍ତବତାର ବିପୁଳ ଅବସ୍ଥିତି ସତ୍ତ୍ୱେ ଶବ୍ଦରେ କବିତା ତା' ସୁଷମାର ଉନ୍ମୋଚନ କରାଇଛି । ବିଷୟ ନୁହେଁ ବିଷୟ ପାଇଁ ବାଗଟିଏ ଶୈଳୀଟିଏ, ଅଭିବ୍ୟକ୍ତିର ଜୀବନ୍ତ କୁଳୁକୁଳୁ ଧ୍ୱନିଟିଏ ମୁଗ୍‌ଧ ଅନୁଭବରେ କରିଛି ସୌନ୍ଦର୍ଯ୍ୟର ବଂଦନା ।

ଶାନ୍ତନୁ ଆଚାର୍ଯ୍ୟ ଅବା ଶଙ୍କରାଚାର୍ଯ୍ୟ ଅବା ରାଣୀଙ୍କ ଆଦେଶରେ ଶୃଙ୍ଗାରରତ ଅଙ୍ଗାର ପୁରୁଷ - ଏମାନେ ସମସ୍ତେ କବି ହରିହର ମିଶ୍ରଙ୍କ ପାଇଁ ଏକ ଏବଂ ତାହା ଅଦୃଶ୍ୟ ଲିପିର ଗୀତ । ଏଗୁଡ଼ିକ ଚିତ୍ରାତ୍ମକ ବିମ୍ବ କିନ୍ତୁ ଏଗୁଡ଼ିକର ଚିତ୍ରାତ୍ମକ ସ୍ୱଭାବ ଅବସ୍ଥିତି କରନ୍ତି ପରିବର୍ତ୍ତନ (Metabolism) । ଗୋଟିଏ ଉର୍ଦ୍ଧ୍ୱସ୍ଥ ଭାବ କଳାର ସ୍ୱଭାବକୁ କରେ ରହସ୍ୟମୟ ଓ ଉଜ୍ଜ୍ୱଳ ଓ ସୁତୁଙ୍ଗ ! କବି ହରିହର ମିଶ୍ରଙ୍କ ଅନ୍ୟ ଗୋଟିଏ ସିଦ୍ଧାନ୍ତ, କଳା ହିଁ ଆପେ ଆପେ ଅଭିବ୍ୟକ୍ତ ହୁଏ । ତା' ମଧ୍ୟରେ ଅନନ୍ତ ସମ୍ଭାବନାକୁ ଧାରଣ କରିହୁଏ । ଜୀବନର ଅନୁକରଣ ବୋଲି କଳାକୁ ଧରି ନେଲେ ଜୀବନର ଅଭାବବୋଧ ଓ ବିଚ୍ଛିନ୍ନତା ବୋଧର ଆଭାସ ସେଥିରେ ପ୍ରକାଶିତ ହେବା ଉଚିତ । (ଦିଗଂତ, ପୃଷ୍ଠା-୧୪, କଳାର ଐତିହାସିକ ଓ ବସ୍ତୁନିଷ୍ଠ ବ୍ୟାଖ୍ୟା, ହରିହର ମିଶ୍ର) ।

କଳା କେମିତି ଆପେଆପେ ଅଭିବ୍ୟକ୍ତ ହୁଏ, ଲକ୍ଷ୍ୟ କରାଯାଇ ହୁଏ ଏହି ଉଚ୍ଚାରଣ - 'ମୁଁ ତ ଏକ କଳାମେଘ ବସିଥାଏ/ପାଦକୁ ଝୁଲାଇ/ଦିଗନ୍ତର ଚିକ୍‌ଚିକ୍ ରୂପା ଖଟୁଲିରେ/ତମର ସେ ତନୁଲତା ଗାରଭଳି ଲମ୍ବିଥାଏ'.... । ଆପେ ଆପେ ଅଭିବ୍ୟକ୍ତ ହେଉଥିବା କଳା କିପରି ଏକ ଅନନ୍ତ ସମ୍ଭାବନାକୁ କରିଛି ଧାରଣ, ଦେଖନ୍ତୁ ନିମ୍ନ ଉଦାହରଣ - ସତେ ଅବା ରକ୍ତମାଂସ ତୃପ୍ତା/ସୌଦାମିନୀ/କଟାକ୍ଷେ ବିଦୀର୍ଣ୍ଣ ତାର ଅନ୍ଧକାର/କସ୍ତୁରୀ ରାତିର ନାଭି/ନୀଳବୃତ୍ତ କକ୍ଷ ଧରଣୀର/ସେ ଯେଉଁ ଜୀବନଜ୍ୟୋତି/ ପୂର୍ଣ୍ଣ କରେ ପରିକ୍ରମା ପ୍ରତି ପଲକରେ (କବିତା ୧୦୦୧, ପୃଷ୍ଠା ୪୦୬) ।

'କୁହୁକ ଦ୍ୱୀପ' ଓ 'ମାୟା ମହଲ' ନ ପାଇବା ଦୂରତ୍ୱରେ ସବୁ ଲୁଚେଇ ରଖେ ! ସବୁ ଲୁଚେଇ ରଖେ ପ୍ରାଣର କୋଳାହଳ ! ପ୍ରକୃତରେ କ'ଣ ଅସମ୍ଭବ ପୋତ ପାର ହୁଏ କୁହୁକ ଦ୍ୱୀପ ? ବିଷମ ବର୍ଷା ଋତୁ, ଶୀତ ଓ ବସନ୍ତ; ଫେରି ଆସି ପାରି ନଥାଏ ଆଉ ଥରେ ଏ ସମୟ ! କାବ୍ୟ ପୁରୁଷ କରୁଛି ଉଚ୍ଚାରଣ - 'ସାଧାରଣ ଦିନର ପ୍ରତିଟି ମୁହୂର୍ତ୍ତକୁ / ଭଲ ପାଏ କାରଣ ଏପରି ସମୟ/ନଥାଉ ତମ ପାଇଁ... ।' ପୁଣି - 'ପରିତ୍ରାଣ ପାଇଁ ମୋର ଚିନ୍ତା କ'ଣ/ ସେ ଦୂର ସମୁଦ୍ର ମୋର/ମୁଁ ତା'ର ଅଙ୍କାବଙ୍କା ନଈ' ! ଇଲିୟଟଙ୍କ କ୍ୟାଥଲିକ ଚରିତ୍ରପରି କାବ୍ୟ ନାୟକ ଏକ

ଆଧ୍ୟାତ୍ମିକ ମଣିଷ, ସିଏ କାବ୍ୟିକତାର ବୟାନ ଭିତରେ ଯେମିତି ନିଜକୁ ସମସ୍ତ ସଙ୍କଟ ଉର୍ଦ୍ଧ୍ୱକୁ ଉଠାଇ ନେଇ କରୁଛି ତ୍ରାଣ - ଏତିକି ପ୍ରାର୍ଥନା ମୋର ଯେତେ ବାଧା ବାଲିବନ୍ଧ / ସଦୟ ହୁଅନ୍ତି ମତେ ବାଟ ଦେବା ପାଇଁ, (ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୪୦୭)।

ଏଇଠି ହରିହର ମିଶ୍ର ସ୍ମରଣ କରାଇ ଦିଅନ୍ତି, 'କଳା ହିଁ ମଣିଷ ଭଳି ପୁରାତନ। ମଣିଷର ସକଳ କାର୍ଯ୍ୟର ସ୍ୱରୂପ ହିଁ କଳା। ଏହି କାର୍ଯ୍ୟ ବଳରେ ମଣିଷ ଏକ ବୁଦ୍ଧିମାନ ପ୍ରାଣୀ, ଅନ୍ୟଥା ନୁହେଁ।' (ଦିଗଂତ, ଜାନୁଆରୀ - ୧୯୮୯, ପୃଷ୍ଠା ୧୭)।

ଭାବାବେଗର ଅଭାବରେ ଗୋଟିଏ ମୃତ ମାନଚିତ୍ର ଅଙ୍କନ କରି ନାହାନ୍ତି ହରିହର ମିଶ୍ର। ସେ ଜାଣନ୍ତି ଭାଷାର ଶକ୍ତି ଦୁଇଟି, ଗୋଟିଏ ଯୋଗାଯୋଗ କରାଇବା ହେବାବେଳେ ଅନ୍ୟଟି ଅଭିବ୍ୟକ୍ତି! ଭାଷା କେବଳ କଥିତ ଓ ସାଧାରଣ ବୁଝିଲେ ଯଥେଷ୍ଟ ହୁଏ ନାହିଁ, ଏହାର ରହିଛି ଅଧିକ କିଛି କାର୍ଯ୍ୟକାରିତା। ତାହା ହେଲା ଯାହା ଅଜଣା ତାକୁ ଭାବ ଭିତରେ କରିବା ଆବିଷ୍କାର ଓ ତାକୁ ରୂପ ଦେବା ଅଟେ ଭାଷାର କାର୍ଯ୍ୟ। ହମବୋଲ୍ଟଙ୍କ ସିଦ୍ଧାନ୍ତ, ବିଦିତ ସତ୍ୟକୁ ପ୍ରକାଶ କରିବା ଭାଷାର ଲକ୍ଷ୍ୟ ନୁହେଁ, ବରଂ ପ୍ରକାଶ ହେବା ପୂର୍ବରୁ ଯାହା ଅବିଦିତ ତାକୁ ବା ସେହି ମୁହୂର୍ତ୍ତକୁ ତାହା କରେ ପ୍ରକାଶ। ଭାଷା ଯାହାକୁ କରେ ଆବିଷ୍କୃତ, ତାହା ହୋଇ ପାରେ ବାସ୍ତବତା, ନୁହେଁ ସତ୍ୟ। କର୍ମ ଦ୍ୱାରା ବାସ୍ତବତାର ସୃଷ୍ଟି। ତେଣୁ ଭାଷା ଦ୍ୱାରା ବାସ୍ତବତାର ସୃଷ୍ଟି। ଭାଷାର ମୂଳ ଅଭୀପ୍ସାକୁ ଖୋଜିବା ଏବଂ ପ୍ରକାଶ କରିବା ଉଚ୍ଚକୋଟିର କବିତାରେ ମିଳେ ଦେଖିବାକୁ। କଳାର ରସବୋଧରେ ସମ୍ମୋହିତ କଳାଭଳି କିଛି ଉଚ୍ଚକୋଟିର କଳାସୃଷ୍ଟି 'ଅର୍ଦ୍ଧମାନବୀ'ରେ ସମ୍ଭବପର ହୋଇଛି।

ନାଂଦନିକ ତତ୍ତ୍ୱବିଦ୍ Walter Pater ରସତତ୍ତ୍ୱରେ ଲକ୍ଷ୍ୟ କରନ୍ତି ତିନୋଟି ଉପାଦାନ, ଡ଼ିକ୍ସନ - ଷ୍ଟାଇଲ ଓ ଫର୍ମ! 'ଅର୍ଦ୍ଧମାନବୀ'ର ଡ଼ିକ୍ସନ ହେଲା Natural Language of the Passion, ଯାହା ହୃଦୟ ଭିତରୁ ବାହାରି ଆସିଛି ଏବଂ ହୃଦୟ ଭିତରେ ଅନୁପ୍ରବେଶ କରିଯାଉଛି! ହରିହର ମିଶ୍ର ଏଭଳି ଗୋଟିଏ ଭାଷା କରିଛନ୍ତି ପ୍ରୟୋଗ ଯାହା ଜୀବନର ଅପରିହାର୍ଯ୍ୟ ସତ୍ୟକୁ ଓ ପ୍ରକୃତିକୁ ଅଧିକ ସହଜରେ କରୁଛି କମ୍ୟୁନିକେଟ୍। ସତ୍ୟର ଭିତ୍ତିକୁ ସ୍ପଷ୍ଟତର ଭାବେ ଉପଲବ୍ଧି କରାଇବାକୁ ସିଏ ବ୍ୟବହାର କରିଛନ୍ତି ଫିଲୋସଫିକାଲ ଲାଙ୍ଗୁଏଜ୍। ପୂର୍ବରୁ ତାହାକୁ କୁହାଯାଇଛି 'ମେଟାଫିଜିକ୍‌ଚରିଆଲ୍' ବା ଯାହା ନୁହେଁ Psudo Classical Diction। ହରିହର ମିଶ୍ରଙ୍କ କବିତାର ଭାଷା ମାନବ ଜୀବନର ଭାଷାଠାରୁ ନୁହେଁ

ଅଲଗା । ପୁଣି ଅଲଗା ମଧ୍ୟ । ଯେଣୁ ପ୍ରତ୍ୟେକ ମାନବର ଭାଷା ତା' Individual ଏବଂ ସିଏ ତାହାର ଜ୍ଞାନ, କର୍ମ ଓ ଅନୁଭବର ଗଭୀରତା ଅନୁଯାୟୀ କରିଥାଏ ଏପରି ପ୍ରକାଶ । ୱାର୍ଡ଼ସ୍‌ୱାର୍ଥଙ୍କ ଡ଼ିକ୍‌ସନ ଉପରେ କହିବାବେଳେ ଇଲିୟଟ୍ ପ୍ରଶ୍ନ କରିଛନ୍ତି, Did Wordsworth examine the language of conversation in the higher classes? କୌଣସି ଗୋଟିଏ ବର୍ଗର ଭାଷା ହରିହର ମିଶ୍ରଙ୍କ କାବ୍ୟିକ ଡ଼ିକ୍‌ସନରେ ନୁହେଁ ସସୀମ । ତାଙ୍କ ଡ଼ିକ୍‌ସନରେ ଶବ୍ଦ ତାହାର ମର୍ଯ୍ୟାଦାରେ ପୂର୍ଣ୍ଣାଙ୍ଗ, ଯଥାଯଥ, ଭାବମୟ ବିଭାରେ ଉଜ୍ଜ୍ୱଳ । ArtificIal diction କୁ ସିଏ କରିଛନ୍ତି ପ୍ରତ୍ୟାଖ୍ୟାନ । ପ୍ରାକୃତିକ ଏକ Metaphorical ଭାଷା ତାଙ୍କ ଇମୋସ୍‌ନାଲ ଏକ୍‌ସାଇଟମେଣ୍ଟକୁ କରିଛି ଅଭିବ୍ୟକ୍ତ । କୃତ୍ରିମ ନୁହେଁ, ଯାହା ସଠିକ୍ ଓ ଆବଶ୍ୟକ ତାହାର ଘଟିଛି ବ୍ୟବହାର । ଡ଼ିକ୍‌ସନ ହିଁ ଗଦ୍ୟଠାରୁ ଅଲଗା କରିଦିଏ କବିତାର ସମଗ୍ର ପରିବେଶ । ମାତ୍ର ଭାଷାର ବସ୍ତୁନିଷ୍ଠ ଉପାଦାନ ଶବ୍ଦ । ଆରେଂଜମେଣ୍ଟ ଅଫ୍ ୱାର୍ଡ଼ସ୍ ଅଟେ ସିଂଟାକ୍ସ (Syntax), ଶବ୍ଦ ବିନ୍ୟାସ । କାବ୍ୟିକ ଶବ୍ଦ ବିନ୍ୟାସ ହିଁ ଅଲଗାକରି ଚିହ୍ନାଏ ଶିଳ୍ପର ଜାତି ଗଦ୍ୟ ବା ପଦ୍ୟ ବା ପ୍ରୋଜ୍ ପୋଏମ୍ । ୱାର୍ଡ଼ସ୍‌ୱାର୍ଥ ଥିଓରୀ ଅଫ୍ ଡ଼ିକ୍‌ସନ୍ ହେଲା ସାହିତ୍ୟରେ ଅପ୍ରଚଳିତ ସାଧାରଣ ମଣିଷଙ୍କ ବ୍ୟବହୃତ ଶବ୍ଦକୁ କବିତାରେ ବ୍ୟବହାର କରି ସିଏ ପ୍ରଦାନ କରିଥିଲେ କଳା ଉପାଦାନର ମର୍ଯ୍ୟାଦା । ଆଧୁନିକତାର ତାହା ପ୍ରାକ୍‌କାଳ । କିନ୍ତୁ ହରିହର ମିଶ୍ର ଆଧୁନିକ କାଳ ମଧ୍ୟାହ୍ନର ପ୍ରଚଣ୍ଡ ମାର୍ତ୍ତଣ୍ଡ । ତାଙ୍କ ଶବ୍ଦ ଉପାଦାନ ଅତୀତ ଓ ପାରମ୍ପରିକ ପ୍ରଚଳିତ କଳାକୋଷରେ ନୁହେଁ ସୀମିତ । ସିଏ ବିଜ୍ଞାନର ବୈଷୟିକ ଶବ୍ଦକୋଷଠାରୁ ଦର୍ଶନର ତାର୍କିକ ଓ ତତ୍ତ୍ୱ ସମ୍ବଳିତ ଶବ୍ଦ ପର୍ଯ୍ୟନ୍ତ ଅଜସ୍ର ଶବ୍ଦ ରହସ୍ୟରେ ଗଠନ କରିଛନ୍ତି ତାହାଙ୍କ ମନ୍ଥୁରା ଚମ୍ପାଫୁଲ !

ଭାଷା ଇନ୍ଦ୍ରିୟଗ୍ରାହ୍ୟ ହେଲେ ତହିଁରେ ପୂର୍ଣ୍ଣ ରହେ ସ୍ୱାଦ । ସ୍ୱାଦ ଶବ୍ଦ ବାଛି ସୌନ୍ଦର୍ଯ୍ୟ ସଂରଚନା ଦ୍ୱାରା ଘଟେ । ସୌନ୍ଦର୍ଯ୍ୟ ଶବ୍ଦର ବିଶୁଦ୍ଧ ଧ୍ୱନି ମାତ୍ର । ଷ୍ଟାଇଲ ଶବ୍ଦ କଂପୋଜିସନ୍ । ପାଟେର୍ ଲେଖିଛନ୍ତି, Composition, just as much as style, depends upon the mind. it is the mechanical side of writing, and when good, arises from mechanical correctness in the ordering of our ideas. ପଟେର୍‌ଙ୍କ ପ୍ରବନ୍ଧ 'ଷ୍ଟାଇଲ୍'ର ଆଲୋଚନା ପ୍ରସଙ୍ଗରେ ସ୍ପଷ୍ଟ କରିଛନ୍ତି ସ୍କଟ-ଜେମ୍ସ ଯେ Diction, of course, simply means wording of Phrasing, and implies choice of words । ଆରିଷ୍ଟଟଲ ଲେଖିଛନ୍ତି ଡ଼ିକ୍‌ସନ ଏବଂ ଷ୍ଟାଇଲ ଦୁଇଟି ଯାକରେ ଏକ ପ୍ରକାର ଉପାଦନା ବିଦ୍ୟମାନ ।

ପାଟେର୍‌ଙ୍କ ଦୃଷ୍ଟିରେ 'Style is simply manner of writing (which

includes choice of words)' କିନ୍ତୁ matter ବା ଭାବନା ସହିତ ନଥାଏ ଷମ୍ୟ । ତେଣୁ କୁହାଯାଏ ଷ୍ଟାଇଲ୍ manner ବା ଉତ୍ତମ କିନ୍ତୁ matter ବାଜେ । De Quincey ଲେଖିଛନ୍ତି, ଷ୍ଟାଇଲ ଶୁଦ୍ଧତର ଭାବେ ବାହ୍ୟ ଭାବନା କିନ୍ତୁ ଏହା Incarnation of thought, ଭାବନାର ଅବତାର ! ଉଚ୍ଚାରଣରେ ଶବ୍ଦ ଓ ତାହାର ଭାବ ଯେମିତି ଦେହ ଓ ପ୍ରାଣ ! ଫର୍ମ୍ ହେଲା The expression of a thought-organism । ମାନବର 'ମାଇଣ୍ଡ' ଏକ ଅତ୍ୟାବଶ୍ୟକ ଉପାଦାନ, ଯାହା ପ୍ରକାଶ କରେ ବା ନିଜେ ଏକ ଡ଼ିଜାଇନ୍‌ରେ ହୁଏ ପ୍ରକାଶିତ । ଗୋଟିଏ ଷ୍ଟ୍ରକ୍‌ଚରରେ ହୁଏତ ପରିଣତ । ଶବ୍ଦର ପ୍ରତ୍ୟେକ ଦିଗରୁ ପ୍ରତିଟି ବିନ୍ଦୁରୁ, ପ୍ରତ୍ୟେକ ଦୃଷ୍ଟିରୁ ଉପାଦାନ ଶୈଳୀ ଦ୍ୱାରା ସଂଯୋଜିତ ଓ ସଂଗଠିତ ହୋଇ ହୁଏ ରୂପ ପ୍ରାପ୍ତ, ଏହା ହିଁ ଅଟେ କଳାର ଆଙ୍ଗିକ (Form) । କଳାର ସୌନ୍ଦର୍ଯ୍ୟ ହେଲା 'Finess of truth or what we call expression' ! ଦେଖନ୍ତୁ ଫାଇନ୍‌ନେସ୍ ଅଫ୍ ଟ୍ରୁଥ୍ – 'ବିଚିତ୍ରବର୍ଣ୍ଣା ଏ ଦେହର ସାରା ଅଭ୍ୟନ୍ତର/ଅପୂର୍ବ ନୃତ୍ୟରେ ହେଲା ସ୍ୱପ୍ନମୟ/ଆଲୋକିତ ହେଲା ଶିରା ଉପଶିରା'; ଅନୁଭବର ଏହି ନୀଳ ଦସ୍ତଖତରେ ଚମକୁଚି ମଣି ମୁକ୍ତାର ବସ୍ତୁତତ୍ତ୍ୱ । ରୂପର ତେଜମୟ ଦୀପ୍ତିରେ ଚମକୁଛି ପଂକ୍ତି । ଝୁଲନ୍ତା ଶବ୍ଦମାନେ ଯେଉଁ ଧ୍ୱନି ସୃଷ୍ଟି କରିଛନ୍ତି, ସୁନେଲି ଓଠରେ ଧରି ମହୁଲ ଫୁଲକୁ କାବ୍ୟ ପୁରୁଷ ଯେମିତି ଟୁଇଷ୍ଟ୍ କରୁଚି ମହୁଲ ଫୁଲର ରସକୁ ! ହସ୍ତରେ ତା' ଅନାଘ୍ରାତ ଚମ୍ପାଫୁଲ, ରୂପର ପୀୟୂଷ । ରସ ଓ ରୂପ ଶ୍ୟାମବର୍ଣ୍ଣ ଅନ୍ଧକାରରେ ଏକୀଭୂତ, ବିଚିତ୍ରବର୍ଣ୍ଣା ଉନ୍ମୁକ୍ତ ରଖିଚି ତା' ସବୁଦ୍ୱାର ! ! ଅଷ୍ଟଧାତୁ ବେଷ୍ଟ ଲଗା ଖଡ଼୍‌ଗ ହସ୍ତା ମାହାରୀ, ଯେମିତି ଅନ୍ୟ ନାରୀ; ଅଣସର ସିଂହାସନକୁ ଆଙ୍ଗୁଠି ଟେକିଛି ଚନ୍ଦନର ଚିତ୍ରିତ ଛାଇକୁ, ଆସ ଭ୍ରଷ୍ଟଯୋଗୀ, ଆସ ଭୋଗର ନଗ୍ରକୁ ! ସ୍ୱପ୍ନ ପାଇଁ ସାକ୍ଷୀ କେହି ନାହିଁ । ଅଛି ଅଶରୀରୀ ସାଥୀ, ଡ଼ାକୁଚି ନିର୍ବାକ ଭୟଙ୍କର ଛାଇ ! 'ନିର୍ବାକ ଭୟଙ୍କର ଛାଇ' ପ୍ରତୀକଟି ଅଚିହ୍ନା ହେଲେ ବି ଚିହ୍ନା ଶେଷ ସତ୍ୟର ଦୃଶ୍ୟ । ବାଇଶି ପାହାଚ, ଖୋଲାହାଟ ଓ ରତ୍ନବେଦୀ ଟପି ଯିବା ପରେ ଆଗକୁ କ'ଣ ଆଉ ରହିଛି ପାବଚ୍ଛ ?

ବହୁ ଚିତ୍ର ପଟଳରୁ ବିଶ୍ୱକର୍ମାମାନେ କ'ଣ ଖୋଜି ଆଣି ଦେଖାଇ ପାରିବେ ନିଆରା ଆକୃତିର ସେ ପ୍ରେମମୟ ରୂପ ? ଚତୁର୍ବର୍ଣ୍ଣ ସମାହିତ ସେ ଶୂନ୍ୟ ସମ୍ଭାବନା, ଅପୋଡ଼ା କାଠର ବଂଶୀ, ନୂଆ ଗୀତର ସୁରରେ ଉତାରି ଆଣିବ କ'ଣ ଗୁପ୍ତ ବୃନ୍ଦାବନ ? ସବୁ ତାତି ଶୋଷି ନେବ ବାଲି, ହୃଦୟକୁ ରାସ୍ତାଟିଏ ଦେବ ଖୋଲି ? ସେଇ ରାସ୍ତା ଦେଇ ପ୍ରଳୟ ଆରପଟକୁ ଲେଉଟିଯିବ କାଳ ଆର ପାଖକୁ ! ! ସହସ୍ରାବ୍ଦର ପାର୍ଶ୍ୱ ପରିବର୍ତ୍ତନରେ ବଦଳି ନାହିଁ କବି ହରିହର ମିଶ୍ରଙ୍କ ଶବ୍ଦ କଳା କିମ୍ବା ଦୃଷ୍ଟି କଳା । 'ଅର୍ଦ୍ଧମାନବୀ'ର ଉତ୍ତରଣ ସ୍ତର 'ଅନେକ ଆଶ୍ଚର୍ଯ୍ୟ' (ପ୍ରକାଶ

କାଳ ୨୦୦୪)। ସହସ୍ରାବ୍ଦୀର ବିସ୍ମୟ କବିର 'ଅନ୍ତର୍ବେଦୀ'ରେ ଅନେକ କିଛି ଅନୁଭବର ଚିତ୍ରଶାଳାର ମୁକ୍ତମାଳା। 'ସୁଅର ସରୀସୃପ' ସବୁ ଉଦରସ୍ଥ କଲାବେଳେ 'ଜାଣିରଖ ଏ କୋଠରୀରେ ମୁଁ ନାହିଁ।' 'ମୁଁ' କ'ଣ ହଜି ଯାଇଥିବା ଶେଷ ନକ୍ଷତ୍ରର ମୁହଁ, ତାହା ବିଗତ ଶତକର ପ୍ରତୀକ? ଯାହାର ନିଦ ଭାଙ୍ଗୁ ନାହିଁ କି ସକାଳ ଆସୁ ନାହିଁ! ଯାହା ସ୍ଥିତି, ତାହା ସକାଳର ସବୁଭ୍ରମ କରେ ସୃଷ୍ଟି! ଛାଇଟିଏ ଭରପୂର ଆଲୋକରେ ଉବୁଟୁବୁ ହୁଏ! ଅନ୍ଧାରର ହସ ଟିକେ ଦିଗନ୍ତରେ ପ୍ରସରିଲାବେଳେ 'ତମେ ଫେରୁଥାଅ'! ଶବ୍ଦପରି ଫେରିବା ମଧ୍ୟ ଗୋଟିଏ ସତ୍ୟ, ଯେଉଁ ସତ୍ୟ 'ଫାଇନ୍‌ନେସ୍ ଅଫ୍ ଏକ୍ସପ୍ରେସନ୍'। ହରିହର ମିଶ୍ରଙ୍କ ସେନ୍ସ ଅଫ୍ ଫ୍ୟାକ୍ଟ ନୁହେଁ ବାସ୍ତବତାର ଫଟୋଗ୍ରାଫିକ ନକଲ ବରଂ ତାହା ତାଙ୍କ ଦୃଷ୍ଟିରେ ନକଲ (Transcription)। ବସ୍ତୁ ଚେତନା ଆରପଟ କଳା ଚେତନାର ଆବାସ ସ୍ଥାନ। ମନ ଅନ୍ତର୍ଦୃଷ୍ଟି ଦ୍ୱାରା ସେଠାରେ ଗଠନ କରୁଛି ଇନ୍ଦ୍ରିୟସଂବେଗୀ ଏକ୍ସପ୍ରେସନ୍। ସଠିକ୍ ଚେତନାର କପି ନକଲ ହେଉ ନାହିଁ, ପରିବର୍ତ୍ତିତ କାଳ କଳା ହୋଇ ହେଉଛି ନକଲ। ସେହି କାଳ ହିଁ ଅର୍ଦ୍ଧମାନବୀ! ତା'ର ହସ୍ତ ପଦ ରହିଛି, ରହିଛି ମନ ଓ ଇନ୍ଦ୍ରିୟମାନଙ୍କ ଇଚ୍ଛା! ବିମୋହିତ ଅନ୍ଧକାର ଓ ତାହାର ରହିଛି ପାପର ବର୍ଣ୍ଣ। ଜନ୍ମ ଓ ମରଣର ଗଢ଼ା ଗୋଟିଏ ଜୀବନ ଛାଞ୍ଚରେ ସିଏ ଶବ୍‌ଦର ଅନ୍ତର୍ବେଦୀ ଗୋଟିଏ! ଅନ୍ତରଙ୍ଗ ମୁହୂର୍ତ୍ତକୁ ଚିହ୍ନିଗଲା ପରେ କାହାର ଇଶାରାରେ ସିଏ ନାକଚ କରିଦିଏ ଚୌଦିଗର ଦୃଶ୍ୟ! ମହାକାଳ ତରଳୁଛି। ଦୃଶ୍ୟ ସରିଯିବ। ପରେ ଯାହା ଆସେ ତାହା ସମ୍ଭାବନାପୂର୍ଣ୍ଣ ଗୋଟିଏ ସନ୍ଧିକ୍ଷଣ! କାବ୍ୟ ପୁରୁଷର ଅଙ୍ଗକୁ ଶୂନ୍ୟରେ ଭିଡ଼ିଧରେ। କିଏ ସେଇ? ମହାଶକ୍ତି କୁଣ୍ଡଳିନୀ, ଚେଇଁଉଠେ ଚାହିଁ ରହେ। 'ସମୟ ଆଖର ହେଲା ଏହିଥର/ଏଥର ଶିଶୁର କାଂଦ ବଟପତ୍ର ପରେ/ସବୁ ପୁଣି ଏକତ୍ରିତ ସେ କାଂଦରେ/ପ୍ରଳୟର ଦୁଂଦୁଭିରେ ଆୟୋଜନ/ଏକତ୍ର ହେବାର/ପୁନଶ୍ଚ କାରା ସେ ହସପଦ୍ମ ନଉକାରେ।' (ପୃଷ୍ଠା ୪୧୯), ହରିହର ମିଶ୍ରଙ୍କ କବିତା ୧୦୦୧)। ସିମ୍ବଲିକ୍ ଟେକ୍‌ନିକ୍‌ର ହସ୍ତାକ୍ଷରରେ ଅସହଜ ଆମ୍ବିଗ୍ୟୁଟିର ନକ୍ସା ରତ୍ନଖଣିର ଦେଇଛି ସୂଚନା। କବିତା ଯେଉଁ ବିଜ୍ଞାନର କାରିଗରୀ ତାହା ଉଇଲିୟମ ଇମ୍ପସନଙ୍କ ଭାଷାରେ ସଂଦିଗ୍ଧତା (Ambiguit)। ଏକାଧିକ ଭାବ ଶବ୍ଦରୁ ଜାତ ଖାଲି ନୁହେଁ, ଶବ୍ଦର ଥାଏ ଏକାଧିକ ନୂତନ ଅର୍ଥ। ପିଓର୍ ସାଉଣ୍ଡ୍ ଓ ପିଓର୍ ଆଟମୋସ୍‌ଫିଅର୍ ମଧ୍ୟରେ ଆନୁଷଙ୍ଗିକ ଅର୍ଥ ବାଢ଼ି ଦିଏ ଚେତନା। ସବୁ ସମ୍ପର୍କ ଅଚିହ୍ନା, ସିଂବଲ ସିଂବଲ ଗୋଟିଏ ସିଂବଲ୍‌ର ବୈଷୟିକତାକୁ ଯିଏ ବାଢ଼ି ବସିଥାଏ। 'ହସ୍ତପଦ୍ମ ନଉକାରେ', ଏଠାରେ 'ହସପଦ୍ମ' ପାରମ୍ପରିକ ରୂପକ ହେବାବେଳେ 'ନଉକା' ଏକ ପ୍ରତୀକ। 'ହସ୍ତପଦ୍ମ' ଯେମିତି ଏକ ନୌକା।'

ଅନ୍ତର୍ନିହିତ ଅର୍ଥର ପ୍ରକାଶ (Connotations), ମନୋଭାବ (Attitudes) ଏବଂ ଅର୍ଥ ବା ଭାବ ସୂଚିତ କରେ ସୃଜନ ପୁଲକରେ ଭାରସାମ୍ୟ। ଅନୁଭୂତିର ମୂଲ୍ୟାୟନରେ ଅନୁଭବ ଜୀବନ୍ତ। ଅନୁଭବର ପରିଣତି କବିତାର ଡ଼ିଜାଇନ୍, କବିତା ଗଠନ ଟେକ୍‌ନିକ୍ ଏବଂ ଷ୍ଟ୍ରକ୍‌ଚରର ସ୍ୱରୂପ। ତାହାକୁ ନିୟୁକ୍ତିଟିକ ଦୃଷ୍ଟିରେ ହରିହର ମିଶ୍ର କରିଛନ୍ତି ସେମିକଂକ୍ରିଟ୍। ଗଦ୍ୟ ଛନ୍ଦ ଊର୍ଦ୍ଧ୍ୱରେ ଗୋଟିଏ ମେଟାଫିଜିକାଲ ରିଦମ୍ ଅବଗତ କରାଏ ଶାବ୍ଦିକ ପରିସ୍ଥିତି, ଘଟଣାର ଧାରା ଓ କଳ୍ପନାର ଚିତ୍ରମାଳା। ବହୁ ବିଶେଷତ୍ୱରେ ଭର୍ତ୍ତି ହରିହର ମିଶ୍ର ଏକ କାବ୍ୟିକ ମୂର୍ତ୍ତି। ବିଶେଷତ୍ୱମାନଙ୍କ ତାଲିକା କରି ତାଙ୍କ ସୌନ୍ଦର୍ଯ୍ୟର ମୂଲ୍ୟାୟନ ଗୋଟିଏ ଧାରାର ଶୃଙ୍ଖଳାରେ ଆବଶ୍ୟକ ହେଉଛି।



# ମିନିଂ ଓ ବିଇଙ୍ଗ୍ ଭିତରୁ କାଳାତୀତର ସିମ୍ବଲିଜିମ୍

## 'ନେତ୍ରୋତ୍ସବ' ରୂପବିନ୍ୟାସର ବସ୍ତୁ ପ୍ରତିଭାସ

ନୂତନ ସହସ୍ରାବ୍ଦୀକୁ ଉତ୍ତାରି ଆଣିଛନ୍ତି ତାଙ୍କ କାବ୍ୟ ଗ୍ରନ୍ଥ 'ଅର୍ଦ୍ଧମାନବୀ' (୨୦୦୩)ରେ କବି ହରିହର ମିଶ୍ର । ଏହା ତାଙ୍କ ପ୍ରଥମ ପାବଚ୍ଛ ହେବାବେଳେ ୨୦୦୪ରେ ତାଙ୍କ କାବ୍ୟ-କଳାର ଦ୍ୱିତୀୟ ସୋପାନ 'ଅନେକ ଆଶ୍ଚର୍ଯ୍ୟ' । ୨୦୦୫, ତାଙ୍କ କବିତାର କୀର୍ତ୍ତି-ଚନ୍ଦ୍ର, 'ପାହାଡ଼ର ଢ଼େଣା' ହେବାବେଳେ ୨୦୦୬କୁ ତାଙ୍କ କବିତାର ଉପବନ 'ନେତ୍ରୋତ୍ସବ' ଆସିଛି କବିତା ଗ୍ରନ୍ଥ ଥାକକୁ ।

'ନେତ୍ରୋତ୍ସବ' କାବ୍ୟିକ ପ୍ରତିମା 'ଧନ୍ୟ ସେହି ପୁରୀ'କୁ ଆରମ୍ଭିଛି ତା' ଯାତ୍ରା । ବତିଶଟି କବିତା ଅତିକ୍ରମ କରିଯିବା ପରେ ଶୀର୍ଷକ 'ନେତ୍ରୋତ୍ସବ' ଶବ୍ଦର ପୁଷ୍ପ ମୁହଁ ଫିଟାଇ କହିଛି କଥା ! ଆଗକୁ ଅବଶ୍ୟ କଥା କହୁଥିବା ପ୍ରାୟ ଚାଳିଶଟି ପାଖାପାଖି କବିତା ନିଜ ଆତ୍ମ କଥା ଶୁଣାଇବାକୁ କରିଛନ୍ତି ପ୍ରତୀକ୍ଷା !!

'ନେତ୍ରୋତ୍ସବ', 'ନେତ୍ର' ଓ 'ଉତ୍ସବ' ଦୁଇଟି ଶବ୍ଦର କେମିଷ୍ଟ୍ରୀ, ବ୍ୟାକରଣର ଭାଷାରେ ଶବ୍ଦ ଦୁଇଟିକୁ ସନ୍ଧି ପ୍ରକରଣ କରାଯାଇ ନୂତନ ଶବ୍ଦଟି ସଂଗଠିତ ହୋଇଛି । ଗୋଟିଏ ଗଣପର୍ବର ପାରମ୍ପରିକ ରୀତିର ନାମ 'ନେତ୍ରୋତ୍ସବ' ।

ଏହି ଦୃଷ୍ଟିରୁ 'ନେତ୍ରୋତ୍ସବ' ଏକ କାବ୍ୟିକ ମିଥ୍। ଏକ ଆର୍କିଟାଇପାଲ୍ ମିଥ୍।

ଉତ୍କଳୀୟ ଜାତୀୟ ଦେବତା ଶ୍ରୀଜଗନ୍ନାଥ। ଯେତେବେଳେ ଗ୍ରୀଷ୍ମ ଋତୁ ହୁଏ ସମାପ୍ତ ଏବଂ ଘଟେ ବର୍ଷା ଋତୁର ଆଗମନ, ମହାପ୍ରଭୁ ଏକଶତ ଅଷ୍ଟଗରା ଜଳସ୍ନାନକରି ଗ୍ରୀଷ୍ମର ବିଦାୟ ଉତ୍ସବ ଦେବସ୍ନାନ ପୂର୍ଣ୍ଣମୀରେ ପାଳନ କରି ସୁଦୀର୍ଘ ଏକ ପକ୍ଷବ୍ୟାପି ଜ୍ୱର ପୀଡ଼ିତ ହେବା ଅନବସର ସେବା ଲାଗି ଲୋଡ଼ନ୍ତି। ଅନବସର ସେବା ବିଧି ପରେ ଦିଅନ୍ତି ନବଯୌବନ ଦର୍ଶନ। ସୁଦୀର୍ଘ ଏକ ପକ୍ଷ ବ୍ୟାପି ଶ୍ରୀଜୀଉମାନଙ୍କ ଦର୍ଶନରୁ ବଂଚିତ ଆକୁଳ ଭକ୍ତ ନବ ଯୌବନ ଦର୍ଶନ ଆହ୍ଲାଦକୁ ନେତ୍ରୋତ୍ସବ ଭାବେ କରନ୍ତି ପାଳନ।

ଏହା ବର୍ଷାଋତୁର ସ୍ୱାଗତ ଉତ୍ସବ। ଏହି ଉତ୍ସବ ଅବକାଶକୁ ଆହୁରି ମାତ୍ କରିବାକୁ ତତ୍ ପରଦିନ ଶ୍ରୀ ଜୀଉମାନେ କରନ୍ତି ଘୋଷଯାତ୍ରା। ଏହା ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଥା ଓ ପରମ୍ପରା।

'ନେତ୍ରୋତ୍ସବ'ର ଗୋଟିଏ ଅର୍ଥ Religious ritual practices ହେବାବେଳେ ଏହା ଏକ ସିମ୍ବଲିକ୍ ଫର୍ମ, ଗୋଟିଏ Appeal ଓ ଇମୋସ୍‌ନାଲ୍ ନୈଶ୍ଚିତ୍ୟର! ନେତ୍ରୋତ୍ସବ ନୟନର ଆହ୍ଲାଦ। କୋଟି ଜନତା ହୃଦୟର ମଣି, କୋଟି କଂଦର୍ପ ଜିଣା ତାଙ୍କ ନବ ଯୌବନ ରୂପ ଦର୍ଶନ ନେତ୍ରକୁ ଉତ୍ସବ ମୁଖର କରାଇବା କ'ଣ ଅସମ୍ଭବ? ଏହା ଭାବାବେଗ। ଏହା ସେହି ବେଦାନ୍ତୀୟ ଆଦିମ ଆନନ୍ଦର ଅଂଶ ବିଶେଷ, ଯେଉଁ ଆନନ୍ଦ ହେତୁ ଜୀବଗଣ ରହିଛନ୍ତି ଜୀବିତ, (ଆନଂଦେନ ଜାତାନି ଜୀବନ୍ତି, ତୈତ୍ତିରୀୟୋପନିଷତ, ଷଷ୍ଠ ଅନୁବାକ)।

'ୱାର୍ଡ଼ ଆଜ୍ ସାଉଣ୍ଡ' ଆଲୋଚନା କଲାବେଳେ କବିତାରେ ଆଙ୍ଗିକ କ'ଣ? ତାହା କ'ଣ ଅର୍ଥଯୁକ୍ତ ଗୋଟିଏ ଆକୃତି? ଆକୃତି Which the senses recognize as meaningful whatever the mind can say? - shape to which the emotions answer? (Poetry and Experience, by Archibald Mac Leish, page 17)!

'ନେତ୍ରୋତ୍ସବ' - ଏକ ଏବଂ ଦୁଇ, ଦୁଇଟି କବିତା ଏବଂ ଏକଟି ଦୁଇ ଭାଗରେ ବିଭକ୍ତ। ଏକର ଏକ ଆକୃତିକୁ ଲକ୍ଷ୍ୟ କଲେ ମ୍ୟାକ୍‌ଲିକ୍‌ସ୍‌ଙ୍କ ପ୍ରଶ୍ନ ହୋଇଉଠେ ଜୀବନ୍ତ। ଏକର ଆରମ୍ଭ - 'ସ୍ୱପ୍ନରେ ନଥାଏ ଦୁଃଖ କି ସୁଖ' ଏବଂ ସମାପ୍ତ ପଂକ୍ତି - 'ଅବଶ୍ୟ ଆବେଗ ନ ଥିଲେ ସ୍ୱପ୍ନରେ/ମିଳନ ହୁଅନ୍ତା ନାହିଁ,/ କାହିଁରେ ଲାଗନ୍ତା ନାହିଁ ଭାବ ଓ ହୃଦୟ'। ଏହି କବିତାର ଦ୍ୱିତୀୟ ଛତ୍ର - 'ସ୍ୱପ୍ନରୁ

ଭାବାବେଗ କାଢ଼ି ଦେଲେ/ ଗଢ଼ା ହୋଇ ସାରିଥାଏ/ ଅବଶିଷ୍ଟ ପୃଥିବୀ/ଏପରିକି ଦେଶ' ! ଏଠାରେ କବିତାର କଂଚି ବା କେନ୍ଦ୍ର ବିନ୍ଦୁ 'ସ୍ୱପ୍ନ' । ସ୍ୱପ୍ନ କ'ଣ ? ହୁଏତ ଏକ 'ନନ୍‌ବିଙ୍ଗ୍' । ମ୍ୟାକ୍‌ଲିସ୍ ଉଦ୍ଧୃତ କରିଛନ୍ତି ଜଣେ ଚୀନ କବି Lu Chiaଙ୍କ କବିତାରୁ ତାତ୍ତ୍ୱିକ ପଂକ୍ତି: We poet struggle with non-being to force it to yield Bieng, 'ସ୍ୱପ୍ନ' ଏକ ସଂଦିଗ୍ଧ ପ୍ରତୀକ । ସ୍ୱପ୍ନ ଅନିଶ୍ଚିତ ଓ ପୁଣି ନିଶ୍ଚିତ ଗୋଟିଏ ଅନୁଭବ ।

ପ୍ରଥମ ଛତ୍ରରେ ରହିଛି ସମକାଳ ଇତିହାସର କଂକ୍ରିଟ ଅନୁଭବ 'ମୂରଲି ଧରନ୍ ଆସିପାରେ ଖେଳ ଛାଡ଼ି ଏଲ.ଟି.ଟି.ଆଇ. । ଆତତାୟୀଭଳି/ପର ଭେକ୍ ମୁସାରଫ୍‌ବି/ଆତଙ୍କବାଦୀ ସାଜି/ଲୁଚିଛପି ପଖାଳ ଖାଇପାରେ/ଶାନ୍ତିଲତାର ସୁନାଖଡ଼ିକା ହାତରୁ.... ।'

ଏଇଠି ପ୍ରଶ୍ନ ଉଠେ ଆତଙ୍କବାଦୀ ଏହି କ୍ଲାଇମେଟର ସମ୍ପର୍କ କ'ଣ ନେତ୍ରୋତ୍ସବ ସହିତ ? ହୁଏତ ଏହା ଉତ୍ତର ହୋଇପାରେ ଟାଇପ୍ ରାଇଟରର ଶବ୍ଦ ସହିତ କ'ଣ ସମ୍ପର୍କ ରନ୍ଧନରତ ମାଂସ ବାସ୍ନାର କିମ୍ବା ମାଂସ ବାସ୍ନା ସହିତ ସ୍ପିନୋଜାଙ୍କ ଦର୍ଶନ ପଂକ୍ତିର ?

ଏହି କବିତାର ଦ୍ୱିତୀୟ ଭାଗ – 'ପୁରାଣ ଗଢ଼ା ହୁଏ ସ୍ୱପ୍ନରେ/ସାପର ଶେଯରେ/ ଅନେକ କଥା ଲେଖି ପ୍ରଭୁ/ସିଲଟରୁ ପୋଛି ଦେଲାପରେ । ଭାବୁଥାନ୍ତି...' । 'ସାପଶେଯ' ମିଥ୍ ଶ୍ରୀବିଷ୍ଣୁଙ୍କ ଅନନ୍ତ ଶୟନ ମୁଦ୍ରାକୁ ଉଦ୍‌ଜାଗ୍ରତ କଲାବେଳେ, 'ଅନେକ କଥା ଲେଖି' ପ୍ରତୀକ ଦିଏ ସୃଷ୍ଟି ବା ଶ୍ରୀବିଷ୍ଣୁଙ୍କ ସର୍ଜ୍ଜନା ସଂକଳ୍ପ ସୂଚନା ଏବଂ 'ସିଲଟରୁ ପୋଛିବା' ପ୍ରଳୟ କଳ୍ପନା କିମ୍ବା ତାହାଙ୍କ ମୃତ୍ୟୁ ଯୋଗ ସୂଚନା ! ସବୁ ଜୀବଙ୍କ ଦୀପ ଅନ୍ତ କାଳରେ ସିଏ କରନ୍ତି ନିର୍ବାପିତ ! 'କାଳଃ ପରମେଷ୍ଠୀ' କିମ୍ବା 'କାଳୋଽସ୍ମି ଲୋକକ୍ଷୟକୃତ...' ।

ଆଗକୁ କବିତା ଆଙ୍ଗିକକୁ ଅବରୋଧ ପାଇଁ ରହିଛି ଗୁଡ଼ିଏ ପୌରାଣିକ ପ୍ରତୀକ ଯାହା 'ଶ୍ରୀଜଗନ୍ନାଥ' ଆବେଗମୟ ଚେତନାକୁ କରିଛି ସୁସ୍ପଷ୍ଟ । ଯେମିତି 'ଫୁଲ ଆଉ ସୋଲର ଟାହିଆ', 'ଚନ୍ଦନ ଚର୍ଚ୍ଚିତ ମୁଣ୍ଡିତ ବାମନ (ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ)', 'ସୁଦର୍ଶନ' ପ୍ରଭୃତି ପ୍ରତୀକ ଗୋଟିଏ ଆଧ୍ୟାତ୍ମିକ ପରିବେଶ ପ୍ରସ୍ତୁତ କରୁଥିବାବେଳେ ଗୋଟିଏ ପୁନର୍ଜନ୍ମ ତତ୍ତ୍ୱ ହୁଏ ଦୃଷ୍ଟିଗୋଚର । ସତ୍ୟଯୁଗ ବଳି ରାଜକନ୍ୟା ରତ୍ନମାଳୀ ଦ୍ୱାପର ଯୁଗରେ ପୂତନା ହୋଇ କରିଛି ଜନ୍ମଲାଭ । ପୁନଶ୍ଚ ସତ୍ୟର ତପୀ, ତେତ୍ରୟାର କପି ଏବଂ ସେମାନେ ଦ୍ୱାପରରେ ଗୋପୀ ହୋଇ ଚଢ଼ିଛନ୍ତି ପ୍ରଭୁଙ୍କ କାନ୍ଧ ! କଳିଯୁଗରେ ସେମାନେ 'ସେବାକାରୀ'

ପଣ୍ଡା, ପଢ଼ିଆରୀ ଓ ଦଇତାପତି ଫୁଲ ଓ ସୋଲର ଟାହିଆକୁ ଶ୍ରୀଜୀଉ ରଥରେ ବିଜେବେଳେ ଭାଙ୍ଗି ନିଅନ୍ତି । କବି ଖେଦ ବ୍ୟକ୍ତ କରିଛନ୍ତି, ସେମାନଙ୍କୁ 'ଯେତେ ବାଗେଇଲେ ବି/ରହି ଯାଉଥାଏ ଖଟକା କୋଉଠି/ଅଭାବ ଥାଏ/ଯେତେ ଭରିଲେ ବି/ଶୂନ୍ୟଥାଏ ଭଣ୍ଡାର' !

ନେତ୍ରୋତ୍ସବ -୨, ପ୍ରଥମ ଛତ୍ରର ଶେଷ ଦୁଇପଂକ୍ତି: 'ଅପୂର୍ଣ୍ଣ/ମନସ୍କାମ ପୂର୍ଣ୍ଣ ହେବାର ପବିତ୍ର ମୁହୂର୍ତ୍ତ' ସବୁକାଳେ ସମସ୍ତଙ୍କ ପାଇଁ ଏକ ଶୂନ୍ୟସ୍ଥାନ । ଅଭାବର ଠିକଣା। ସମସ୍ତଙ୍କ ପାଇଁ ଏବଂ ସବୁବେଳେ ନିର୍ଭୁଲ୍ ! କବିତା ମୁହୂର୍ତ୍ତକ ଅନୁଭବର ଏକ ଶବ୍ଦ ପ୍ରତିମା ! ସ୍ୱପ୍ନ ସହ ସାକ୍ଷାତ୍ ସତ୍ୟର, ସିଏ କରିଛନ୍ତି ଅନୁଭବ, ଚାରିଚକ୍ଷୁରେ ଚିରନ୍ତନ ମିଳନ ! 'ସ୍ୱପ୍ନର ଆଖିରେ ସତ୍ୟ/ସତ୍ୟର ଆଖିରେ ସ୍ୱପ୍ନ / ଏ ଯେ ନେତ୍ରୋତ୍ସବ' !

Henri Cazalisଙ୍କୁ ୧୮ ଜୁଲାଇ ୧୮୬୮ ରେ ଖଣ୍ଡିଏ ଚିଠିରେ ଲେଖିଥିଲେ କବି Mallarme, This sonnet... Is inverse, I mean that the sense (if it has one...) is evoked by an internal mirage of the words themselves. (Quoted by Elizabeth Sewell in her Structure of Poetry, page 154) ମ୍ୟାକଲିସ୍ ଲେଖିଛନ୍ତି, କବିତା ଶବ୍ଦ ନିର୍ମିତ, ଯେହେତୁ ଇନ୍ଦ୍ରିୟ ସଂଚାରୀ ଘଟଣା, ଏହାର ଯେ କୌଣସି ଅର୍ଥ ୱାର୍ଡ଼ସ - ଦେମ୍‌ସେଲ୍‌ଭେସ୍ ! ହୁଏତ ହୋଇପାରେ ଆକସ୍ମିକ କିମ୍ବା ସମ୍ପର୍କହୀନ ବେଖାପ କିମ୍ବା ଆକସ୍ମିକ ଓ ପ୍ରସଙ୍ଗହୀନ (Irrelevant) ଉଭୟ ! 'ୱାର୍ଡ଼ସ ଦେମସେଲଭେସ୍' ମୁହଁରୁ ପ୍ରତିଫଳିତ ହେଉଥିବ ବିଭ୍ରାନ୍ତିକର ପଦାର୍ଥ !

'ନେତ୍ରୋତ୍ସବ' କବିତା ଶବ୍ଦଙ୍କ ସରଫେସ୍‌ରେ ପ୍ରତିଫଳିତ ହୋଇଛି Mirage । 'ନେତ୍ରୋତ୍ସବ' କବିତାଟି ପାଇଁ ପ୍ରବଳ Idea ଖର୍ଚ୍ଚ କରାଯାଇଛି । ମାଲାର୍ମେ ଶିଳ୍ପୀ ଡ଼େଗାସ୍‌ଙ୍କୁ ଖଣ୍ଡିଏ ଚିଠିରେ ଲେଖିଥିଲେ - Poetry is not made with Ideas : it is made with things or words that signify things. 'ସ୍ୱପ୍ନ ଓ ସତ୍ୟ' ହରିହର ମିଶ୍ରଙ୍କ ଅର୍ଥ ବୋଧକ ବସ୍ତୁ !!

'ନେତ୍ରୋତ୍ସବ' ପାର୍ବଣ ପରମ୍ପରାର ଜନ୍ମସ୍ଥଳ ଶ୍ରୀକ୍ଷେତ୍ର 'ପୁରୀ' । 'ପୁରୀ' 'ପୂର୍ଣ୍ଣ' ଶବ୍ଦରୁ ନିଷ୍ପନ୍ନ, ଯେଉଁଠାରେ ପୂର୍ଣ୍ଣତା ବିରାଜମାନ ! ହୁଏତ ଏହାର ପ୍ରାଚୀନ ଉପନିଷଦୀୟ - ପୂର୍ଣ୍ଣମିଦମ୍ ! 'କି ଅବା ଗୋଲୋକ ଏହି ଭୂଲୋକରେ ନିତ୍ୟ ପ୍ରତ୍ୟମାନ' (ଧନ୍ୟ ସେହୁ ପୁରୀ) 'ତୁମ ଆନନ୍ଦ ଧାମ', 'ଆଲୋକ ଧାମ' ପ୍ରଭୃତି କରେ ସୂଚିତ !

'ତୁମେ' କିଏ ? ତମେ ସେଇ ଯାହାର 'ଦୁଆର ଫିଟାରୁ ପହଡ଼ ପଡ଼ିବା ଯାଏଁ ତମର ରାଜନୀତି ।' ଜଗତ ରାଜାର ଖଞ୍ଜା ନୀତି 'ରାଜନୀତି' । ବିଶ୍ୱ ସମ୍ରାଟଙ୍କୁ, 'ତାକୁ ଚିହ୍ନଇ କେହି/ସେପରି କିଛି ନାହିଁ । ତମେ ଚଳନ୍ତି ଠାକୁର' 'କାଠ ପିତୁଳା ନୁହଁ', ପ୍ରଭୃତି ଅବଗତ କରାଇ ଦିଏ ତମର ପରିଚୟ !

'ଆଜି ଦୁଃଖର ଗୁଳୁଗୁଳିରେ/ଚୁପ୍‌ଚାପ୍ ବସି ରହ'....., ଏ ଦୁଃଖର ଗୁଳୁଗୁଳି ମହାକାଳ ସାମାଜିକ ପରିବେଶର, କିମ୍ବା କବିଙ୍କ ନିଜ ଚେତନାର ତାତି ! 'ଛପନ ପ୍ରକାର ଭୋଗ/ଛତିଶ ପ୍ରକାର ସେବା' ... 'ତମର ତ ମହାରାସ', ତମର ଶୃଙ୍ଗାର ! ତମ ଲୀଳା !

'ତୁମ ଆଦେଶରେ ସବୁ ଚାଲିଛି/ମେଘ ସମୁଦ୍ର ପବନ ଆଲୋକ ଅନ୍ଧାର...' ତୁମେ କିଏ, କେଉଁ ଶବ୍ଦରେ ତୁମକୁ ଚିହ୍ନାଇ ହେବ ? ତେଣୁ ଶବ୍ଦଟିଏ ଖୋଜି ନାହାନ୍ତି ପ୍ରାଜ୍ଞ କବି । ନିଜ କ୍ଷେତ୍ରରୁ ଗମନ କରିଛନ୍ତି ଶ୍ରୀକ୍ଷେତ୍ର, ଯେଉଁଠି 'ସର୍ବନାମ' ବା ସର୍ବଶବ୍ଦ ରହିଛନ୍ତି ପୁରି ! ତୁମ ପରିବେଶ ଆଧ୍ୟାତ୍ମିକ ସୁବାସରେ ଚିତ୍ର ବିଚିତ୍ର ! ସନ୍ଥଙ୍କ ଜଟାଜୂଟଭଳି ଜଟିଳ କଳ୍ପବଟର ଛାଇରେ

ଅତୀତର ଶୀତଳ ପିଣ୍ଡାରେ
ବାହୁଙ୍ଗାର ଜଙ୍ଘାରେ ଦୀପଟିଏ ଜଳୁଥାଏ
ମାହାର୍ଦ କୁଡ଼ିଆ ଭିତରେ
ଭାଗବତ ପଢ଼ା ଚାଲିଥାଏ ।

ଚମତ୍କାର ତିନୋଟି ମେଟାଫର୍ ଏହି ଛତ୍ରରୁ ମନକୁ କରିଦିଏ ଆହ୍ଲାଦିତ । ସନ୍ଥଙ୍କ ଜଟାଜୂଟଭଳି ଜଟିଳ କଳ୍ପବଟ, ଅତୀତ ଏକ ଶୀତଳ ପିଣ୍ଡା ଏବଂ ବାହୁଙ୍ଗାର ଜଙ୍ଘ, ଏଠାରେ ଅନୁଭୂତିର ଉପାଦାନ କେବଳ ପ୍ରବଳ କାବ୍ୟିକ ଖାଲି ନୁହେଁ, ବରଂ ପ୍ରବଳ ନାଂଦନିକ ସୁବୋଧ ଓ ବାସ୍ତବ ।

ମେଟାଫର୍ ସଂଜ୍ଞାରେ ଆଇଭର୍ ରିଚାର୍ଡ଼ସ (I.A. Richards) ଉଲ୍ଲେଖ କରିଛନ୍ତି, Metaphor is the suprime agent by which desparate and hitherto unconnected things are brought together in poetry. ଅସଂପୃକ୍ତ ଏବଂ ବର୍ତ୍ତମାନ ପାଇଁ ଅସଂଲଗ୍ନ ଦୁଇଟି ବସ୍ତୁକୁ କବିତାରେ ସଂଲଗ୍ନ ବା ଏକ କରେ ମେଟାଫର । ଗଦ୍ୟରେ ମେଟାଫର୍ ମାନ ଥାଏ ଅର୍ଦ୍ଧଜୀବନ୍ତ, ମ୍ୟାକଲିସ କରିଛନ୍ତି ଉଲ୍ଲେଖ । ସିଏ ଆରିଷ୍ଟଟଲଙ୍କୁ 'ସ୍ମରଣ କରି ବ୍ୟକ୍ତ କରିଛନ୍ତି... In a good poem a metaphor is always a relationship: "The applica-

tion" as aristotle puts it in the Poetics, 'of an alien name by transferable either form genus to species, or from species to species, or by analogy, that is proportion. 'Metaphor, Poetry and experience, Page 81)''' କେହି ନା କେହି ଶୁଆଇ ପକାଏ ମୋର ସମୟକୁ ତୁମ କୋଳ ନବଯୌବନରେ'... !

କେବଳ ପୁରୀରେ ସମୟ ଶୁଏ ମହାଭୈରବଙ୍କ ନବ ଯୌବନ କୋଳରେ । ସମୟ ବା କାଳ ସ୍ତ୍ରୀ ଲିଙ୍ଗରେ କାଳୀ । ତାନ୍ତ୍ରିକ-ଯୋଗୀ ନିଗୁରାନନ୍ଦ ଉଲ୍ଲେଖ କରିଛନ୍ତି, The Primordial energy which give birth to time is known as Kali or the mother of time. If anybody wants freedom from this bondage, he has to roll up the creation with him in his return journey. (Revealed mysterious of the world divine, P.36, by Nigurananda).

ଗୋଟିଏ ତାନ୍ତ୍ରିକ ରହସ୍ୟ ଖୋଲେ ତା' ପଂଜୁରୀର ଦ୍ୱାର । ରାସ୍ତା ଦୁଇଟି, ଶକ୍ତିଙ୍କୁ ମାତା ରୂପେ କରାଯାଏ ଆରାଧନା, ଦ୍ୱିତୀୟ ପଥଟି ହେଲା ସାଧକଙ୍କୁ ହେବାକୁ ହୁଏ ଶିବ, ବୀର ସାଧକ ! ଏଠି କିନ୍ତୁ ସାଧକ ଶିଶୁ - 'ପାଟ ପୀତାମ୍ବରୀ ଓ ପଣତ କାନି ଧରି / ଗୁଲୁଗୁଲୁ କଥା କହି ଯା' ଆସ କରୁଥିବି, 'ଯା' ଆସ' ବ୍ୟଂଜନା ସୂଚିତ କରେ, ଯାବଜ୍ଜନନମ୍ ତାବନ୍ମରନଂ, ତାବଜନନୀ ଜଠରେ ଶୟନମ୍ ! ଜୀବ ସୋଽହମ୍ ଯାଉଥିବ ଏବଂ ଆସୁଥିବ ! ମହାପ୍ରଳୟ ନ ହେବା ପର୍ଯ୍ୟନ୍ତ ମହାଲୀଳା ଚାଲିଥିବ ! ବ୍ରହ୍ମ ଚୈତନ୍ୟ ପ୍ରାଣ ଓ କୁଣ୍ଡଳିନୀ ସହିତ କର୍ମଫଳ ଅନୁସାରେ ଊର୍ଦ୍ଧ୍ୱ (ସ୍ୱର୍ଗ) ଲୋକ କିମ୍ବା ନିମ୍ନ (ନରକ) ଲୋକ ଭୂମିଷ୍ଠ ସ୍ୱୀକାର କରିଛନ୍ତି, 'ବହୂନି ମେ ବ୍ୟତୀତାନି ଜନ୍ମାନି'.... (ଶ୍ରୀମଦ୍ ଗୀତା ୪/୫) । 'ଜନ୍ମ କର୍ମ ଚ ମେ ଦିବ୍ୟମେବମ୍' ଜନ୍ମ କର୍ମ ଏବଂ ମୁଁ (ଈଶ୍ୱର) ଦିବ୍ୟ ଅଟନ୍ତି । ଏହି ଶାସ୍ତ୍ରୀୟ ଦୃଷ୍ଟିରୁ ହରିହର ମିଶ୍ର ସ୍ୱକବିତାରେ ଦିବ୍ୟ ପ୍ରସଙ୍ଗ କରିଛନ୍ତି ରଚନା ।

ଯୋଗ ଶାସ୍ତ୍ରରେ କୁହାଯାଇଛି, ସର୍ବସ୍ୟ ଧାତାରମଚିନ୍ତ୍ୟରୂପମାଦିତ୍ୟବର୍ଣ୍ଣଂ', ସିଏ ଏବଂ ସିଏ, 'ଜୀବନଂ ସର୍ବଭୂତେଷୁ' । ତାହାଙ୍କୁ ପ୍ରାପ୍ତ ନ ହେବା ପର୍ଯ୍ୟନ୍ତ, ଆବ୍ରହ୍ମ ଭୁବନାଲ୍ଲୋକ ପୁନରାବର୍ତ୍ତିନୋ..., ବ୍ରହ୍ମଲୋକ ପର୍ଯ୍ୟନ୍ତ ଆତ୍ମା ଯାତ୍ରା କଲେ ବି 'ଯୋଗିନାମେବ କୁଳେ ଭବତି ଧୀମତାମ୍' । 'ବିନିମୟ'ରେ ସୂଚିତ କରିଛନ୍ତି, 'ଲୀଳାମୟ ମଂଚ' ଇଏ ! ମୟି ସର୍ବମିଦମ୍, ରସୋଽହମପ୍ସୁ, ଅପର୍ ରସ ସିଏ, ସେହି ଅଦୃଶ୍ୟର ଲୀଳା ଚାଲିଛି/ଆମେ କେହି ନ ଥିବା ସ୍ଥାନରେ/ସେ ଲୀଳାର ଅନୁକୃତି/ସ୍ଥାପତ୍ୟରେ ମେଳାରେ/ପର୍ବ ପର୍ବାଣିରେ...' !

'ଗର୍ଭରୁ ଗର୍ଭ ଟାଳେ ସେ ଘଟର ବିନିମୟ/ଅତୁଟ ସେ... !' ଶାସ୍ତ୍ର କହେ, ମୋହିତଂ ନାଭିଜାନାତି... ! ଇନ୍ଦ୍ରିୟମାନଙ୍କ ଦ୍ୱାରା ମୋହିତ ମଣିଷ ଜାଣିପାରେ ନାହିଁ ! 'ମାୟାପହୃତଜ୍ଞାନା', ମାୟା ଅପହୃତ କରି ନେଇଥାଏ ଜ୍ଞାନ, 'ସତ ଆଉ ମିଛର ଏକ ବିନିମୟ/ବାହାରର ଭିତର ସହିତ', 'ବାହାର' ଦେହ ମିଛ ଏବଂ 'ଭିତର' ଦେହୀ, ଅକ୍ଷରଂ ବ୍ରହ୍ମ ପରମମ୍, ସତ !

ହରିହର ମିଶ୍ରଙ୍କ ଶାବ୍ଦିକ ଚେତନା ଯୋଗ-ଶାସ୍ତ୍ରୀୟ ପରମ ଆଧ୍ୟାତ୍ମିକ ତାତ୍ତ୍ୱିକତାରେ ଆଚ୍ଛାଦିତ । ଶବ୍ଦର ଧ୍ୱନି ଚେତନା ପାରମ୍ପରିକ କାବ୍ୟିକ ଶାନ୍ତ ରସରେ ସୁବାସିତ । ଶବ୍ଦମାନଙ୍କ ଭବ ଚେତନାଠାରୁ ଭୋଗ ଚେତନା ପ୍ରସାଦ ଗୁଣମୟୀ ବିଦ୍ୟା ଚେତନା ବା ଆଧ୍ୟାତ୍ମିକ ହୋଇଅଛି । 'ଥିଏଟର୍' ଅନ୍ୟ ଏକ ତାତ୍ତ୍ୱିକ ଯାଦୁକାରୀ ଶବ୍ଦ ଝରଣା ତା' ଉଚ୍ଚାରଣରେ ଜାଗ୍ରତ ହୋଇ ଉଠେ ସୁପ୍ତ ଚେତନା ! 'କାହାର ବ୍ୟକ୍ତିଗତ ଅସନ୍ତୋଷ ବୁଝେନା ସେ / ସବୁ ତ ପିତୁଳା ଆମେ ତା' ହାତରେ', ସଂସାର ରଙ୍ଗମଞ୍ଚ, ବିଧି ରଚିତ ନାଟକର ଜୀବମାନେ ଚରିତ୍ର ! 'କାହାର ବ୍ୟକ୍ତିଗତ ଅସନ୍ତୋଷ ବୁଝେନା ସେ' ପଂକ୍ତିଟିର ଭାବ କ୍ଲାସିକ ଭାଷାରେ, ନା ଦତ୍ତେକସ୍ୟଚିତ୍ ପାପଂ ନ ଚ ପୁଣ୍ୟଂ ବିଭୁଃ ।'

ପାପ କି ପୁଣ୍ୟ କାହାକୁ କିଛି ସିଏ ଦିଅନ୍ତି ନାହିଁ, ନ କର୍ତ୍ତୃତ୍ୟଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ । ବିଶ୍ୱରୂପ ଦର୍ଶନ ଯୋଗରେ ଗୋଟିଏ ବାକ୍ୟରେ ବ୍ୟକ୍ତ କରିଦିଆଯାଇଛି, ସମଗ୍ର ଜଗତ, ସଚରାଚରକୁ ମୋ ଦେହ ଭିତରେ ଦେଖ ଗୋଟିଏ ସ୍ଥାନରେ - ଇହୈକସ୍ଥଂ ଜଗତକୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରଂ ମମ ଦେହେ, 'ସବୁ ତ ପିତୁଳା ଆମେ ତା' ହାତରେ' ! ନିମିତ୍ତ ମାତ୍ରଂ ଭବ ସାବ୍ୟସାଚୀନ୍ ! ମୟା ହତାଂ, ମୟୈବୈତେ ନିହତାଃ ପୂର୍ବମେବ, ଏମାନଙ୍କୁ ପୂର୍ବରୁ ମୁଁ ମାରି ସାରିଛି ! ଏମାନେ ମୋ ହାତର କାଠ ପିତୁଳି !

ଆଗକୁ ରହିଛି ନିରସ୍ତ୍ର ସମର୍ପଣ କଥା, ଅଥଚ ମଣିଷ ନାଚାର, ସହସ୍ର ଢ଼େଣା ଶାଣିତ କଲେ ବି ସେ ହେଉଛି ନିହତ । ଯେଣୁ ଆସି ନାହିଁ ତା' ସମର୍ପଣରେ ସ୍ୱଚ୍ଛତା ! 'କିଏ ସୁନା ମିରିଗ/ ତ କିଏ ମିଥ୍ୟା ମୋହିନୀ' ମନକୁ କରୁଥାଏ ମଂଚରୁ ବାଟବଣା ! ମଣିଷ ବୁଡ଼ି ରହେ ଭାବାବେଗରେ ଆପଣା ରସରେ ମୃତ୍ୟୁ ଆଉ ଗୋଟିଏ ଜନ୍ମ ଦୃଶ୍ୟ ଦର୍ଶନ ପୂର୍ବରୁ !

କୁହୁଡ଼ିରେ ଦିଶୁ ନାହିଁ ମାନବର ଈପ୍ସିତ ଦେବାଳୟ, ସୂର୍ଯ୍ୟାସ୍ତ ବେଳକୁ ଶେଷଥର ପାଇଁ ଦିଶେ ? 'କୁହୁଡ଼ି ଓ ସନ୍ଧ୍ୟାଦୀପ' କରେ ସୂଚିତ: Shape without form, shade without colour,/paralysed force, gesture with-

out motion, (The Hollow men, by T.S. Eliot) ଈପ୍ସିତ ଦେବାଳୟ ହେଲା ସେଲ୍ଫ ରିଅଲାଇଜେସନ୍, ସୂର୍ଯ୍ୟାସ୍ତ ଅର୍ଥାତ୍ ଜୀବନ ସୂର୍ଯ୍ୟର କାର୍ଯ୍ୟକାଳ ସମାପ୍ତ ବେଳେ ହେଲା ଦୃଶ୍ୟ । ପ୍ରଜ୍ୱଳିତ ହେଲା ଜ୍ଞାନଦୀପ । ଦୃଶ୍ୟ ହେଲା ପଦ୍ମବେଶ ? ପ୍ରାର୍ଥନାରେ ଉର୍ଦ୍ଧ୍ୱକୁ ପଦ୍ମ ଟେକିଥିବା ବିଷମ ସମସ୍ୟାର ! ଆଧୁନିକ ମଣିଷର ସମସ୍ୟା ହିଁ ତ ସାକ୍ଷୀ ପୁରୁଷ ! ତା' ନ ହେଲେ କାଂଦକାଂଦ ମୁଦ୍ରାରେ 'ଅତଳକୁ ଟାଣୁଥିବା ସତ୍ତ୍ୱେ/ସେ ଫସି ଯାଇନି ପଙ୍କରେ' (ଗଜ ଉଦ୍ଧାରଣ) । ମନୋହର ଦାସ ପାପୀ ପ୍ରେମିକ, ସିଏ ପ୍ରେମରେ ପଡ଼ିଛି ପଦ୍ମଶ୍ରୀମୁଖର ? କବି ବ୍ୟାଖ୍ୟା କରିଛନ୍ତି, 'ପ୍ରେମରେ ପଡ଼ିନଥାନ୍ତି କେହି/ଉଠିଥାନ୍ତି/ଯେମିତି ଉଠିବାକୁ ହୁଏ ପଙ୍କରୁ/ ପଦ୍ମକୁ' (ପଦ୍ମବେଶ) ! 'ପ୍ରେମ' ବସ୍ତୁଟି ସବୁବେଳେ ସଂଦିଗ୍ଧ । ସମକାଳ ଚିତ୍ର : ଅହଂକାରୀ ସ୍ୱାମୀ ପାଖରେ ଶୋଇ ଶୋଇ କେଉଁ ପ୍ରେମିକର ନାଁ, ଧରି ପାପ ଅର୍ଜିଥିବା ନାରୀ/ସେ ମୁହଁ/ଯାହାକୁ ବାସିଫୁଲ କହି ଆଡ଼େଇ ଦେବେ,... ଯେମିତି ଏହା ବିଲ୍ୱମଙ୍ଗଳର 'ଚିନ୍ତାମଣି' ପରି ସଂଦିଗ୍ଧ ଅବସ୍ଥା ! ଯେଉଁଠି ମିଛ ସତ ଏକାକାର, ହିରଣ୍ମୟ ପାତ୍ର / ଓ ଆଚ୍ଛାଦିତ ମୁହଁ ବି (ସାକ୍ଷୀ ପୁରୁଷ) !

ସଂସାରଟା କ'ଣ ? 'ସୁଆଙ୍ଗ ଓ ପ୍ରହସନ' ! 'ସେ କେଉଁ ଅଭିନୟ/ ପରସ୍ପରକୁ ହଜେଇ ଏପରି ମାତାଲ ହେବେ' ପୁଣି ମଣିଷର ଭିନ୍ନ ଏକ ପ୍ରବଞ୍ଚକ ରୂପ, 'ଶୂନ୍ୟକୁ ପୂର୍ଣ୍ଣ କରିବାର ଯାଦୁଖେଳ / ଜଣା ଆମକୁ' (ପୁନରୁଦ୍ଧାର) ଇତିହାସ ପାହାଚ ତଳେ ବସିଥିବା ଗୋଟିଏ ତାରାଭର୍ତ୍ତି ଚାନ୍ଦୁଆ ଉଦ୍‌ଗାରୁଛି ସ୍ଫୁଲିଙ୍ଗ ! ସିଏ କେତେବେଳେ ମେଘନାଦ ପାଚେରି କଡ଼ରେ ପାପୁଲି ପାତିଛି ତ କେତେବେଳେ ନାହା ଲଗେଇ ରାତି ସାରା ଠିଆ ହୋଇଛି । କାଳେ ଧର୍ମପଦଟି ତା'ର ପଦ୍ମତୋଳାର ମୁଣ୍ଡିମାରି ଲମ୍ଫ ଦେଇ ଦେବ ଦଧିନଉତିରୁ !

ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ଟ୍ରାଡ଼ିସନ୍ କାବ୍ୟିକ ଚେତନା ଓ ଭାବନାକୁ କରିଛି ସୁତୀକ୍ଷ୍ଣ । କାବ୍ୟିକ ସୃଷ୍ଟି ଆଧ୍ୟାତ୍ମିକ ପ୍ରାଚୀନ ସ୍ମୃତି ପ୍ରତି ସଚେତନ । କବିତା ସର୍ଜ୍ଜନାର ସ୍ରୋତ ପ୍ରବାହିତ ହେବାବେଳେ ଦେବ ପୁରୁଷଙ୍କ ମୁହଁ ଭଳି ଦିଶୁଛି କାବ୍ୟ ପୁରୁଷର ମୁହଁ ! କାବ୍ୟ ପୁରୁଷର ସ୍ୱସ୍ଥାପଣ ସୃଷ୍ଟିରେ ଯାଇଛି ବଦଳି । କବିଙ୍କ ଇମୋସନ୍ ସରଳ ଓ ପ୍ରାକୃତିକ ଥିବାବେଳେ କବିତାର ଇମୋସନ୍ ଜଟିଳ ଓ ହୋଇଛି ରିଫାଇନ୍ । 'ଟ୍ରାଡ଼ିସନ୍ ଏଣ୍ଡ ଇଣ୍ଡିଭିଜୁଆଲ୍ ଟାଲେଣ୍ଟ' ପ୍ରବନ୍ଧ ଦ୍ୱିତୀୟ ଭାଗରେ ଗୋଟିଏ ପ୍ରଶ୍ନ ରଖିଛନ୍ତି ଇଲିୟଟ୍, 'ହ୍ୱାଟ୍ ଓ୍ୱାନ୍ ଲାଇକ୍ସ' ? ଭାରତୀୟ ଆଦ୍ୟରୁ ଆଧ୍ୟାତ୍ମିକତାକୁ ଆଦର କରିଆସିଛନ୍ତି । ସେହି ଆଧ୍ୟାତ୍ମିକତା ହିଁ 'ନେତ୍ରୋତ୍ସବ' ର ମୁଖ୍ୟ ଥିମ୍ । ଯଦିଓ କବିତାର ବିଷୟ କବିତା, ଯେଉଁ କବିତାର ଅନ୍ତଃସ୍ୱର ଆଧ୍ୟାତ୍ମିକ । ଯେଣୁ ସଂସ୍କୃତିର ଶୈଶବରୁ କବି Divine inspired

frenzy! ପ୍ଲାଟୋ 'Ion' ରେ ଉପସ୍ଥାପନ କରିନାହାନ୍ତି କିଛି କବିଙ୍କ ମିଥ୍ୟା, ବରଂ କହିଛନ୍ତି, ହି ଇଜ୍ ସ୍ପିକିଂ ଡିଭାଇନ୍ ଟ୍ରୁଥ୍! ପ୍ରଫେସର ଡ୍ୟାଚେ ତାଙ୍କ ପ୍ଲାଟୋନିକ ଡ଼ିଲ୍ମାରେ ସ୍ପଷ୍ଟ କରିଛନ୍ତି, ପ୍ଲାଟୋ ଥିଓରୀ ଅଫ୍ ଇନ୍ସ୍ପିରେସନ୍‌କୁ ପ୍ରତ୍ୟାଖ୍ୟାନ କରିଛନ୍ତି କିନ୍ତୁ ସ୍ୱୀକାର କରିଛନ୍ତି ... what the poet speaks of is the true and beautiful ସକ୍ରେଟିସ 'Ion' କୁ କହିଛନ୍ତି, God takes away the mind of poets, and uses them as his ministers...! ଅମୂଲ୍ୟ ଶବ୍ଦର ଫୁଲଗୁଚ୍ଛ କବି ହରିହର ମିଶ୍ରଙ୍କ ଇନ୍ସପେୟାର ଅବଚେତନ ମନରୁ ହୋଇଛି ସତ୍ୟ ରୂପେ ପ୍ରତିପାଦିତ । ସକ୍ରେଟିସଙ୍କ ଦୃଷ୍ଟିରେ 'God himself is the speaker' ଏହାର! ତାହା ନ ହେଲେ ବେଳେବେଳେ ଜଣେ ବାଜେ କବି ଶ୍ରେଷ୍ଠ କବିତା କେମିତି ଲେଖି ଦେଇଥାନ୍ତି ?

ହରିହର ମିଶ୍ର ଏପରି ଗୋଟିଏ ଭାଷାରେ ଲେଖିଛନ୍ତି କବିତା, ସେ ଭାଷା ସାଧାରଣ factual information ଅବଗତ କରାଇବା ଭାଷାଠାରୁ ଅଲଗା । ଯଦିଓ... Poetry is merely an ingenious game played with words, ଶବ୍ଦ ବସାଣରେ ବିଚକ୍ଷଣତା ବା ଅବରୋଧ କରାଏ ତାଙ୍କ କବିତା ଯେମିତି 'ଅବଢ଼ା'ର ବାସ୍ନା! ତାଙ୍କ କବିତାରେ ଗେମ୍ ଅଫ୍ ନଲେଜ୍ ଆଧ୍ୟାତ୍ମିକତାକୁ ଚେତନାର ସ୍ତରକୁ ଆକର୍ଷିତ କରି ଆଣିଛି! ଏହାକୁ କବି ଓ ସମୀକ୍ଷକ ଡ଼ବ୍ଲୁ. ଏଚ.ଅଡ୍ନେନ୍ ନାମ ଦେଇଛନ୍ତି, ଇମୋସନ୍ସ ଏବଂ ସେମାନଙ୍କ ଗୋପନ ସମ୍ପର୍କ ।

John crowe Ransom କବିତାକୁ ତିନୋଟି ଦୃଷ୍ଟିରେ ବିଭକ୍ତ କରିଛନ୍ତି । ପ୍ରଥମ ପ୍ରକାର ଫିଜିକାଲ ପ୍ରୋଏଟ୍ରୀ, ଯାହା Pure poetry ଏହାର ଭିତ୍ତିଭୂମି ସେକେଣ୍ଡ୍ ଲଭ୍! ଦ୍ୱିତୀୟ ପ୍ଲାଟୋନିକ୍ ପୋଏଟ୍ରୀ, ଆଇଡ଼ିଆର ବିସ୍ତୃତି ଓ ଆଳଙ୍କରଣର ଦୀପ୍ତିରେ ଏହାର ଶୈଳୀ ଦିଏ ତୃପ୍ତି । ତୃତୀୟ ପ୍ରକାର ହେଲା ମେଟାଫିଜିକାଲ୍ ପୋଏଟ୍ରୀ! ଗୋଟିଏ ସ୍ୱତନ୍ତ୍ର ବାଗରେ ବସ୍ତୁ ପ୍ରତି ଦୃଷ୍ଟିକୁ ଏଥିରେ କରାଯାଏ ଆକର୍ଷିତ । ହରିହର ମିଶ୍ରଙ୍କ ସେହି ସ୍ୱତନ୍ତ୍ର ବାଗ 'ନେତ୍ରୋତ୍ସବ'ର Miraculism ର ଅନୁଭୂତି । 'ସତ୍ୟର ଆଖିରେ ସ୍ୱପ୍ନ' ସେ ଆଖି ସହିତ ମିଳିତ ହୁଏ ସମସ୍ତଙ୍କ ଆଖି! ଦିଏ ଗୋଟିଏ ପରିଚୟ, ଗୋଟିଏ ଧ୍ୟାନ ପ୍ରତି କରେ ନିମନ୍ତ୍ରଣ ।

ର୍ୟାମ୍‌ସମ୍ କହନ୍ତି 'ମିରାକୁଲିଜିମ୍' ହୁଇଚିଜ୍ ଦି ସାଇନ୍ ଅଫ୍ ପିଓର୍ ପୋଏଟ୍ରୀ, ଏହା ମଧ୍ୟ କାର୍ଯ୍ୟ ନିର୍ବାହ କରେ ମିଥ୍ ଓ ରିଲିଜଅନ୍ ମାନଙ୍କ ମଧ୍ୟରେ, ବା ମିଥ୍ ଓ ରିଲିଜିଅନ୍‌କୁ କରେ ପରିଚାଳିତ । ହୃଦୟର କାର୍ଯ୍ୟକଳାପରେ ପ୍ରତିଫଳିତ

ଥାଏ ମିଥୋଲୋଜୀ ଓ ରିଲିଜିଅନ୍, ଯେଉଁଠି ଏମାନଙ୍କ ଆଗ୍ରହ ଓ ମୂଲ୍ୟ ରହିଛି, ସେହିଠାରେ ରହିଛି କବିତା । କବିତା ତାହାର ଶାବ୍ଦିକତାରେ ପ୍ରତିଷ୍ଠିତ, ଧାର୍ମିକତା କବିତାର କାନ୍ଧରେ ବସିଛି । ଧାର୍ମିକତାକୁ ଶାବ୍ଦିକତାର ପୋଷାକରେ ଆଚ୍ଛାଦିତ କରି କବିତାକୁ ସାଂସ୍କୃତିକ କରାଯାଇଛି । କିନ୍ତୁ କବିତାର ସଂସ୍କୃତି ହେଲା The term poem is ... any work of imaginative literature! ଯେଉଁଠି ଶବ୍ଦର ଧ୍ୱନି ନିଶ୍ଚିତ ଗୁରୁତ୍ୱପୂର୍ଣ୍ଣ ! ପୁନଶ୍ଚ କବିତା ଏକ ସିରିଜ୍ ଅଫ୍ ସାଉଣ୍ଡସ୍ ନୁହେଁ, ଏହା ହୋଇଥିଲେ ଏହାକୁ ଅନୁବାଦ କରି ହୁଅନ୍ତା ନାହିଁ !

କବିତା ପାଇଁ କବିତା ସୃଷ୍ଟି କରିଛନ୍ତି ଶ୍ରୀଯୁକ୍ତ ମିଶ୍ର ? ନା' କବିତା ତାଙ୍କର ଗୋଟିଏ ଆପୋଷ ସମାଧାନ ରଚିଛି ପୁରୀ ସହିତ ? ତାଙ୍କ ସୃଷ୍ଟି ସଚିତ୍ର ପ୍ରଜାପତି, ଗୋଟିଏ ପ୍ରତିକୃତି ଅବିନାଶୀ ରଥଯାତ ? ଦେଖନ୍ତୁ ତାଙ୍କ ବିଜୁଳି କନ୍ୟାର ରୂପ, 'ସହୋଦରା ସେ ଶୋଣିତ ଦେହୀ/କାଂଚନ ବର୍ଣ୍ଣା/ସେ ନେଇଛି ଟିକେ କଳା ଗୋଟିଏ ଭାଇଠୁ/ତ ଧଳା ଟିକିଏ ଆର ଭାଇଠୁ ! ଆଗକୁ ରହିଛି ଦୁଇଟି କବିତା 'କପିଳେଶ୍ୱରପୁର' ଏବଂ 'ଯାତ୍ରାଦାଣ୍ଡ', ଏହି କବିତା ଦୁଇରେ ବଦଳି ନାହିଁ କବିତାର ସଫେଦ୍ ଇମୋସନ୍, କିନ୍ତୁ ବଦଳିଛି ସାମାଜିକ ଦୃଷ୍ଟିଭଙ୍ଗୀ । ଗୋଟିଏ ସମାଲୋଚିତ ଖଟା ଜଗତ ଶବ୍ଦ ଭୂମିକୁ ଓହ୍ଲାଇଛି !'

୧.ମଦୁଆ ସରପଞ୍ଚ
ଅତିବଡ଼ୀଙ୍କୁ ଚାହିଁ ଆରମ୍ଭ କରେ
ଦୋ ଅକ୍ଷରୀ
୨. ଖଣ୍ଡେ ନୋଟ ଡ୍ରାଇଭରଠୁ ନେଇ
ପଳାଏ / ଲାଙ୍ଗୁଡ଼ ଜାକି
ମୁଂଦେ ପିଇ ଆସିଲା ପରେ
୩. କହିଲୁ
କୋଉଠି ଦୂବ ଚକଡ଼ା
କହି ପାରିବିନି
ତମେ କହିଲ କୋଉଠି ଯୋଡ଼ି ହୁଙ୍କା ?

ଆଙ୍ଗିକ ଭିତରେ ବନ୍ଧା କବିତା ଇଏ ନୁହେଁ, ଇଏ ସମକାଳର କ୍ରୂର ସମୀକ୍ଷା ! ଏହି ଚିତ୍ର ପ୍ରଦାନ ପୂର୍ବରୁ ଥରେ ର୍‍ୟାମ୍ବୋ କହିଥିଲେ, I have determined to give you an hour of new literature. I begin at once

with a psalm of current interest. ଇଜାମବାର୍ଡ଼କୁ ଖଣ୍ଡିଏ ଚିଠିରେ ଲେଖିଥିଲେ ର୍ୟାମ୍ବୋ, I owe it to society! ସମାଜକୁ ପରିଶୋଧ କରୁଛି କବି ତା' ଟେରା ଆଖି, ପାଚିଲା ଦାଢ଼ି, ଅଲରା ବିଶୃଙ୍ଖଳିତ କେଶରାଜି, ଗାଲରେ କଟା ଘା' ଦାଗ ଓ ପାଚିଲା ବ୍ରଣ! ଅଥଚ ଦେହରେ ବ୍ଲୁ ଟି ସାର୍ଟ ଓ ଅଣ୍ଟା ତଳେ ବ୍ରାଣ୍ଡେଡ଼୍ ଜିନ୍ସ!

'Drunken boat' କବିତାରେ ର୍ୟାମ୍ବୋଙ୍କ ଥିଲା dark sayings, ତହିଁରେ ଶେଷ ଆଡ଼କୁ ସିଏ ଉଚ୍ଚାରଣ କରିଛନ୍ତି, I am bathed at last in the poem of the sea, କବିତାର ସମୁଦ୍ରରେ କବି ହରିହର ମିଶ୍ର ସ୍ନାନ କଲାବେଳେ ସିଏ କୁଳିକରି ଦେଇଛନ୍ତି ପାଟିଏ ଲବଣାକ୍ତ ଜଳ ଯେମିତି! ବିରୋଧୀ ଉପସ୍ଥିତ ସତ୍ତ୍ୱେ କବିତା ତା' ଗତିପଥରେ ରହିଛି ସଜୀବ। କବିତା ତା କୋମଳ ବିଶ୍ୱାସକୁ କରିନାହିଁ ଅସାମାଜିକ। ସଂସାରର ଶାଣିତ ଉଲ୍ଲାସ ଯଥାଯଥ ଭାବେ ପଂକ୍ତି ଆକୃତିର ନେଇଛି ରୂପ –

ନେତ ଓଷାର କୁଆଁରୀ ଝିଅ
ଘୋଷୁଥା'ନ୍ତି ବଳିଗୀତ
ଦେଖିଛନ୍ତି କି ନା ମାହାରୀ ନାଚ
ଶୁଣିଛନ୍ତି କି ନାହିଁ ଭିତର ଗାଏଣୀର
ଗୀତ ଗୋବିନ୍ଦ... (ଯାତ୍ରାଦାଣ୍ଡ)

ଏହା କୀଟସ୍‌ଙ୍କ 'ଇଗୋ ଡ଼ୋମିନସ୍ ଟୁସ୍'ର Luxuriant song ନୁହେଁ, ଏହା ଗୋଟିଏ ଯାତ୍ରା ପଥର 'ଷ୍ଟେଟମେଣ୍ଟ ଅଫ୍ ଫେଥ୍'! ଗୋଟିଏ 'ମିଷ୍ଟେରୀ ଅଫ୍ ସରୋ'ର ଏହା ତପ୍ତ ନିଶ୍ୱାସ! ମୋଷ୍ଟ୍ ପ୍ରୋଫାଉଣ୍ଡ୍ ଏକ୍ସପିରିଏନ୍ସର ଯେମିତି କବିତା ଆଙ୍ଗିକରେ କରାଯାଇଛି ଏକ୍ସପିରିମେଣ୍ଟ୍! କବିତାର ଲକ୍ଷ୍ୟ ଗୋଟିଏ ଅନୁଧାବନରେ ଉପସ୍ଥିତ, ଏହା ତା'ର ବିରଳ ପରିଚୟ! ଲୁଚିଙ୍କ ଦୃଷ୍ଟିରେ ଏହା ହିଁ ପ୍ରକୃତ ଫାନ୍ଦ, ଯାହା ଭିତରେ ପୃଥିବୀ ଓ ସ୍ୱର୍ଗକୁ ବାନ୍ଧି ରଖିଛି ଆଙ୍ଗିକ। ମାୟା ଓ ମନ ସମାନ୍ତରାଳ ହେବାବେଳେ କବିତାର ହାର୍ମୋନୀ ଅସ୍ପୃହା ଓ ଅବତରଣ ଦ୍ୱାରା ହୋଇଛି ଆଧ୍ୟାତ୍ମିକ।

ଫୁଲରୁ
କ'ଣ ନେଇ ଉଡ଼ିଗଲା ବଗୁଲୀ
ଆଲୁଅ ନା ଅନ୍ଧାର?
(ଯାତ୍ରାଦାଣ୍ଡ)

ବଗୁଲୀ ସଫେଦ୍ ପକ୍ଷୀ, ସଫେଦ ନିଷ୍ପାପର ପ୍ରତୀକ । ପକ୍ଷୀର ଉଡ଼ିବା ତା'ର ସ୍ୱଧର୍ମ । ଆତ୍ମାପକ୍ଷୀ କ'ଣ ନେଇ ଉଡ଼ିବ ? ନା ଆଲୋକ ଓ ନା ଅନ୍ଧାର ! ସମୁଦ୍ରକୁ ଯାହା ଫିଙ୍ଗା ଯାଏ ସମୁଦ୍ର ତାକୁ ଆଣି କୂଳରେ ଫିଙ୍ଗିଦିଏ । ସହରର ଆବର୍ଜନା ପାଇଁ ସୁବୃହଦ୍ ଡ଼ମ୍ପିଂୟାର୍ଡ଼ ସମୁଦ୍ର ! ନିରୀକ୍ଷଣ କରି ହୁଏ କାବ୍ୟିକତାର ଚାତୁର୍ଯ୍ୟ ଭିତରୁ ଆମ ଅସହାୟ ସଭ୍ୟତାର ଚିତ୍ର:

ସହର ସବୁ ବିଷ ସମୁଦ୍ରକୁ
ନାଳରେ ବୋହିଗଲେ
ଢ଼େଉ ସବୁ ଥୁ' ଥୁ' କରେ
ଆମ ବର୍ଜିତ ପଦାର୍ଥର
ଦୂଷିତ ସଂକ୍ରମଣର (ତୀର୍ଥାଶ୍ରୟ)

'ଏବେ ତୁମେ ଏକୁଟିଆ ଘରେ' ଗାଳ୍ପିକ ବିଜୟ କୃଷ୍ଣ ମହାନ୍ତିଙ୍କ ଦେହାବସାନ ସ୍ମୃତି, ଝର୍କା ଖୋଲି ପବନକୁ କହୁଛନ୍ତି ମଣିଷର ନିର୍ମମତ୍ୱ ଓ ଦୈନନ୍ଦିନ ଜୀବନରେ କ୍ରୂରତାର କଥା ! ଘା'ଟିକୁ ଚମତ୍କାର ଭାବରେ ଉଖାରିଛି କବିତା:

ମୋ 'ଶେଷ ଝୁଲଣ' ଗଳ୍ପରେ
ଗୋଟିପୁଅଟିର କରୁଣ ମୃତ୍ୟୁ କଥା
ସମଲିଙ୍ଗୀ ସମ୍ପର୍କ ଯୋଡୁଥିବା
ଗୋଟେ ଘାତକ ହାତରେ... !

ଜୀବନ ଯାହା ଓ ଯେମିତି, ତା' ନିଃଶବ୍ଦତା ଆଙ୍କି ହୋଇଯାଇଛି । 'ଭିନ୍ନ ଏକ କଣା ମାମୁଁ' ମନସ୍ତତ୍ତ୍ୱଟିକୁ ସ୍ପଷ୍ଟ କରିଛି, ଅପରାଧୀ କିଏ ନୁହନ୍ତି/ନିଜ ନିଜ ମନରେ/ସେମାନେ ବନ୍ଦୀ ହୋଇ ରହନ୍ତି ! 'ଅନୁଭବର ଏକ ସୁନାମି' ଏହା ମଧ୍ୟ ଏକ ସ୍ମୃତିର ଭୟାନକ ସାମୁଦ୍ରିକ ଝଡ଼, ନାରୀ ନିର୍ଯ୍ୟାତନାର ନୂଆ ଏକ ରାମାୟଣ, ନିଆଁରେ ପୋଡ଼ି ନଥିବା ନିର୍ବାସିତ ସତୀମାନଙ୍କୁ ଆଉ ପଚାରନା ତା' ଛାତିର ଦୁକ୍‌ଦୁକିଠାର କ'ଣ ବେଶି ଭୟଙ୍କର ସୁନାମି ? ଏଠାରେ ମାନବ ଜୀବନକୁ ପ୍ରଦାନ କରାଯାଇଛି ଉଚ୍ଚାସନ । ମାନବିକତାର କୋମଳ ପାଦ ଚାପି ଚାପି କାବ୍ୟ ପୁରୁଷ ଫେରିଛି 'ଶରଣାର୍ଥୀ' ହୋଇ କେତେବେଳେ ତ କେତେ ବେଳେ ସିଏ 'ବିଧର୍ମୀ' ! ପାପ ପୁଣ୍ୟ ଉପରକୁ ଉଠି ଯାଇ ଶ୍ରାବଣ ମେଘର ଆକାଶରୁ ଜନ୍ମ ମୃତ୍ୟୁ ଯନ୍ତ୍ରଣା ମଝିରେ ନୀଳ ଜହ୍ନକୁ ଫୁଲଟିଏ ପରି ତୋଳୁଛି ! ବିଡ଼ାବିଡ଼ା ଅନୁଭୂତି ଆଗାମୀ ପୃଥିବୀ ଓ ଆଜିର ପୃଥିବୀ ମଧ୍ୟରେ ବାନ୍ଧିଛି ସେତୁ ।

ହରିହର ମିଶ୍ରଙ୍କ କବିତା ଯେମିତି ଅନାହତ ଚେତନାର ମଧୁର ମୂର୍ଚ୍ଛନା, ଇନ୍ଦ୍ରିୟ ସଂଚାରୀ ଦିଗନ୍ତରେ ଭାସିବୁଲେ ଧଳାମେଘ ଖଣ୍ଡେ ଅବା !! ଯେଉଁ ଚେତନାର ନାଁ, 'ପୁରୀ' (ପୂର୍ଣ୍ଣତାର ପୂର୍ଣ୍ଣ), ତାହା କବିତାରେ ପ୍ରତିଫଳିତ ହେବାବେଳେ ତା' ଆଭ୍ୟନ୍ତର ଓ ଉତ୍ସ ଫିଲୋସଫି ଏବଂ ତା' ଚର୍ମ ଶବ୍ଦର ଚିକ୍‌କଣତ୍ୱରେ ନିହିତ ରହିଛି ସୌନ୍ଦର୍ଯ୍ୟ । ପୋପ୍ କହନ୍ତି କବିତାର ପ୍ରକୃତ ସ୍ୱାଦ ଜଣେ ପ୍ରାପ୍ତ ହୁଏ ତାହାର ଜୀବନ, ଶକ୍ତି ଓ ସୌନ୍ଦର୍ଯ୍ୟରୁ ! କବିତାରେ ଶବ୍ଦ ଖର୍ଚ୍ଚ ସୀମିତ କିନ୍ତୁ କଳା ପ୍ରଚୁର ।

ଆଲେକ୍‌ଜାଣ୍ଡର ପୋପ୍ ନିର୍ଦ୍ଦେଶ ଦେଇଛନ୍ତି, Reflect new glories (ଆନ୍ ଏସେ ଅନ୍ କ୍ରିଟିସିଜିମ୍, ପଂକ୍ତି ୪୭୩) ! ମାଥ୍ୟୁ ଆର୍ଣ୍ଣୋଲଡ୍ ପରାମର୍ଶ ଦେଲେ କବିତାକୁ ଜୀବନର ବ୍ୟାଖ୍ୟା ରୂପେ ବଦଳାଇବାକୁ ହେବ ଆମକୁ ! ଇଲିୟଟ କହିଲେ ନୂଆ ଇମୋସନ୍ ଖୋଜ ନାହିଁ, ସେହି ପୁରୁଣାକୁ ନେଇ ଅଭିବ୍ୟକ୍ତି କର ଫିଲିଂସ୍, ତାହା ପ୍ରକୃତ ଇମୋସନ୍ସ ନୁହେଁ ଆଦୌ !

ଏହି ତିନୋଟି ଯାକ ତତ୍ତ୍ୱ ଏକତ୍ର ହୋଇ କିପରି ହୋଇଛନ୍ତି Poetic Passion ଲକ୍ଷ୍ୟ କରନ୍ତୁ ଏଇ ଛତ୍ର:

'ବଧୂମାନଙ୍କ ପାପ କ୍ଷାଳନ ପାଇଁ
ବାର୍ଥ ରୁମ୍‌ରେ ତୀର୍ଥ ସ୍ନାନ
ନଚେତ୍ କିଚିନ୍‌ରେ କିରୋସିନ୍ ସ୍ନାନ
ଆମର ସମ୍ପର୍କ ଏପରି ଶୁଦ୍ଧ ଯେ
ପରିଣୀତା ନାରୀମାନେ
ବିସର୍ଜନ ଦେଇଥା'ନ୍ତି ନିଜ ନିଜ
ପ୍ରୀତିର ପ୍ରତିମା ।

ଜୀବନର କଠୋର ସମାଲୋଚନା ଏହାଠାରୁ ଆଉ ଅଛି କିଛି ଏବଂ ଅଛି କିଛି ଆମ ବଂଚିବା ଶୈଳୀ ପ୍ରତି ବିଦ୍ରୂପ ? ସେହିପରି ଲକ୍ଷ୍ୟ କରନ୍ତୁ ନିମ୍ନ ଛତ୍ର:

ଆକାଶର ପକ୍ଷୀଙ୍କୁ
ଧାଡ଼ି ଧାଡ଼ି ହ୍ରଦରେ ବୁଲୁଥିବା ଦେଖି
ଲୁଚି ଲୁଚି ଗୁଳି ମାରିବା
କମ୍ ସଉକ ଆମ ମାଂସ ଲୋଭୀ
ଶିକାରୀମାନଙ୍କ !

ଏଠାରେ ବର୍ଣ୍ଣିତ 'ପକ୍ଷୀ' ଚିହ୍ନା ମାଟିର ପକ୍ଷୀ ! କବିତାରେ ବ୍ୟବହୃତ 'ପକ୍ଷୀ' ଶବ୍ଦ ନୁହେଁ ଅଭିଧାନର ଅର୍ଥବନ୍ଦୀ ପକ୍ଷୀ ! ବ୍ୟବହୃତ 'ହ୍ରଦ' ନୁହେଁ ହ୍ରଦ, ଶବ୍ଦ ପ୍ରତୀକ ଗୋଟିଏ, ଏହା ନିୟୁ ଗ୍ଲୋରୀକୁ ରିଫ୍ଲେକ୍ଟ କଲାବେଳେ ପୁରୁଣା ଇମୋସନ୍ ଫିଲିଂ ପ୍ରତିଷ୍ଠା କରିଛି ସୌନ୍ଦର୍ଯ୍ୟ । ବିଷୟ ବସ୍ତୁର ବୈଚିତ୍ର୍ୟ ନୁହେଁ କବିତାର ପ୍ଲଟ; ଜୀବନର ବିଭିନ୍ନ ବିଭାବ, ଅନୁଭୂତି ଓ ଘଟଣାବଳୀକୁ ନୂତନ ଦୃଷ୍ଟିକୋଣରୁ ହୃଦୟର ନିକଟରୁ ଦେଖିବାର ରୀତି କବିତାକୁ ଆଙ୍ଗିକ ପ୍ରଦାନ କରିଛି ।



## କବି ହରିହର ମିଶ୍ରଙ୍କ 'ଅନେକ ଆଶ୍ଚର୍ଯ୍ୟ'ର ଏକ୍ସପ୍ରେସ୍ ଟେକ୍‌ନିକ୍

କବିତାର ବିଷୟବସ୍ତୁ ଯାହା ହେଉନା କାହିଁକି, କାବ୍ୟିକ ଅନିବାର୍ଯ୍ୟତା ବଳରେ ତାହା ପାଠକ ହୃଦୟରେ ସ୍ୱତଃ ହୁଏ ଉତ୍ସାରିତ । ଏମିତି ଖଣ୍ଡିଏ କାବ୍ୟଗ୍ରନ୍ଥ ହରିହର ମିଶ୍ରଙ୍କ 'ଅନେକ ଆଶ୍ଚର୍ଯ୍ୟ' (୨୦୦୪), ନବ ସହସ୍ରାବ୍ଦୀର ଶିଶୁ । ତାଙ୍କ ବ୍ୟକ୍ତିକ ଆବେଗ କାବ୍ୟିକ ଆବେଗରେ ପରିଣତ ହୋଇ ଯେଉଁ ରୂପ ସୃଷ୍ଟି କରିଛି, ତାହା ପାଠକ ପଠନ କଲା ମାତ୍ରେ ହୋଇଯାଏ ଅଭିଭୂତ । ତେଣୁ ବୋଧେ ଏହାର ଶୀର୍ଷକ 'ଅନେକ ଆଶ୍ଚର୍ଯ୍ୟ' ବିମ୍ବରେ ପ୍ରତୀକିତ ।

ଯୁଗଚେତନା ଇତିହାସର ଅପରିହାର୍ଯ୍ୟ କ୍ରମ ପରିଣାମ । ଏହାକୁ ରୂପ-ରସ ଓ ଛନ୍ଦ ମାଧ୍ୟମରେ ଇନ୍ଦ୍ରିୟଗ୍ରାହ୍ୟ ଏବଂ ବୁଦ୍ଧିଗ୍ରାହ୍ୟ ରୂପ ପ୍ରଦାନ କରିଛନ୍ତି କବି ଶ୍ରୀଯୁକ୍ତ ମିଶ୍ର । ପରିବର୍ତ୍ତନମାନ ବ୍ୟକ୍ତିମାନସ ସହିତ ଅପରିବର୍ତ୍ତନୀୟ ଗଣ ମାନସର ସମନ୍ୱୟ ସାଧନ 'ଅନେକ ଆଶ୍ଚର୍ଯ୍ୟ'ର 'ବସୁଧୈବ କୁଟୁମ୍ବକମ୍' । ସହସ୍ର ବର୍ଷର ସାମୁହିକ ଅଭିଜ୍ଞତା ଓ ଚେତନାକୁ ବହନ କରିଛି ଗଣମାନସ । ଏହା ବ୍ୟକ୍ତି ମାନସ ଭଳି ବଦଳେ ନାହିଁ କିମ୍ବା ଗଣମାନସ ପୃଷ୍ଠପଟରୁ ବ୍ୟକ୍ତିମାନସ ବିଚ୍ଛିନ୍ନ ହୁଏ ନାହିଁ! କାଳ ଓ ସମାଜ ମଧ୍ୟରେ ଚିହ୍ନିତ ମାନବ ଓ ତାର ଜୀବନ, ଏଭଳି ଚିତ୍ର ଦିଏ କବିତା, ଯେଉଁଥିରେ ଇତହାସ ତାହାର ଅସ୍ତିତ୍ୱ ସାହିତ୍ୟର ରସସୃଷ୍ଟି ଓ କବିତାର

ରୂପ (ଚିତ୍ର) ସୃଷ୍ଟିରେ ହୁଏ ବିଲୁପ୍ତ। ଏଇଥିପାଇଁ ବୋଧେ ଇଲିୟଟ ଘୋଷଣା କରିଛନ୍ତି - History is a pattern of timeless moments ଏବଂ ଇତିହାସ ବ୍ୟତୀତ କାଳ ହସ୍ତରୁ ନାହିଁ ତ୍ରାଣ!

'ଅନେକ ଆଶ୍ଚର୍ଯ୍ୟ' ଗୋଟିଏ ଗୋଟିଏ ସମସ୍ୟା। ସେହି ସମସ୍ୟାମାନଙ୍କ ଆତ୍ମ ଉଦ୍‌ଘାଟନ ବାସ୍ତବତାର ପଟ୍ଟଭୂମି କାବ୍ୟର ବସ୍ତୁସୀମା। ହରିହର ମିଶ୍ର ପ୍ରବୀଣ ମନବାଦୀ ଶିଳ୍ପୀ। ବୈଚିତ୍ର୍ୟମୟ ପ୍ରାଣ ପ୍ରାଚୁର୍ଯ୍ୟରେ ତାଙ୍କ ଶବ୍ଦ କଳା ଚିରାୟତ। Delight in Art whose end is peace (yeats) ପାଠକ ପ୍ରାପ୍ତ ହୁଅନ୍ତି। ଗୋଟିଏ ଭଲପାଇବାର ଚିତ୍ର 'ଅନେକ ଆଶ୍ଚର୍ଯ୍ୟ', ଗୋଟିଏ ସ୍ୱର ଡ଼ାକ ଦିଏ ସୌନ୍ଦର୍ଯ୍ୟର ନନ୍ଦନବନ ଭୂମିକୁ! ଚିର ଯୌବନମୟ ଚିନ୍ମୟ ରୂପର ବଗିଚାକୁ! ସେହି ରୂପ କାଳର ଏବଂ କାଳ ଅଙ୍କା ଚିତ୍ରମୟ ଜଗତ, ଏକ କୁଟୁମ୍ବ! ଇଲିୟଟ ଲେଖିଛନ୍ତି, Every poem an epitaph! ସମୟର ଏପିଟାପ୍ କବି ହରିହର ମିଶ୍ରଙ୍କ କବିତା ଆଶ୍ଚର୍ଯ୍ୟମୟ ହେବା ଅତି ସ୍ୱାଭାବିକ। 'ପୋଏଟସ୍ ଆଟ୍ ୱାର୍କ' ପ୍ରବନ୍ଧ ବହିରେ ଡ଼ବ୍ଲ୍ୟୁ.ଏଚ. ଅଡ଼େନ୍ 'ସ୍କୋୟାର୍ସ ଏଣ୍ଡ ଓବ୍ଲୋଙ୍ଗସ୍' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି- Two theories of poetry. Poetry as a magical means for inducing desireable emotions and repelling undesirable emotions in one self and others, or poetry as a game of knowledge, a bringing to consciousness, by naming them, of emotions and their hidden relationships. କବିତା ନିଶ୍ଚିତ ଏକ ବିଚକ୍ଷଣ ଶବ୍ଦବାଜି, କବି ଏହାକୁ ତାଙ୍କ ବିଚକ୍ଷଣ ବୁଦ୍ଧି ଦ୍ୱାରା ଖେଳାଇଥାନ୍ତି। କଲେକ୍ଟିଭ୍ ପବ୍ଲିକ ଅଫ୍ ଦି ୱାର୍ଲ୍ଡ ପାଇଁ Poetry is a form of cognition; the poet use language as a method of discovery ବୋଲି କହନ୍ତି David Daiches। କବି ସଂସାରକୁ ଅବଗତ କରାଇଥାନ୍ତି ଶବ୍ଦ ମାଧ୍ୟମରେ ତାଙ୍କ ଆବିଷ୍କୃତ ସମ୍ପର୍କ! ଯେଉଁଠି ବସୁଧା ଗୋଟିଏ କୁଟୁମ୍ବ ଏବଂ କୁଟୁମ୍ବର ଶାନ୍ତି ପାଇଁ 'ଉଶନସ୍'ଙ୍କ ଭଳି ମହାପ୍ରତିଭାଙ୍କ ଚକ୍ଷୁଦାନ ସାଧାରଣ ଅବଦାନ। ଜ୍ଞାନର ଆକାର କେତେ ଏବଂ କୂଟ ଚକ୍ରାନ୍ତ ପ୍ରରୋଚିତ କରିଛି ଅଭିଳଷିତ ଆବେଗକୁ ଅନାବଶ୍ୟକ ଆବେଗଠାରୁ ଦୂରେଇ ରଖିବାକୁ।

ସେଇ 'ସ୍କୋୟାର୍ସ ଏଣ୍ଡ ଓବ୍ଲୋଙ୍ଗସ' ପ୍ରବନ୍ଧରେ ଗୋଟିଏ ଚିତ୍ର ଉପସ୍ଥାପିତ କରିଛନ୍ତି ଅଡ଼େନ୍, ସିଏ ପ୍ରଶ୍ନ କରିଛନ୍ତି, କାହିଁକି ତୁମେ କବିତା ଲେଖିବାକୁ ଚାହୁଁଚ? If the young man answers: I have important things to say, then he is not a poet. if he answers; I like hanging around words

listening to what they say; then may be he is going to be a poet.

ଏଇଥିପାଇଁ ଇଲିୟଟ୍ ସ୍ପଷ୍ଟ କରିଛନ୍ତି ଅବଶ୍ୟ କବିଙ୍କ ବାର୍ତ୍ତା ପ୍ରେରଣାର ମାଧ୍ୟମ (Medium) ଅଟେ ଭାଷା । ସବୁ କ୍ରିଟିକ୍ ଏକ ମତ ଯେ, poets use language rather differently from those who write simply to convey factual information. କବିତା ଗୋଟିଏ ଅବସ୍ଥିତିକୁ କରେ ଅଭିବ୍ୟକ୍ତ । 'ପିଓର୍ ଏଣ୍ଡ୍ ଇଂପିଓର୍ ପୋଏଟ୍ରି'ରେ ରବର୍ଟ ପେନନ୍ ୱାରେନ୍ ସୂଚିତ କରିଛନ୍ତି, Poetry does not inhere in any particular element but depends upon the set of relationships. the structure, which we call poem. କୌଣସି ନିର୍ଦ୍ଦିଷ୍ଟ ଅଂଶ ଉପରେ ନୁହେଁ କବିତା ସ୍ଥାପିତ । କବିତା ଏକ ଗଠନ ପ୍ରଣାଳୀ । ଶବ୍ଦ ସହିତ ଶବ୍ଦ ସଂଲଗ୍ନ ରହି କବିତାକୁ ଦିଏ ଆକୃତି । ନିର୍ମଳ କବିତାକୁ ଆକୃତି ପ୍ରଦାନରେ ହରିହର ମିଶ୍ର ସିଦ୍ଧ ତପସ୍ୱୀ । ମାନବୀୟ ଅନୁଭୂତିରେ ଏଭଳି କିଛି ଆଇନ ପ୍ରଣୟନ ହୋଇନାହିଁ, ଯାହା ରହିବ କବିତା ବାହାରେ ! ଏହା ଅର୍ଥ ନୁହେଁ that anything can be used in any poem, କବିତାରେ କ'ଣ ହେବ ବ୍ୟବହୃତ, ଏହା ହର ପ୍ରସାଦଙ୍କ ଠାରୁ ଭଲ ଜାଣନ୍ତି ହରିହର ମିଶ୍ର । ଏହା ପ୍ରମାଣିତ କରିଛି କିଛି ବର୍ଷ ତଳେ ହରିହର ମିଶ୍ରଙ୍କ ପ୍ରାପ୍ତ 'ନବପର୍ବ ସମ୍ମାନ' । ଯାହାକୁ ଘୋଷଣା କରିଥିଲେ ହରପ୍ରସାଦ ! ଆମେ ପୂର୍ବରୁ ଜାଣିଥିଲୁ Good sense is the body of poetic genius, fancy its drapery, motion its life, and imagination the soul that is everywhere, and in each; and forms all in to one graceful and intelligent whole; (form and imagination/D. Daiches, in critical approaches to literature, Orient longman, 1956) । ବିଶ୍ୱପ୍ରସିଦ୍ଧ ସମୀକ୍ଷକ ଯେଉଁ କଳାଗତ ସତ୍ୟ ସର୍ଜନାରେ କରିଛନ୍ତି ଅନୁଭବ, ତାହାହେଲା – in all artistic creation there will be "imitation" but not "copying". In all imitation there is likeness and unlikeness, and difference. ହରିହର ମିଶ୍ରଙ୍କ ଶୈଳ୍ପିକତାର ରହିଛି ଗୋଟିଏ ଶକ୍ତ ଲାଇକନେସ୍ ସ୍ୱଭାବ । କବିତାର ପରିଣାମ ଓ କଳାଗତ ମୂଲ୍ୟବୋଧ, ଦୁଇଟି ଯାକରେ ଉଛୁଳି ଆସିଛି ସାମାଜିକ ସତ୍ୟ । ଅସାଧାରଣ ସୃଜନୀ (Genius) ଓ କାଳ ମଧ୍ୟରେ କଳା ଯେଉଁ ସୁଷମ ସଙ୍ଗତି ସୃଷ୍ଟି କରିଛି ତାହା ଅନେକ ଆଶ୍ଚର୍ଯ୍ୟ ମଧ୍ୟରୁ ଏକ । କମ୍ ଆଶ୍ଚର୍ଯ୍ୟ ସମାଯୁକ୍ତଂ କ୍ଷେତ୍ର ପରମ ଦୁର୍ଲଭମ୍ (ସ୍କନ୍ଧ ପୁରାଣ) ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ ଏଠି ଅଛି 'ଅନେକ ଆଶ୍ଚର୍ଯ୍ୟ' ଯେ ! ଏଇଠି

ହରପ୍ରସାଦଙ୍କ 'ବଂଶ' ଉଦାହରଣ ଆସେ ଆଗକୁ, ଯେଉଁଠି ସୋସିଆଲ୍ ଗ୍ରେଟନେସ୍ ବିଡ଼ମ୍ବିତ ।

ସାଂପ୍ରତିକ ସାମାଜିକ ସ୍ଥିତି ସଠିକ୍ ପ୍ରତିଫଳିତ ନ ହୋଇ ମହାଭାରତୀୟ କିମ୍ବଦନ୍ତୀ ଓ ମିଥ୍ କଳାତ୍ମକ ବିପୁଳତା ଲାଭ କରିଛି । ଟ୍ରାଡ଼ିସ୍‌ନାଲ୍ ସିମ୍ବଲିଜିମ୍ ବାହାରେ ହରିହର ମିଶ୍ରଙ୍କ କବିତା ମାନବ ଜୀବନର ପ୍ରତିନିଧିତ୍ୱ କରିନାହିଁ । ଭିନ୍ନେ ହୋଇ ଚଲୁଛନ୍ତି / ଇଞ୍ଚେ ଜମି ପାଇଁ / କୋର୍ଟରେ ତାରିଖ ଗଡୁଛି ତ ଗଡ଼ି ଚାଲିଛି / କିଏ କାହାକୁ ମୁଠାଏ ଶସ୍ୟ / ଛାଡ଼ିବାକୁ ଇଚ୍ଛୁକ ନୁହନ୍ତି (ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୬୧୧) । ଏଇ ଧାଡ଼ି କେତୋଟିର ମେଗା ଚିତ୍ର 'ବଂଶ' (ହର ପ୍ରସାଦ ଦାସ) । ସମାଜ ଓ ସାମାଜିକ ସିମ୍ବଲିଜିମ୍‌ର ଆଶ୍ଚର୍ଯ୍ୟଜନକ ଚିତ୍ର ହରିହର ମିଶ୍ର କାବ୍ୟିକ ଅନୁଷ୍ଠାନକୁ କରାଇଛି ଆଦୃତ । 'ଝିଅ ଜୋଇଁ ଆମେରିକାରେ/ପୁଅ ବୋହୂ ଦୁବାଇରେ/କାହା କାରବାର ବିଲ୍‌ଗେଟ୍ ଓ୍ୱେବସାଇଟ୍‌ରେ/ତ କିଏ ଅମ୍ବାନୀ କି ବିରଳା ଗ୍ରୁପ୍‌ରେ/ x x ଇଣ୍ଟରନେଟ୍‌ରେ ପାଠପଢ଼ା/ଇ-ମେଲ୍‌ରେ ଖବର ଟବର...' ଗୋଟିଏ ଗଣଜୀବନର ସାଂସ୍କୃତିକ ପରିବର୍ତ୍ତନ ହରିବାବୁଙ୍କ ଏହି ପଂକ୍ତିରେ ସୁସ୍ପଷ୍ଟ । କେ.ଏମ.ଡ଼ୋଲଗୋଭ୍ ଲେଖିଛନ୍ତି, The working people began to take an active part in cultural life; they became the creators of cultural values.

ଦୁଇ ହଜାର ଦୁଇ, ନ୍ୟୁୟର୍କ ଟ୍ରେଡ୍ ଟାଓ୍ୱାର ଭାଙ୍ଗିବା ପରେ ଗୋଟିଏ ନୂତନ ଆର୍ଥିକ ଓ ସାମାଜିକ ବୁଦ୍ଧିଜୀବୀ ଗୋଷ୍ଠୀ ସମଗ୍ର ବିଶ୍ୱରେ ହେଲେ ପରିଦୃଷ୍ଟ । ଆଉ ଟେକ୍‌ନୋଲୋଜି, ଟେଲିଫୋନ୍ ଓ ଟେଲିଭିଜନ ମାନବର ସଂସ୍କୃତିକୁ ଦେଇଛି ଏକ ନବରୂପ! ପ୍ରତ୍ୟେକ ମଣିଷ ଭାବନା ଓ ଆବେଗ ସମୃଦ୍ଧ ହୋଇ ବିକାଶର ଦାୟିତ୍ୱକୁ ତାହାର କ୍ରିଏଟିଭ୍ ସାମର୍ଥ୍ୟ ଅନୁଯାୟୀ କରିଛି ବହନ । ଏହା ହରିହର ମିଶ୍ରଙ୍କ କବିତାରେ ଏକବିଂଶ ଶତକର ସାମାଜିକ ସିମ୍ବଲିଜିମ୍ । ତାଙ୍କ 'ଦଶାବତାର' ସେହି ନୂଆ ଗଣସଂସ୍କୃତିର ମୂଲ୍ୟାୟନ ଦୃଶ୍ୟ । 'ହାତୀର ଦୁଇଟି ଆଖି' କେତେ ଛୋଟ ଅଥଚ ହାତୀଟି କି ବିଶାଳ! କଳାର ପରିଣାମରେ ଏଠାରେ ଗୁରୁତ୍ୱ ବହନ କରେ ସ୍ରଷ୍ଟାଙ୍କ ସୃଜନୀର ସ୍ତର, ସମକାଳ କଳା ଆଇଡ଼ୋଲୋଜି ତାହାର ଡ଼ିରେକ୍ସନରେ ଉଠିଛି ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ । ହରିହର ମିଶ୍ର ଗୋଟିଏ ମାସ୍‌କଲ୍‌ଚରର ସ୍ୱରକୁ ଏକ ନିୟୁ ହ୍ୟୁମାନିଷ୍ଟିକ୍ ଦୃଷ୍ଟିରୁ ତାଙ୍କ କବିତାରେ କରିଛନ୍ତି ବିକଶିତ । 'ବଡ଼ସିଂହାର' କିମ୍ବା 'ଆମେ କ୍ଷେତ୍ର ଆମ ଦିଅଁ' – ସବୁଠିର ସ୍ୱପ୍ନର ପାହାନ୍ତି, ନ୍ୟୁ ହ୍ୟୁମାନିଷ୍ଟିକ୍ ସଂସ୍କୃତି, 'ସାବରମତୀରେ ନିଆଁ/ଗୋଧ୍ରାରୁ ଅଯୋଧ୍ୟା' କିମ୍ବା 'ଜେହାଦ' ଓ 'ଯଦୁବଂଶ' ଏକବିଂଶ ଶତକ ଟେରରିଜିମ୍ ସାମାଜିକ ଧାରଣାରେ

କଳା ସୃଷ୍ଟିର ପ୍ରେରଣା । ସାମାଜିକ ବାସ୍ତବତାକୁ ଏଠାରେ କମ୍ୟୁନିକେଟ କରୁଛି କବିତା । ବାସ୍ତବବାଦୀ କଳା ମାନବ ମନସ୍ତତ୍ୱରେ ଯେଉଁ ପରିବର୍ତ୍ତନ ସଂଘଟନ କରିଛି ବାସ୍ତବରେ ତାହା ଅନେକ ଆଶ୍ଚର୍ଯ୍ୟ! ମୋ ଷାଠିଏଟି ଦୃଶ୍ୟ, ବିଷୟ ଦୃଷ୍ଟିରୁ ଗୋଟିଏ କମ୍ପ୍ୟୁଟର ମାଉସ୍‌ର ଟିକ୍ ଧ୍ୱନି ହେବାବେଳେ ଅନ୍ୟଟି ରନ୍ଧା ଚିକେନ୍‌ର ଗନ୍ଧ, କାହା ସହିତ ନାହିଁ କାହାରି ସମ୍ବନ୍ଧ ! ଜଣେ ଯଦି ରାଷ୍ଟ୍ର ପୁରୁଷ, ଅନ୍ୟ ଜଣକ ଯାତ୍ରା ପୁରୁଷ! କେଉଁଠି ଘଟିଛି ହଂସମିଥୁନ ତ 'କେଉଁଠି ସବା ସାନପୁଅ ଫେରୁଛି'! ପୁଣି କେଉଁଠି ମହାକରୁଣା ମାନବ ଚେତନା ଭିତରେ ନବମେଘପରି ଗୋଟିଏ ପଜିଟିଭ୍ ଟ୍ରାଂସେଡ଼େନ୍ସର ବାର୍ତ୍ତାକୁ ଆଲିଙ୍ଗନ କରିଛି । ଗୋଟିଏ ସ୍ୱତନ୍ତ୍ର ସାଂସ୍କୃତିକ ସିମ୍ବଲିଜିମ୍‌ର ନାମ ହରିହର ମିଶ୍ର । ହରିହର ମିଶ୍ର ଏକ ମୌଳିକ ବୈଦୂର୍ଯ୍ୟ । ସିଏ କୌଣସି କାପାଳିକ ଆସନରେ ବସି ପାପୁଲିରେ ଢ଼େଉଁରିଆ ଧରି ହୋଇନାହାନ୍ତି ତାହାର କା'! 'ଦଶବତାର'ର ସିଏ 'ଲହକା ଡ଼ାଳର ଫୁଲ'! 'ମନ୍ତ୍ରମୁଗ୍ଧ' 'ଅର୍ଦ୍ଧନାରୀଶ୍ୱର', 'ମହାକରୁଣା', 'ରଥ'! ହରିହର ମିଶ୍ରଙ୍କ ସୃଷ୍ଟି 'ସ୍ୱରବର୍ଣ୍ଣ' ମୌଳିକ ଧ୍ୱନିର ମହ୍ଲାର । ସହଜ ଖ୍ୟାତି ପ୍ରାପ୍ତି ପାଇଁ ସାଇସ୍ତୁତି ନ ଲେଖି ସିଏ ଲେଖିଛନ୍ତି କବିସୂର୍ଯ୍ୟଙ୍କ ସର୍ପ ଜଣାଣ ପରି 'ସର୍ପସ୍ତୁତି' । ମହାରାଷ୍ଟ୍ର ସନ୍ଥଙ୍କ ପାଦୁକା ମୁଣ୍ଡାଇ ନାହାନ୍ତି କିମ୍ବା ସନ୍ଥଙ୍କ ଦାବୀ ଶିଷ୍ୟଙ୍କ ଚରଣ ସେବା ଦାସୀ ପୁତ୍ତଟିଏ ପରି କରିନାହାନ୍ତି । ମନ୍ନାଥ ଶ୍ରୀଜଗନ୍ନାଥ, ସ୍ୱୟଂ ଶଂଖନାଭି ପ୍ରଦାନ କରିଛି ତାଙ୍କୁ ଦିବ୍ୟ ସନ୍ତୋଷ । ଯାହା ବା ଅସନ୍ତୋଷ ସେ ଏ ଯୁଗର ।

ହରିହର ମିଶ୍ରଙ୍କ କବିତା ଏକ Descend, ଏକ ଅବତରଣ ସ୍ୱତଃସ୍ଫୁର୍ତ୍ତ । ଏତେ ସ୍ୱତସ୍ଫୁର୍ତ୍ତ ଧାଡ଼ି ତାଙ୍କ ସହ କବିଗଣ କେହି ଓଡ଼ିଆ ସାହିତ୍ୟରୁ ଦେଇନାହାନ୍ତି ! ସଚ୍ଚିବାବୁ ଗୋଟିଏ ଚିତ୍ରକଳ୍ପ ପ୍ରୟୋଗ କରିଛନ୍ତି, 'ନୀଳ ଚକ୍ର ବାଳେ ବାନା ଉଡ଼େ ଯଥା ଏକ ରାଜକୀୟ ହଂସ' ପରି ଦିଶେ ହରିହର ମିଶ୍ରଙ୍କ କାବ୍ୟିକ ଚିତ୍ର ! ଅବଶ୍ୟ ହରିହରଙ୍କ କାବ୍ୟିକ ଶବ୍ଦବାଦ ସଚ୍ଚିବାବୁଙ୍କ ବୈପ୍ଲବିକ ପ୍ରୟୋଗ ଧାରାଠାରେ ସର୍ବାଧିକ ଋଣୀ ।

ଶ୍ରୀଜଗନ୍ନାଥ ସଂସ୍କୃତିକୁ ଚିତ୍ର କଲାବେଳେ ନିଷ୍ଠା ଓ ବିଶ୍ୱାସ ତାଙ୍କ କେତେ ଶୁଦ୍ଧ ନିମ୍ନ ପଂକ୍ତିରୁ ହୁଏ ଅନୁଭବ: ଗହଳିର ସ୍ରୋତରୁ ସ୍ରୋତକୁ / ଯେ କାହାର ଆସିଛନ୍ତି ଡ଼ୋରିଲଗା ହୋଇ/ପାଦରେ ଦଳି ଦେଇ ହିଡ଼ବନ୍ଧ ବାରଣ ଶିରକୁ/ ଅବାରଣ ଏ ଭୂଇଁକୁ (ଅନେକ ବିଚିତ୍ର) ! ଭିନ୍ନ ଏକ ଚିତ୍ର – 'ଅଫିମ ମଣୋହିରେ ନୟନ ମୁଦ୍ରିତ / ଅନେକ ବିଚିତ୍ର /କଳ୍ପବଟରୁ ଝଡ଼ିପଡ଼ନ୍ତା କି ନେଳି ନେଳି ନୋଟ / ଆଖି ତ ବଟଫଳ / ଶୁଆ ଥଣ୍ଟ ଅଧରେ ତାମ୍ବୁଳ'! ଏଠି ପତଳା ବ୍ୟଙ୍ଗ ଅଥଚ ତୀକ୍ଷ୍ଣ ସଂସ୍କୃତିର ଦ୍ୟୁତିକୁ କରିଛି ଦୀପ୍ତ । ଲୋକ ସଂସ୍କୃତି, ଜଗନ୍ନାଥଙ୍କ ଡ଼ୋରି ନ

ଲାଗିଲେ କେହି ଆସେ ନାହିଁ ପୁରୀ ! ! କବିତା ତଳେ ପ୍ରଚ୍ଛନ୍ନ ସାଂସ୍କୃତିକ ଗଣବିଶ୍ୱାସ ସାହିତ୍ୟର ଆଦି ପିଣ୍ଡ । ସେହି ଆଦି ପିଣ୍ଡକୁ ଖୋଜିବାକୁ ଯାଇ ହରପ୍ରସାଦ 'ବଂଶ'ରେ ପାଇଛନ୍ତି 'ହିଂସା', 'କାମ' ଓ ଅଧିକୃତ କରିବା ନିଶାକୁ । ହରିହର ମିଶ୍ର ପାଇଛନ୍ତି 'ଅନେକ ବିସ୍ମୟ' ରେ ଗଣ ବିଶ୍ୱାସକୁ । 'ଦିଅଁ' ଓ କ୍ଷେତ୍ରକୁ, ଯାହା ମୁକ୍ତି କ୍ଷେତ୍ର, ସାମ୍ୟ କ୍ଷେତ୍ର ଓ ମୈତ୍ରୀ କ୍ଷେତ୍ର, କିନ୍ତୁ 'ବଂଶ' ର କୁରୁକ୍ଷେତ୍ର ରକ୍ତାକ୍ତ !

Prophesy is the end of exploration. The poet reaches it by way of feeling. (Contemporary writers / K.N. singh, page - 26) । ଇଲିୟଟଙ୍କ 'ଫୋର୍ କ୍ୱାରଟେଟସ୍' କୁ କୁହାଯାଏ 'ଏ ପୋଏମ୍ ଅଫ୍ ଫିଲିଂ । ସ୍ମୃତିରେ ପଦପାତର ଅନୁଭବ ହୁଏ ଧ୍ୱନିତ । ଆଜି ବି ମୁଁ ଆସୁଥାଏ / ସାତଶ ପଞ୍ଚାଶ କୋଶ / ବୃଂଦାବନୁ ନିତ୍ୟ ମଧୁବନ / କେତେ ଦୂରଗଲା ପରେ ମିଳେ ତା' ଦର୍ଶନ... !' 'ଦି ୟୁଜ୍ ଅଫ୍ ପୋଏଟ୍ରି ଏଣ୍ଡ୍ ଦି ୟୁଜ୍ ଅଫ୍ କ୍ରିଟିସିଜିମ୍', ଇଲିୟଟ୍ ପ୍ରଶ୍ନ କରିଛନ୍ତି, କାହିଁକି କବି ତାଙ୍କ ଅନୁଭୂତିକୁ କମ୍ୟୁନିକେଟ କରନ୍ତି ଏବଂ କ'ଣ ଏହାର ଉଦ୍ଦେଶ୍ୟ ? And what is the expreience that the poet is so bursting to communicate? By the time it has settled down it a poem, it may be so different from the original experience as to be hardly recognizable.

ସରଳ ଭାବେ ବ୍ୟକ୍ତିଗତ ଅନୁଭୂତିର ପୁନଃନିର୍ମାଣ ସ୍ୱପ୍ନର ଛାଇକୁ କରେ ଆମନ୍ତ୍ରଣ, 'And ran to meet you in the rose garden'! ବୃନ୍ଦାବନରୁ ନିତ୍ୟ ମଧୁବନର ଦୂରତା କେତେ ? 'ରାମକୃଷ୍ଣ ମିଶନ ଠାରୁ ଏମାର ମଠର ଦୂରତା ସହ ଯେଉଁ ଅନୁଭୂତି ପରିଚିତ ତା' ପାଇଁ ସାତଶ ପଞ୍ଚାଶ କୋଶ ଗୋଟିଏ ଶୂନ୍ୟତା, ନୁହଁ ଦୂରତାର ଦୈର୍ଘ୍ୟ ! ଗୋଟିଏ କାବ୍ୟିକ ଫ୍ୟାସନ୍ ଅନୁଭୂତିକୁ କରୁଛି ଉଷ୍ମମ୍ । ଶବ୍ଦଙ୍କ ରହସ୍ୟମୟ ମିଳନରେ ଗଢ଼ିହୋଇଚି କବିତା; ଗୋଟିଏ ପ୍ରକ୍ରିୟାରେ ଅତୀତ ଓ ଭବିଷ୍ୟତର ଏକତ୍ର ବୁଣା ଯାଇଛି ଗୋଟିଏ ବ୍ୟକ୍ତିଗତ ଜୀବନ ଓ ଇତିହାସର ଚିତ୍ର । ଯାହା କାବ୍ୟିକ ସୌନ୍ଦର୍ଯ୍ୟରେ ବିଶୁଦ୍ଧ ବର୍ତ୍ତମାନ ! ଯେଉଁ ବର୍ତ୍ତମାନ କବିତାର ଚେତନାରେ ଚିରକାଳ ଗୋଲାପ ବଗିଚାଟିଏ ପରି ବିଦ୍ୟମାନ ।

ହରିହର ମିଶ୍ରଙ୍କ କବିତା ଅନେକ ବିଷୟ ସଚେତନ ସତ୍ତ୍ୱେ ଅଧିକ ସଚେତନ ତାହାର ଏସ୍‌ଥେଟିକ୍ ଉପାଦାନ ପ୍ରତି । ଏହି ଏସ୍‌ଥେଟିକ୍ ମୋଡ୍‌ମାନ କବିତାରେ ଏକ ସ୍ପିରିଚୁଆଲ୍ ଡ଼ିଜାଇନ୍ ସୃଷ୍ଟି କରିଛନ୍ତି । 'ଫ୍ରମ୍ ପୋ ଟୁ ଭାଲେରୀ' ପୁସ୍ତକରେ ଇଲିୟଟ୍ ବ୍ୟକ୍ତ କରିଛନ୍ତି, କବିତାରେ ଥାଏ ଅନେକ ବିଷୟ ଏବଂ From the union of several subjects there appears, not another

subject, but the poem (page -27)। ବିଷୟର ବୃନ୍ଦାବନ ଷୋହଳ କୋଶ ପରିକ୍ରମା ଅନେକ ପଥ ନୁହେଁ, ଗୋଟିଏ ପଥ, ତାହା ଲମ୍ବିଛି ମାନବ ଅସ୍ତିତ୍ୱର ଭୂମି ଦେଇ ନିତ୍ୟ ମଧୁବନକୁ !!

ଭବିଷ୍ୟତ ବାଣୀରେ ଯେମିତି ଘଟେ ଅନ୍ୱେଷାର ସମାପ୍ତି, ଠିକ୍ ସେମିତି ଅନୁଭୂତି କବିଙ୍କୁ କବିତାଠାରେ ପହଞ୍ଚାଇ ଦେଇଥାନ୍ତି । C.M. Bowra ଲେଖିଛନ୍ତି, For him, the imagination was the most important gift that a poet can have and his arrangement of his own poem shows... । ଏଥର ପ୍ରତିଟି ପ୍ରାର୍ଥନା ପ୍ରତିଟି ଶଂଖଧ୍ୱନି / ହୁଏ ଆହ୍ୱାନ ମୟ / ଅପସରି ଯାଏ ଅନ୍ଧକାର ଯବନିକା / ମେଘସବୁ ଫେରନ୍ତି ସ୍ୱସ୍ଥାନକୁ / ପର୍ବତମାନଙ୍କୁ ଟପି ଆହୁରି ଉଚ୍ଚକୁ / ବାରମ୍ବାର ଧକ୍କା ଖାଇ ନିଃଶେଷ ହେବାକୁ (ଏ ପୃଥିବୀ ଆକାଶମୟ) କବିଙ୍କ କଳ୍ପନାକୁ ଜନ୍ମ ଦିଏ ପ୍ରଥମରେ ବିସ୍ମୟ । ଜିଜ୍ଞାସା ଓ ଅନ୍ୱେଷା ଭିତର ଦେଇ କଳ୍ପନା ଲତା ବଢ଼ିଚାଲେ । ତାହାକୁ ବଢ଼ିବାରେ ଶକ୍ତି ପ୍ରଦାନ କରେ ଫିଲିଂ । ଅନୁଭବ ହିଁ ଉନ୍ମୁକ୍ତ କରିଥାଏ ଅନ୍ତଃଦୃଷ୍ଟିର ଦ୍ୱାର, କବି ଫ୍ୟାସନରେ ସଜାଇଥାନ୍ତି ତାଙ୍କ ସଂସାର ! ହରିହର ମିଶ୍ରଙ୍କ ଏହି ଅନ୍ତର୍ଚେତନାର ଦୃଶ୍ୟ - 'ଆକାଶକୁ ଚାହିଁବାରେ କ'ଣ ମିଳେ / ଯେଉଁଠି ଚତୁରଙ୍ଗ ମେଘର ପଟୁଆର / ଚତୁର୍ମାସ୍ୟ ଯେଉଁଠି ବର୍ଷାରେ ଭିଜି ଭିଜି / ପୃଥିବୀ ହୋଇଯାଏ ଆକାଶମୟ... ! ପୂର୍ବରୁ ଜାଣିଥିଲେ 'ଆକାଶ ଦିଶେ କି ସୁନ୍ଦର / ତାହାକୁ ଗଢ଼ିଲେ ଈଶ୍ୱର / ଈଶ୍ୱର ପରମ ଦୟାଳୁ ... (ଭକ୍ତ କବି ମଧୁସୂଦନ) । ଏଠି ସୌନ୍ଦର୍ଯ୍ୟ ସହିତ ଆକାଶର ଓ ଈଶ୍ୱରଙ୍କ ମହିମା କବିଙ୍କ ଫିଲିଂର ଅଂଶବିଶେଷ । କିନ୍ତୁ ହରିହର ମିଶ୍ରଙ୍କ ଉଚ୍ଚାରଣରେ ସୌନ୍ଦର୍ଯ୍ୟ ସର୍ବୋମୟ କର୍ତ୍ତା ହେଲେ ମଧ ଫିଲିଂ ତାହାର ଆତ୍ମା । ଅନୁଭବକୁ ଅବଗତ କରାଇଛି ତାଙ୍କ କବିତା । ଅଭିବ୍ୟକ୍ତି (ଏକ୍ସପ୍ରେସନ)ର ସାଧାରଣ ସତ୍ୟ ହେଲା ଇଲୁଷ୍ଟ୍ରେସନ, ଯାହା ପ୍ରଫେସର ଡ୍ୟାଚେସ୍‌ଙ୍କ ଅନ୍ୟ ଶବ୍ଦରେ Expression must include plot as well as style, invention as well as diction! ପୋପ୍ ତାଙ୍କ 'କ୍ରିଟିସିଜିମ୍'ରେ ଲେଖିଛନ୍ତି, 'Sidney's defence of poesie is, an inquiry into the nature and value of poetry, but a series of generalizations about good taste.' ଏଠାରେ ପ୍ରଥମ କଥା ପ୍ରକୃତ ଜିଜ୍ଞାସା ବା ପ୍ରକୃତିର ରୂପ ଅନ୍ୱେଷା କବି ହରିହର ମିଶ୍ରଙ୍କ କବିତାର ନାଂଦନିକ ମୂଲ୍ୟ । ଦ୍ୱିତୀୟ କଥା ହେଲା ତାଙ୍କ ଉଚ୍ଚାରଣରୁ ଉଚ୍ଛୁଳି ପଡୁଥିବା ସ୍ୱାଦ ସାଧାରଣତଃ କରେ ଆକୃଷ୍ଟ, ଏହା ତାଙ୍କ କଳ୍ପନାର ବିଶେଷତ୍ୱ । ଏହା ସଙ୍ଗେ ଇତିହାସ, ଦେଶ ଓ ସଭ୍ୟତା' ତ୍ରିସତ୍ତା ରାସାୟନିକ ମିଶ୍ରଣରେ ନିଃସତ୍ତାରେ ବଦଳି ହୋଇଛନ୍ତି 'ଏକ୍ସପ୍ରେସନ'

ଏବଂ 'Expression is the main joy and value of poetry' ।

ଆଶ୍ଚର୍ଯ୍ୟ ଅଲୌକିକ ନୁହେଁ, ଆଶ୍ଚର୍ଯ୍ୟ ପ୍ରାକୃତିକ ଏବଂ ସ୍ୱାଭାବିକ । ସ୍ୱାଭାବିକତାର ସ୍ୱରୂପ ମଧ୍ୟ ସାଧାସିଧା ଏବଂ ସାଧାସିଧା ସୌନ୍ଦର୍ଯ୍ୟର ଯେଉଁ ବିମଳ ଜ୍ୟୋତି ଫୁଟି ଉଠିଛି ତାହା ସଦ୍ୟଫୁଟା ଟଗର ଫୁଲଟିଏ ପରି ଦିଶୁଛି ! ନିରୀକ୍ଷଣ କରାଯାଇପାରେ ଏହି ଅଭିବ୍ୟକ୍ତି – 'ବଦଳି ଯାଉଛି ଆକାଶ / କେତେରଙ୍ଗର ପୋଷାକରେ / ଭାସି ଭାସି ଯାଉଛି ମେଘ / ସାରାଦିନ ସାରାରାତି / ଯେଉଁମାନଙ୍କୁ ଦେଖିବାକୁ ଆସିବାକୁ ହେବ / ଖୋଲା ପଡ଼ିଆକୁ' ! କେତେ ସାଦା ଏହି ଉଚ୍ଚାରଣ, କିନ୍ତୁ କାବ୍ୟିକ ବ୍ୟଂଜନାରେ ମଂଜୁଳ ! ଆକାଶ କେତେ ରଙ୍ଗର ପୋଷାକରେ ଦିନରାତି ଭାସି ଚାଲିଛି ଏବଂ ତାକୁ ଦେଖିବାକୁ ହେଲେ ଖୋଲା ପଡ଼ିଆକୁ ଆସିବାକୁ ହେବ । ଏଠାରେ ଗୋଟିଏ ପିଣ୍ଡ ବ୍ରହ୍ମାଣ୍ଡ ଜ୍ଞାନାଲୋକର ଝଲକ କଳ୍ପନାକୁ ଯେମିତି ବିଜୁଳିପରି ଚିକ୍‌କରି ପ୍ରଚ୍ଛନ୍ନ ଭାବରେ ଚମକାଇ ଦେଉଛି ! ପରିଚିତ ଚାରିକାନ୍ଥର ବଖରା ବାହାରେ ଅନୁଭବ ଓ ପୁଲକମୟ ନୂଆ ବଖରାଟିଏ ରହିଛି ! ସେ ବଖରା ଅବିଶ୍ୱସ୍ତ ନୁହେଁ, ଭରସାଯୋଗ୍ୟ ! ଅଶ୍ରୁ କେବେ ବ୍ୟର୍ଥ ନୁହେଁ, ଆସ୍ପୃହାର ଉତ୍ତର ସ୍ୱରୂପ ଅବତରି ଥାଏ ଅପ୍ରତିହତ କରୁଣା ? କବିର କଳ୍ପନା ସେହି କରୁଣାର ପ୍ରତିବାର୍ତ୍ତା ।

'ଆମ ଭିତରେ ସତେ କ'ଣ ନିତିଦିନ / ନୂଆ ଦେଖୁଥିବା ସେ ଆଖିଟି ଅଛି / ଯାହା ବୁଝେଇଦିଏ ବଦଳି ଯିବାର ଅର୍ଥ/ ଯାହା ଓଲଟାଇ ଦିଏ ଚିରାଚରିତ୍ର ଚିତ୍ର / ନାନା ରଂଗ ଆକାର ପ୍ରକାର,' (ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୬୨୯) ! ପରିବର୍ତ୍ତନକୁ ଆଧାର କରି ଯେଉଁ ଯୁଗ ବସ୍ତୁବାଦୀ ପୃଥିବୀକୁ ଓହ୍ଲାଉଛି, ତାହାର ନାମ ଆଧୁନିକ ।

ନୂଆ ନୂଆ ପୋଷାକରେ ବଦଳୁଥିବା ରୂପପରି ମଣିଷ ହାତପାଖରେ ପହଞ୍ଚୁଥିବା ସୁବିଧା ଓ ସହଜ ଜୀବନ ! ଶସ୍ତା ବଂଚିବା ! ଇନ୍ଦ୍ରିୟ ସଂଚାରୀ ସେ ଅନୁଭବକୁ ଦେଖିବାକୁ ଏବେ ମଣିଷ ପାଖରେ ଆୟୁଷ ଆଖି ! ବଖରାଏ ଜୀବନକୁ ଭୋଗ କରିବାକୁ ତା' ପାଖରେ ଆୟୁଷ ନଥିବାବେଳେ ସିଏ ମାଲିକ ନିଜକୁ କରୁଛି ମହଲା ମହଲା କୋଠାର ! ଗୋଟିଏ ପରମ ବିସ୍ମୟ ଭିତରେ ଭାସୁଛି ସଂସାର । ଯକ୍ଷ ଯୁଧିଷ୍ଠିରଙ୍କୁ ପଚାରିଛି, ସେହି ଆଶ୍ଚର୍ଯ୍ୟ କ'ଣ ? କ'ଣ ସେହି ଆଶ୍ଚର୍ଯ୍ୟ, ତାହାର ଉତ୍ତର ଏକବିଂଶ ଶତକରେ ହୋଇପାରେ କ'ଣ, ତାହା 'ଅନେକ ଆଶ୍ଚର୍ଯ୍ୟ'ରେ ଉତ୍କୀର୍ଣ୍ଣ ! ଅହନ୍ୟହନି ଭୂତାନି ଗଚ୍ଛନ୍ତୀହ ଯମାଳୟମ । ଶେଷାଃସ୍ଥାବର ମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରମ ! ...ବ୍ୟାଧ କେବେ ବୁଝେ ନାହିଁ

କାକଳି, କି ରୋଗ କେବେ ବୁଝେ ନାହିଁ ଦେହ ଆୟୁଷ!...କବିତା କବିତା ମାତ୍ର, ଯେମିତି ଫୁଲ ପାଇଁ ସୌନ୍ଦର୍ଯ୍ୟ ହିଁ ଯଥେଷ୍ଟ!

ଗୋଟିଏ ଲେଖିବା ଟେକ୍‌ନିକ୍‌ର ନାମ ବୃହତ୍ତର ଭାବେ ସାହିତ୍ୟ ଏବଂ କବିତା ସେହି ଟେକ୍‌ନିକର ଅଂଶବିଶେଷ। ଲେଖିବା କର୍ମଟି ସାଂସ୍କୃତିକ, ଭାଷା ଏହାର ମାଧ୍ୟମ ଓ ଭାଷା ଏହାର ପ୍ରାଣ। ଅଭିବ୍ୟକ୍ତି ଏହାର ଆଭିମୁଖ୍ୟ। ଶୈଳ୍ପିକ ଜୀବନ ଅଭିବ୍ୟକ୍ତି ଦ୍ୱାରା ହିଁ ହୋଇଥାଏ କଳାତ୍ମକ, ଆଦୃତ ଓ ଅମୃତ। ସୃଷ୍ଟି ହିଁ ଆକ୍ଟିଭ ଏକ୍ସପ୍ରେସନର ଇଂପ୍ରେସନ। ପୁନଶ୍ଚ – Every true institution or representation is, also expression! ଫିଲିଂର ଫର୍ମ ସୃଷ୍ଟିର ସବ୍‌ଜେକ୍ଟ ଯାହା ସ୍ରଷ୍ଟାଙ୍କ ମାଇଣ୍ଡରୁ ଅବତରି ଆସିଥାଏ। ସୃଜନ ପ୍ରକ୍ରିୟାରେ ତାହାର ସ୍ଥାନ ଓ ମାନ ଅନନ୍ୟ।



## ଇତିହାସର ହସ୍ତାକ୍ଷର :
## 'ପାହାଡ଼ର ଢେ଼ଣା' - ଏକ କାବ୍ୟିକ ଆକଳନ

ଇତିହାସ ହସ୍ତାକ୍ଷରର ଆକୃତି ଥୋମାସ ଷ୍ଟର୍ଣ୍ଣ ଇଲିୟଟ ତାଙ୍କ କବିତାର କାନ୍‌ଭାସ୍‌ରେ ଅଙ୍କନ କରିଛନ୍ତି -

୧. History may be servitude,
History may be freedom.
୨.Without history
Is not redeemed from time, for history is a pattern
Of timeless moments. (Little Gidding, Part II & V, by T.S. Eliot)

୩.History has many cunning passages, contrived corridors
And issues, deceives with whispering ambitions,
Guides us by vanities. (Gerontion, by T.S. Eliot)

ଇତିହାସ ମାଇକେଲ୍ ଆଂଜ୍‌ଲୋ ନୁହେଁ କିମ୍ବା ନୁହେଁ ପ୍ରିନ୍ସ ହାମଲେଟ୍, ଇତିହାସ ଗୋଟିଏ ମୁହଁ, ଟାଇମ୍‌ଲେସ୍ ନେସ୍ ମୁହୂର୍ତ୍ତର ମୁହଁ! ସମୟ ଚଢୁଛି ପାହାଚ, ପରିବର୍ତ୍ତନ କରୁଛି ତା' ପୃଷ୍ଠ ପାର୍ଶ୍ୱ! ୟୁନିଭର୍ସର ବଲ୍‌ଟିକୁ ମୁଠାଇ ଧରିଛି! ପୁରୁଣା ପୃଥିବୀରେ ଆରମ୍ଭ ହେଉଛି, "a new start" (the fine sermon)! ହୃଦୟର ତାତି 'Reflecting in a watery mirror!'

F. Engles ଲେଖିଛନ୍ତି, କ'ଣ ଏହି ଇତିହାସ, history is nothing but the activity of man pursuing his aims. ଲକ୍ଷ୍ୟ ପ୍ରତି ଅନୁଧାବନ କାର୍ଯ୍ୟ କଳାପର ଅବବୋଧ ସଂସ୍କୃତି । ମନୁଷ୍ୟର ସକ୍ରିୟତା ହେତୁ ଇତିହାସ କେବଳ ସତ ବୋଲି ଧରି ନିଏ ଐତିହାସିକ ସକ୍ରିୟତାକୁ, ଯେତେବେଳେ ଏହା ସଂସ୍କୃତି ରୂପେ ହୁଏ ବ୍ୟାଖ୍ୟା (ଫର୍ମ ଅଫ୍ କଲ୍‌ଚର୍) ମନୁଷ୍ୟର ପ୍ରାକ୍ଟିକାଲ ଏବଂ ଥିଓରିଟିକାଲ ଅନୁଭୂତି କଲ୍‌ଚର୍‌ର ଫର୍ମ ଉପରେ ଯେତେବେଳେ ତୀବ୍ର ହୁଏ ବା ଗାଢ଼ ଗୋଟିଏ ନୂଆ ଆଙ୍ଗିକ ବିସ୍ତୃତ ହୁଏ, ତାହା ଇଲିୟଟଙ୍କ 'ଫ୍ରିଡ଼ମ୍'! ସେହି 'ଫ୍ରିଡ଼ମ୍' ବ୍ୟତୀତ ନାହିଁ 'ରିଡ଼ିମ୍' (Rredeeme) ।

V.de. S Pinto ଇଲିୟଟଙ୍କୁ ଆଲୋଚନା କଲାବେଳେ ବ୍ୟକ୍ତ କରିଛନ୍ତି, ଏହାହିଁ ଇତିହାସ, ସଠିକ୍ ସମ୍ମାନ, କାଳାତୀତର ଲକ୍ଷ୍ୟ ସାଧନ ! ଇତିହାସ ଅତୀତ ନୁହେଁ, It is alive in the London ବିବିଧ ସବୁଜ ମଧ୍ୟରେ ଚାଲିଥିବା ସେଇ ପାଦ ଦୁଇଟି ଇତିହାସ, ଶ୍ୱେତ ଓ ବ୍ଲୁରେ ବଦଳି ଯାଇଥିବା ସେ ପାଦ କାଳାତୀତର ସାଧନ !

ସମକାଳ କଳା ବା କବିତା ଉତ୍ପାଦନର ଲକ୍ଷ୍ୟ ମାନବୀୟ ସକ୍ରିୟତାକୁ କରିବା ପ୍ରବର୍ତ୍ତନ (persuasion) । ଦାର୍ଶନିକ କାଣ୍ଟମାନବ ଜୀବନ ସ୍ତରରେ କାରଣର ପ୍ରାକ୍ଟିକାଲ, ନୈତିକତା ଓ ଈଶ୍ୱରଙ୍କ ଅନୁଧ୍ୟାନ କରି ଖୋଜିଲେ ଜୀବନର ଅର୍ଥ ! ଗୋଟିଏ ଅନ୍‌ସଲ୍‌ଭଡ୍ ଫର୍ମୁଲା ଭିତରେ ବଂଚିଥିଲା ତାଙ୍କ ଅଭିବ୍ୟକ୍ତ ସୃଷ୍ଟିର ପ୍ରାଣ । 'ଗଡ୍', 'ଫ୍ରିଡ଼ମ୍' ଏବଂ 'ଇମୋରାଲିଟି' - କାଣ୍ଟଙ୍କ ତ୍ରିକୋଣ ଭୂମି ମଝିରେ ଥିଲା ମଣିଷ । ମଣିଷର ସ୍ୱାଧୀନତା, ଇଚ୍ଛା ଓ କାରଣ ହେଲା ପରୀକ୍ଷିତ, ଯାହା ତାଙ୍କ ଜୀବନର ଅର୍ଥ । ତାଙ୍କ ଭାବନାରେ ବିଜ୍ଞାନ ଓ ଦର୍ଶନ ଏକତ୍ର ହୋଇ ସମ୍ପାଦିତ ହୋଇଥିଲେ ଏବଂ ସମ୍ପାଦିତ ସେହି ନୂଆ ରୂପଟି ଥିଲା ହ୍ୟୁମାନିଜମ୍ । ମାନବ ଓ ମାନବିକତାର ପ୍ରକୃତ ମାପକାଠି ଦୁଇଟି, ଫ୍ରିଡ଼ମ୍ ଓ ଟ୍ରୁଥ୍ । ଏହାର ପରବର୍ତ୍ତୀ ରୂପ ହେଲା ହ୍ୟୁମାନିଜିମ୍ ।

ଈଶ୍ୱର, ସ୍ୱାଧୀନତା ଓ ଅବିନଶ୍ୱରତା, ଜୀବନର ଯେଉଁ ତ୍ରିକୋଣଭୂମି ସମ୍ବନ୍ଧରେ ସଚେତନ ଥିଲେ କାଣ୍ଟ୍ ତାହାକୁ ଫରାସୀ ବିପ୍ଳବବେଳେ ପ୍ରତ୍ୟାଖ୍ୟାନ କଲେ ଫିଚ୍‌ଟେ (Johann Gottliedb Fichte) । ଜୀବନର ଉଦ୍ଦେଶ୍ୟ ହେଲା ହ୍ୟୁମାନିଷ୍ଟିକ୍ ଫାଉଣ୍ଡେସନ୍ । ତେଣୁ ଈଶ୍ୱର ଓ ଆତ୍ମାର ଅବିନଶ୍ୱରତା ସହିତ ଏହାର ନାହିଁ କିଛି ସଂପର୍କ । ପାରିପାର୍ଶ୍ୱିକ ଅବସ୍ଥା ତାକୁ କରିବ ସଚେତନ, ନୁହେଁ ଆତ୍ମାର ଇମୋରାଲିଟି । ମଣିଷ ଇଣ୍ଡିଭିଜୁଆଲ୍ ଏବଂ ସେ ତାହାର ସମାଜ ପାଇଁ କରୁଛି

କାର୍ଯ୍ୟ । ରେନେ ଡୁବେଙ୍କ ମତରେ – Man is Biologically individual and social.

G.W.F. Hegle ଗୋଟିଏ ଧାଡ଼ି କରିଛନ୍ତି ଉଲ୍ଲେଖ, ବ୍ରହ୍ମାଣ୍ଡୀୟ ଭାବନାର ବିକାଶ ଅଟେ ସଂସ୍କୃତିର ସର୍ବୋଚ୍ଚ ମୂଲ୍ୟ । ତାଙ୍କ 'ଫିଲୋସଫି ଅଫ୍ ହିଷ୍ଟ୍ରି', ଯେଉଁଠି ସିଏ ବ୍ୟକ୍ତ କରୁଛନ୍ତି, କାରଣ ସଂସାରକୁ କରୁଛି ଶାସନ । ତେଣୁ ବିଶ୍ୱ ଇତିହାସ ନିଶ୍ଚିତ Rational । କାରଣ ଅସୀମ ଉପାଦାନ । ତେଣୁ ସିଏ ଇତିହାସର ସବ୍‌ଜେକ୍ଟିଭ ବ୍ୟାଖ୍ୟାକୁ କରିଥିଲେ ରିଜେକ୍ଟ । ମତ ରଖିଥିଲେ – "History ought to be studied from the point of view of the idea, ଆଇଡ଼ିଆ ବା କଳ୍ପନାର ଭିୟୁ ଅଫ୍ ପଏଣ୍ଟ ହେଲା, in reality the idea is the leader of peoples and the world, and it is the spirit, its rational and necessary will, that has guided the events of history : to study this spirit in its guiding role is our aim here." ଏଠାରେ ଐତିହାସିକ ବସ୍ତୁବାଦର ଖୁବ୍ ନିକଟତମ ସେ । ଇତିହାସକୁ ପରୀକ୍ଷା କରି ଦେଖାଇଛନ୍ତି, ଲୋକଙ୍କ କାର୍ଯ୍ୟଧାରା ସେମାନଙ୍କ ଆବଶ୍ୟକତାଠାରୁ ଦେଉଛି ଲମ୍ଫ ! ସେମାନଙ୍କ Passions, interests, characters ଏବଂ ability ! ଅବଚେତନ ଭାବେ ଲକ୍ଷ୍ୟ ଠାରେ ଉପସ୍ଥିତ କିଂବା ଅବଚେତନ ଭାବେ ଲକ୍ଷ୍ୟ ଅପୂରଣ । ହେଗେଲ୍ ଚିତ୍ରଣ କରିଥିଲେ ବିଶ୍ୱ ଇତିହାସ ହିଷ୍ଟ୍ରି ଅଫ୍ ଦି ୱାର୍ଲଡ୍ ସ୍ପିରିଟ୍ ଏବଂ ମଣିଷର ଇତିହାସ ହେଲା ହିଷ୍ଟ୍ରି ଅଫ୍ ସେଲ୍‌ଫ ଆୱାର୍‌ନେସ୍ । ସ୍ୱାଧୀନତା ଉପଲବ୍‌ଧିରେ ତାଙ୍କ ଇତିହାସ କଳ୍ପନା ଏକ ମୂଲ୍ୟବାନ ଅଗ୍ରଗତି । ବୌଦ୍ଧିକ ଉତ୍ପାଦନ କ୍ଷେତ୍ରରେ ତାଙ୍କ ଲକ୍ଷ୍ୟର ଭିତ୍ତି ମନୁଷ୍ୟର ସେଲ୍ଫ ଆୱାରନେସ୍ ଓ ସୋସାଇଟି ।

'କଲେକ୍ଟେଡ୍ ୱାର୍କ୍ସ' କେ. ମାର୍କ୍ସ ଏଣ୍ଡ ଏଫ୍. ଏଙ୍ଗେଲ୍ସ, ପଂଚମ ଭାଗ ପୃଷ୍ଠା ୫୦ରେ ବର୍ଣ୍ଣନା କରାଗଲା, History does nothing, it possesses no immense wealth, it wages no battles. It is man, real, living man who does all that, who possesses and fights.

କବିତା ଟ୍ରାନ୍ସଫରମେସନ୍ ଅଫ୍ ମ୍ୟାନ ଏଣ୍ଡ ରିଅଲିଟି । ମନୁଷ୍ୟ ଓ ବାସ୍ତବତା ଶବ୍ଦରେ ବଦଳି ଯିବାବେଳେ ସୁନ୍ଦର ଆଚରଣର ଗୁଡ଼ିଏ ଧାଡ଼ି ଫର୍ଦ୍ଦ ଉପରେ ଗଦେଇ ହୋଇ ଗଢ଼ିନିଏ ଇତିହାସର ଆକୃତି । ଟ୍ରାନ୍ସଫରମେସନ୍ ଧାରାରେ ହୁଏ ଧ୍ୱନି ଉପାଦାନ । ସାମାଜିକ ଚେତନାର ସେହି ଧ୍ୱନି ଉପାଦାନର ପ୍ରତିଷ୍ଠିତ ଆଙ୍ଗିକ ଅଟେ କବିତା । ଏକ ନୂଆ ସଂସ୍କୃତି ଓ ଏକ ନୂଆ ଟ୍ରାଡିସନ୍‌ର ଜୀବନ୍ତ କ୍ରିୟାଶୀଳ ଆଙ୍ଗିକ, ଯାହାର କଳା କ୍ଷେତ୍ରରେ ରହିଛି ପ୍ରଚୁର ଭୂମିକା ।

କବିତା କ'ଣ, ଗତ ଶତକରେ ତାହାର ସଂଜ୍ଞା ନିର୍ଣ୍ଣୟ କରିଥିଲେ କାବ୍ୟାଚାର୍ଯ୍ୟ ଶ୍ରୀଅରବିନ୍ଦ, 'Poetry is the rhythimic voice of life, but it is one of the inner and not one of the surface voice.' ଚଳିତ ଶତକର ପ୍ରଥମ ଦଶନ୍ଧି ଅର୍ଦ୍ଧକାଳରେ ଖଣ୍ଡିଏ କାବ୍ୟ 'ପାହାଡ଼ର ଡ଼େଣା' କବି ହରିହର ମିଶ୍ର ଦିଅନ୍ତି ପାଠକଙ୍କୁ । 'ପାହାଡ଼ର ଡ଼େଣା' କବିତା ସଂଜ୍ଞାର ହସ୍ତାକ୍ଷରକୁ ତା' ରଚନା କୌଶଳରେ କରିଦେଇଛି ପରିବର୍ତ୍ତିତ । କବିତା ବିଷୟ ନୁହେଁ, ଗୋଟିଏ ଆର୍ଟ୍ । ଶବ୍ଦ ବସାଣର ବାଗରେ ଫୁଟିଉଠେ ଯେଉଁ ଅନୁଭବ ଓ ଅନୁଭୂତିର ବିସ୍ମୟ, ଶ୍ରବ୍ୟସୁଖ ସେହି ଶାବ୍ଦିକ କଳା କବିତା । 'ପାହାଡ଼ର ଡ଼େଣା' ଯେଉଁ ଅନୁଭବ ଓ ଅନୁଭୂତିର ବିସ୍ମୟ ବିତରିତ କରେ ତହିଁରୁ ଅବବୋଧ ହୁଏ କବିତା ସମକାଳ ସାମାଜିକ ଇତିହାସ ଅନ୍ତର୍ଚ୍ଚେତନାର ମର୍ମଲିପି । ଏହାର କେନ୍ଦ୍ରରେ ବିଦ୍ୟମାନ ମାନବ ନୁହେଁ, ମାନବର ପରିବେଶ । ସଂପର୍କ ଓ ଅନୁଭବର ଇତିହାସ ଫର୍ଦ୍ଦ ପରିବେଶୀୟ ଚାରୁ ଚିତ୍ରଶୀଳା । ପରିବେଶ ପ୍ରତି ଗୋଟିଏ ସେଲ୍ଫ ଆୱାରନେସ୍ ହୋଇଛି ଭଏସ୍ । ଏହି ଭଏସ୍ କେହି କାହାକୁ ଶୁଣାଏ ନାହିଁ, କେବଳ ଶୁଣାଯାଇଥାଏ ଏକମାତ୍ର କବିଙ୍କୁ । ଶ୍ରୀଅରବିନ୍ଦ ଅନୁଭବ କରିଥିଲେ, କବିତାର, the true creator, the true hearer is the soul,' (The future poetry, p. 13) 'କବିତାର ସ୍ରଷ୍ଟା କବିପ୍ରାଣ ହିଁ ତାହାର ପ୍ରକୃତ ଶ୍ରୋତା, ପ୍ରକୃତ ପାଠକ କବିଙ୍କ ନିଜ ପ୍ରାଣ । ଅନ୍ତର୍ଚ୍ଚେତନାକୁ ଦଖଲ କଲେ soul-view କାବ୍ୟିକ ଶବ୍ଦ ଓ ସତ୍ୟ ଫୁଟି ଉଠିଥାଏ । ଶବ୍ଦ-ପ୍ରତିମା ଅଭିବ୍ୟକ୍ତ ହେବାପାଇଁ ଖୋଜିଥାଏ ଛନ୍ଦ । ଗୋଟିଏ ସମ୍ଭାବନାପୂର୍ଣ୍ଣ ଭାଷା କବିତାକୁ କରାଇଥାଏ ହୃଦବୋଧ୍ୟ ।

'ପାହାଡ଼ର ଡ଼େଣା' ଶୀର୍ଷକ ହିଁ ସୂଚିତ କରେ ହରିହର ମିଶ୍ରଙ୍କ 'ସମ୍ଭାବନାପୂର୍ଣ୍ଣ' ଭାଷା । ଡ୍ରାଇଡ଼େନ୍‌ଙ୍କୁ ଆଲୋଚନା କଲାବେଳେ ୱାର୍ଡ଼ସୱାର୍ଥ କହିଥିଲେ ଗୋଟିଏ ପଦ 'ସ୍ପ୍ଲେଣ୍ଡିଡ୍ ଡ଼ିକ୍ସନ୍' । ଅବ୍‌ଜେକ୍ଟକୁ ଭାଷା କରେ ପୁର୍ନଆହ୍ୱାନ ଯେମିତି ସାଧାରଣ ଗଦ୍ୟ କରେ ଏବଂ ଏହାକୁ ନିଶ୍ଚିତ ସ୍ମାଟନେସ୍‌ରେ କରାଏ ପୋଷାକ ପରିଧାନ । ପ୍ରବଣତା ଓ ଅବରୋଧ ଔଜଲ୍ୟ ଏହି ପୋଷାକ ପରିଧାନରୁ ହୁଏ ଅନୁଭବ (Essays in criticism, by Arnold, P. 68-69) । ତାହାକୁ ସିଏ କହିଛନ୍ତି, 'Splendid diction' । କବିତା ସୃଷ୍ଟି କଳା ସମୀକ୍ଷା କଲାବେଳେ ଶ୍ରୀଅରବିନ୍ଦ ଗୋଟିଏ ସଂସ୍କୃତ ପଂକ୍ତି 'ଦି ଫ୍ୟୁଚର ପୋଏଟ୍ରି'ରେ ଉଦ୍ଧୃତ କରିଛନ୍ତି, କାବ୍ୟଃ ସତ୍ୟ ଶ୍ରୁତଃ' (ପୃ. ୪୧, ଶ୍ରୀଅରବିନ୍ଦ ଆଶ୍ରମ, ୧୯୫୩ ପ୍ରକାଶନ) ।

ପୁରାଣରେ ପ୍ରଚଳିତ ରହିଛି କିଂବଦନ୍ତୀ ପାହାଡ଼ମାନଙ୍କ ସତ୍ୟକାଳରେ

କୁଆଡ଼େ ଥିଲା ଡ଼େଣା ଏବଂ ସେମାନେ ଆକାଶରେ ତିର୍ଯ୍ୟକ ପରି ଉଡୁଥିଲେ। ସେମାନଙ୍କ ଦୌରାତ୍ମ୍ୟରେ ପୃଥିବୀ ଥରହର ହେବାରୁ ଇନ୍ଦ୍ର ବଜ୍ରାଘାତ କରି ସେମାନଙ୍କ ଡ଼େଣା ଛେଦନ କଲେ। କେବଳ ମୈନାକ ଖସିଯାଇ ସମୁଦ୍ର ଗର୍ଭରେ ଲୁଚି ରହିଲା ସବୁଦିନ ପାଇଁ।

ଶ୍ରୀଅରବିନ୍ଦ ଲେଖିଛନ୍ତି, 'a poetry which is all thought' ଦାର୍ଶନିକତାରେ ହୋଇଛି ସାଂସ୍କୃତିକ। 'ପାହାଡ଼ର ଡ଼େଣା' ପଦଟିରେ ନିଶ୍ଚିତ ମର୍ମକୁ ଛୁଏଁ କବିଙ୍କ ଆଧୁନିକ ଭିଜନ୍ ଏବଂ ଇଣ୍ଟେଲେକ୍‌ଚୁଆଲ୍ ବିୟୁଟି। 'ପାହାଡ଼ର ଡ଼େଣା' ଗୋଟିଏ ଜୀବନ୍ତ ମିଥ୍ ବୋଲି କବିତାର ଉପାଦାନ ଓ ସୁଷମା ଚିହ୍ନାଇଦିଏ ନାହିଁ। ଗୋଟିଏ ବିଶାଳ ସ୍ଥିରତାର ସାମର୍ଥ୍ୟ ଆର୍କିଟାଇପ୍ ଭିତରେ ପରିଚିତ କରାଏ ଶବ୍ଦ ଇତିହାସର ଆକୃତିକୁ। ଯାହା 'ପାହାଡ଼' ଓ 'ଡ଼େଣା' ଦୁଇଟି ମିଶ୍ରିତ ବସ୍ତୁ ଚେତନାର ନିର୍ଯ୍ୟାସ। ଗୋଟିଏ କାବ୍ୟିକ ଜୀବନ୍ତ ଭାବନା ବା କାରିଗରୀର ପ୍ରାଣ।

'ବୃନ୍ଦାବନରେ ରାତି' ଫିଟାଇଛି 'ପାହାଡ଼ର ଡ଼େଣା'ର ମୁଖଶାଳାର ଦ୍ୱାର। ଏହି ଦ୍ୱାରରୁ ହିଁ ଦିଶୁଛି ତାଙ୍କ କାବ୍ୟିକ ଟେକ୍‌ନିକ୍ ପତିତ ପାବନଙ୍କ ମୁହଁ। ଇତିହାସର ଅକ୍ଷର ଲେଖିଛି ମିଥ୍‌ର ଭିଜନ୍ ଓ ପରିପ୍ରକାଶ କରାଇଛି କବିଙ୍କ ଇଣ୍ଟେଲେକ୍‌ଚୁଆଲ୍ ବିୟୁଟି। ଅଭିବ୍ୟକ୍ତି ଯେମିତି ସ୍ଫଟିକ୍ ପରି ସ୍ୱଚ୍ଛ: 'ପରସ୍ପରକୁ ଭେଟି ପାରିନାହାନ୍ତି ବୋଲି ତ / ପ୍ରତିଦିନ ତାଙ୍କର ପରିଣୟ / ପ୍ରତିରାତି ପାରି ଦେବାକୁ ହୁଏ ଫୁଲ ଶେଯ / ଏପରି କି ପ୍ରତିଦିନ ପ୍ରତିରାତି/ ଏକ ହଳଦୀ ବସନ୍ତ ଓ କଜ୍ଜଳ ପାତି / ଉଡ଼ି ବୁଲନ୍ତି ଶୂନ୍ୟର ତାରା ଭର୍ତ୍ତି କଦମ୍ବ ଡ଼ାଳରେ / ନୀଳ ମୁଖ ପେଚାଟିଏ ଦେଖିଥାଏ ସେହି ଦୃଶ୍ୟ" (ହରିହର ମିଶ୍ରଙ୍କ କବିତା ୧୦୦୧, ପୃ. ୪୯୯)।

"ଛ" ଶହ ବର୍ଷ ତଳେ ଦେଖିଥିଲି ତାଙ୍କୁ / ଲେଖିଥିଲି ନାଗରୀ ଲିପିରେ / xxx ଆଜି ଶୋଇ ରହିଚି ଅନ୍ଧାରର ଅଣସର ଘରେ।"

ଚମତ୍କାର ବ୍ୟଂଜନା ଓ ପ୍ରତୀକର ପ୍ରଜାପତି ଚୁମ୍ବିଛି କବିତା ପଂକ୍ତିର ଗୋଲାପୀ ଓଠ। ଗୋଟିଏ ଅବିନଶ୍ୱର - ପ୍ରାଣ ଗାଥା ତାହାର ଡ଼େଣା ପରିବ୍ୟାପ୍ତ କଲାବେଳେ ଶ୍ରୀଜଗନ୍ନାଥ ସଂସ୍କୃତିର ଇତିହାସ ପ୍ରତୀକ ଗୁଡ଼ିକରେ ଗୁଂଫିତ। କିଂତୁ ଅଭିବ୍ୟକ୍ତିର ଶୈଳୀରେ ଶ୍ରୀଅରବିନ୍ଦଙ୍କ ତତ୍ତ୍ୱ 'a poetry which is all thought' ଜୀବନ୍ତ। କବି ନିଜେ ଭାବନାକୁ ବପିତ କରିଛନ୍ତି, ତାଙ୍କ ଭାବନାର କେନ୍ଦ୍ର 'ଅଣସର ଘର' ର ପ୍ରତୀକ। ହଳଦୀ ବସନ୍ତ ଓ କଜ୍ଜଳପାତି ପ୍ରତୀକ ଦୁଇଟି ଭାରତୀୟ

ସାହିତ୍ୟର ମହାନାୟକ ଓ ମହାନାୟିକା ଦୁଇଜଣଙ୍କ ପାଇଁ ବ୍ୟବହୃତ । ଦୁହେଁ 'ପରସ୍ପରକୁ ଭେଟି ପାରି ନଥିଲେ' ନୁହେଁ ବରଂ ଅଳ୍ପ ଭେଟିଥିଲେ, ପରସ୍ପରକୁ ଅଳ୍ପ ପାଇଥିଲେ ଏବଂ ଅଳ୍ପ ଭୋଗ କରିଥିଲେ ପ୍ରଣୟ ପୁଷ୍ପ । ପ୍ରଣୟ ଇତିହାସର ଅପାର୍ଥିବ ଅକ୍ଷର ଏହି ତତ୍ତ୍ୱ ଓ ତଥ୍ୟକୁ ଦେଇଛି ରୂପ । 'ନୀଳମୁଖ ପେଚାଟିଏ ଦେଖିଥାଏ ସେହି ଦୃଶ୍ୟ' ପଂକ୍ତିଟିରେ 'ନୀଳମୁଖ ପେଚା' କବିଙ୍କ ଇଣ୍ଟେଲେକ୍‌ଚୁଆଲ ବିୟୁଟିକୁ କରେ ପ୍ରତିପାଦିତ । ଠିକ୍ ଏମିତି ଗୋଟିଏ ଚମତ୍କାର ଚିତ୍ରକଳ୍ପ ବ୍ୟବହାର କରିଛନ୍ତି କବି ରମାକାନ୍ତ ରଥ, 'ନୀଳକଇଁ ରଙ୍ଗର ଛୁରୀ' । ନୀଳମୁଖ ପେଚା ଅର୍ଥ 'କାଳୋଽସ୍ମି' ହୁଏତ । ଯାହା ବିଷ୍ଣୁ ସହସ୍ର ନାମରେ 'ସୁଦର୍ଶନଃ କାଳଃ ପରମେଷ୍ଠୀ' ... ହୁଏତ ।

ଛ' ଶହ ବର୍ଷ ତଳେ ସେହି ଅପ୍ରାକୃତ ପ୍ରେମକୁ ଦେବନାଗରୀ ଅକ୍ଷରରେ ସଂଗୀତ କରି ଲେଖିଥିଲେ ଜଣେ 'ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ' ଶ୍ରୀଜୟଦେବ କବି । 'ଶ୍ରୀବାସୁଦେବ ରତିକେଳି କଥା ସମେତମେତମ୍ ।' ଓଡ଼ିଆ ପ୍ରାଣର କାବ୍ୟନାୟକ ଶ୍ରୀବାସୁଦେବ ନୁହଁନ୍ତି, ଶ୍ରୀଜଗନ୍ନାଥ ! ତେଣୁ 'ଅନ୍ଧାରରେ ଅଣସର ଘରେ' ବିଦ୍ୟମାନ ଲୀଳାମୟଙ୍କ ଲୀଳାଖେଳା ସମୟ କବିଙ୍କ ସାମ୍ନାରେ ବୃନ୍ଦାବନ ଷୋହଳ କୋଶ ଦୃଶ୍ୟ କାବ୍ୟିକ ଚେତନା ନେଇଛି ମୂର୍ଚ୍ଛନାର ରୂପ, ଯେମିତି ସଜ ତୋଳା ପୁଷ୍ପ । ଆରତିରେ କରାଉଛି ଆତ୍ମବିସ୍ମୃତ ।

'ପାହାଡ଼ର ଡ଼େଣା' କବିତାରେ ରହିଛି ଭିନ୍ନ ଗୋଟିଏ କଜ୍ଜଳପାତି, ବୃନ୍ଦାବନର କଜଳପାତିଠୁ ଅଲଗା ଗୋଟିଏ ପକ୍ଷୀ । ଏ ପକ୍ଷୀଟି ଉପନିଷଦୀୟ ଦ୍ୱାସୁପର୍ଣ୍ଣାର ଗୋଟିଏ ଡ଼ାଳରେ ବସିଥିବା ଦୁଇପକ୍ଷୀ ମଧ୍ୟରୁ ଏକ । 'ଶେଷ ମୁହୂର୍ତ୍ତରେ ଆସି / ଛୋଟ ସେ କଜଳପାତି / ପଚାରିଲା ଏଥର ପ୍ରସ୍ତୁତ ହୁଅ ଯିବା ପାଇଁ / ଭାସିଭାସି କାଗଜ ନାହାରେ ।' ଏଠାରେ ଅସରନ୍ତି ମୃତ୍ୟୁ ଚେତନାର ଆଲୋକ ପ୍ରତୀକରେ ହୋଇଛି ଉଦ୍‌ଭାସିତ । ଅଲୌକିକ ଓ ଅତୀନ୍ଦ୍ରିୟ ପ୍ରାଣର ଗତି ଶବ୍ଦ ବିଂବରେ କରାଯାଇଛି ଇନ୍ଦ୍ରିୟ ସଂଚାର । ବନ୍ଦ ଥାଏ ଝରକା ଓ ଦ୍ୱାର, 'ପ୍ରାଣ ଷ୍ଟଳତ ଜୀବିତ ମଂଦିରେ', କ୍ଷୀଣ ଅଙ୍ଗ ବନଝରଣାର / ଦୀପଶିଖା ଭଳି ଯିଏ ଥରୁଥାଏ / ... ପଂଚଭୂତ ପ୍ରାଣ ଧରି କରୁଥାଏ ଗତି ! ଆକାର ପ୍ରକାର ଯେତେ ପରିଚୟ ଏ ଦେହର / ନାମ ଅବା ଅହଂକାର ... ଅନ୍ଧାର ଦେବତା ଏଠି ଲୁଚିଯାଏ ।" 'ଅନ୍ଧାର' କ୍ଷଣିକତାର ପ୍ରତୀକ !

ପାହାଡ଼ ତା' ଡ଼େଣା ଖୋଲେ ନାହିଁ, ମାନବ ଅମୃତର ପୁତ୍ର, ଅମୃତ ଲାଭ କରେନାହିଁ । ଯଦିଓ, ତ୍ୱମେବ ପ୍ରତ୍ୟକ୍ଷଂ ବ୍ରହ୍ମାସ୍ମି । ତ୍ୱାମେବ ପ୍ରତ୍ୟାକ୍ଷଂ ବ୍ରହ୍ମବାଦିଷମ୍ ।

ତଥାପି ତୁମର କାଳ ଘଟିବ । ଅମୃତକୁ ମୃତ୍ୟୁ ତା’ ଗହ୍ୱର ଭିତରକୁ ଟାଣୁଛି । ନିରୂପାୟ ଅମୃତ । ଠିକ୍ ଯେମିତି, ବହ୍ନେର୍ଯଥା ଯୋନିଗତସ୍ୟ ମୂର୍ତ୍ତି ର୍ନ ଦୃଶ୍ୟତେ ନୈବ ଚ ଲିଙ୍ଗନାଶଃ । କାଷ୍ଠ ଭିତରେ ଅଗ୍ନି ଅଛି କିଂତୁ ଦୃଶ୍ୟ ହେଉନାହିଁ । ‘ପାହାଡ଼’ ବିଶାଳ ବ୍ୟକ୍ତିତ୍ୱର ସିଂବଲ୍, ବ୍ରହ୍ମମେତତ୍ । କିଂତୁ ନୁହେଁ ଆପ୍ତକାମ । ଢ଼େଣା ତା’ର କୌଣସି କାର୍ଯ୍ୟରେ ଆସେ ନାହିଁ । ସଂସାରର ଅଳୀକତାରେ ରତୁଚକ୍ରର ଆକର୍ଷଣରେ ତା’ର ଲିଭିଯାଏ ସବୁ ଦୀପ । ହରିବାବୁଙ୍କ ଅନ୍ୟ ଏକ ଅଭିବ୍ୟକ୍ତ ପଂକ୍ତି – “ଦ୍ୱାର ଦେଶ ଜଗିଥାଏ / ଅଣୁମାତ୍ର ଶାଶ୍ୱତ ଅଚଳ ।” ସ୍ମରଣ କରାଇଥାଏ ଶ୍ରୀମଦ୍ ଗୀତାର ‘ସ୍ଥାଣୁରଚଳୋଽୟଂ ସନାତନଃ ।’ (୨ୟ ଅ. ୨୪ ଶ୍ଳୋକ)

‘ସ୍ଥାଣୁ’ ପାହାଡ଼ର ପ୍ରତିଶବ୍ଦ ‘ଅଚଳ ଅୟଂ’ ସନାତନଃ’ରୁ ସ୍ପଷ୍ଟ ହୁଏ ଯେ ଗୋଟିଏ ଅବୋଧ୍ୟ ଶାଶ୍ୱତ ଆଧ୍ୟାତ୍ମିକତାର ଭୂମି ଉପରେ କବିଙ୍କ କାବ୍ୟିକ ଚେତନା ପ୍ରତିଷ୍ଠିତ । ପାଣ୍ଡିତ୍ୟର ଶିଖରସ୍ପର୍ଶୀ ତାହାଙ୍କ ବ୍ୟଂଜନା କରେ ସହୃଦୟ ପାଠକଙ୍କୁ ଚମକୃତ । ହୁଏତ ଏଇଥିପାଇଁ ଶ୍ରୀଅରବିନ୍ଦ କହିଥିଲେ ‘ଜୀବନ ପାଇଁ ଚେତନାର ପ୍ରସ୍ତୁତି କରେ କବିତା ।’ I.A. Richards ଗ୍ରହଣ କରିଥିଲେ  Poetry is thus is some degree a substitute for religion - not for the dogmas but for the practice of religion - in producing satisfactory states of mind. (The Modern Writer and His World, P. 385, by G.S. Fraser)

ଗୋଟିଏ ଆଧ୍ୟାତ୍ମିକ ଚେତନା ବୃହତ୍ତର ପରିଧିରେ ସମ୍ଭାବନାମୟ ଅର୍ଥରେ ଏକ କବିତାରେ ହୋଇଛି ରୂପ ପ୍ରାପ୍ତ । ହରିହର ମିଶ୍ରଙ୍କ କବିତା ନିରୋଳା ଆଧ୍ୟାତ୍ମିକ ଏବଂ ପୋଏଟ୍ରି ଅଫ୍ ଦି ସୋଲ୍ । ଊନବିଂଶ ଶତକରେ ମାଥ୍ୟୁ ଆର୍ଣ୍ଣୋଲଡ଼ କହିଥିଲେ - ‘genuine poetry is conceived and composed in the soul’ କିନ୍ତୁ ଏହା ନିଃସନ୍ଦେହ ଆର୍ଣ୍ଣୋଲଡ଼ ସୋଲ୍‌ର ସଂଜ୍ଞା କରିପାରୁନଥିଲେ ନିରୂପଣ । ଅଣସର ଘର ଅନ୍ଧକାରରେ ଯିଏ ସେବା ପ୍ରାପ୍ତ ହୁଏ ସିଏ କିଏ ? ସେ ସେହି ଢ଼େଣାଯୁକ୍ତ ପାହାଡ଼ ତ ? ମୌଳିକ ଧାରଣା ସମ୍ପନ୍ନ ଆର୍କିଟାଇପାଲ୍ କବି ହରିହର ମିଶ୍ର ତାଙ୍କ ଦୃଷ୍ଟିର ଏକ୍ସପ୍ରେସିଭ୍ ବଢ଼ୀ କରାଇ ଥାଏ ସୂଚିତ । ତାଙ୍କ ଫିଲୋସୋଫିକ୍ ଭିୟୁ ଅଟେ ତାଙ୍କ ସୋଲ୍ ଭିୟୁ ।

‘ଉଡ଼ିଯାଏ ଗେଣ୍ଡାଳିଆ’ କବିତାରେ ଆଉ ଗୋଟିଏ ପକ୍ଷୀ ଆସେ ଦୃଷ୍ଟିକୁ । କବିତା ଉନ୍ମେଷରେ କବି ବିସ୍ମିତ ଯେ କାହା ପଂଜୁରୀର ସେ ପକ୍ଷୀ, ‘ଦେଖିବା ଆଗରୁ ତାକୁ  / ଛୁଇଁବା ଆଗରୁ / ସେ ଡ଼ାକି ସାରିଥାଏ / କୋକେଇ ପାଇଁ ମାଲଭାଇ / ମୁଖାଗ୍ନି ପାଇଁ / ବିଦେଶରେ ଥିବା ବଂଶଧର ।’ ଏ ପକ୍ଷୀ ଭାରତୀୟ ମିଷ୍ଟିସିଜିମ୍‌ର ରହସ୍ୟମୟ ପକ୍ଷୀ । ଏ ପକ୍ଷୀ କାବ୍ୟିକ ପ୍ରତୀକ ନୁହେଁ, ଏକ ନିରୋଳା

Ambiguity । ଏହିଭଳି ଶବ୍ଦମାନଙ୍କୁ ଅନୁଭବ କରାଇବାକୁ ତଥା ବୁଝାଇବାକୁ ଉଇଲିୟମ୍ ଇମ୍ପସନ୍ ଲେଖିଛନ୍ତି ଖଣ୍ଡିଏ ବହି 'The structure of Complex Words' । ଗୋଟିଏ ଶବ୍ଦକୁ ଅଲଗା ଏକ ପରିବ୍ୟାପ୍ତ ଅର୍ଥରେ ଏଠାରେ କରାଯାଇଛି ବ୍ୟବହାର । 'ଦି ମିନିଂ ଅଫ୍ ମିନିଂ'ରେ ଏଭଳି ଶବ୍ଦକୁ ରିଚାର୍ଡ୍ସ କହିଛନ୍ତି, ଏହା ବିଶୁଦ୍ଧ ଭାବରେ ।

ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତିରେ ପକ୍ଷୀଙ୍କ ମହାତ୍ମ୍ୟ ପ୍ରବଳ । ପ୍ରାଣପକ୍ଷୀ, ଆତ୍ମାପକ୍ଷୀ ହେବାବେଳେ ପୁରାଣ ସାହିତ୍ୟରେ ଭଗବାନ ବିଷ୍ଣୁଙ୍କ ବାହନ ଗରୁଡ଼ପକ୍ଷୀ । ସକଳ ଐଶ୍ୱର୍ଯ୍ୟର ଅଧିଶ୍ୱରୀ ଦେବୀ ମହାଲକ୍ଷ୍ମୀଙ୍କ ବାହନ ପେଚକ ପକ୍ଷୀ । ବିଦ୍ୟାଦାତ୍ରୀ ବାଗ୍‌ଦେବୀଙ୍କ ବାହନ ଶ୍ୱେତମରାଳ । ଦେବ ସେନାପତିଙ୍କ ବାହନ ମୟୂର ଏବଂ ମହାପ୍ରତାପୀ ଗ୍ରହରାଜ ଶନିଶ୍ଚରଙ୍କ ବାହନ କାକ ବୋଲି ହୋଇଛି ବର୍ଣ୍ଣିତ । ପକ୍ଷୀକୁ ନେଇ ପ୍ରାଚୀନ ସାହିତ୍ୟ ଓ ସଂସ୍କୃତି ମୁଖରିତ । ସଂସ୍କୃତିର ନୂଆ ପର୍ଯ୍ୟାୟରେ ଏବଂ କବିତାର ନୂତନ ଆଙ୍ଗିକ କାଳରେ କବି ହରିହର ମିଶ୍ରଙ୍କର ଚେତନା ପକ୍ଷୀ ପ୍ରଭାବ ବିମୁକ୍ତ ନୁହେଁ । ନୁହେଁ ତାଙ୍କ ପକ୍ଷୀ ପାରମ୍ପରିକ । ବଦଳା ରହସ୍ୟମୟ ସଂସ୍କୃତିର ଅଂଶ ବିଶେଷ ତାଙ୍କ ପକ୍ଷୀ । ତାଙ୍କ ପକ୍ଷୀକୁ ଅବଲୋକନ କଲେ ଗୋଟିଏ ନୂଆ ଜଗତର ଚେତନା ତାହାର ଇତିହାସର ପୃଷ୍ଠା ଖୋଲି ଧରୁଛି ।

ଉର୍ଦ୍ଧ୍ୱାୟନ ଉଡ୍‌ଡ୍ରୀୟମାନ ଚୈତ୍ୟ ଶିଖର ପ୍ରତୀକ ପକ୍ଷୀ । ପୁଣି ପକ୍ଷୀ ନଭୋଗାମୀ, ଶୂନ୍ୟରେ ସନ୍ତରଣଶୀଳ ଏକ ସ୍ୱପ୍ନୀଳ ସାକାର ଆକାଙ୍‌କ୍ଷାର ପ୍ରତୀକ । ଆଗକୁ ଆସେ କବିତା 'ସ୍ୱଦେଶ ପକ୍ଷୀ' । "ମୁଁ କେଉଁଠି ମୁଁ କେଉଁଠି / କୁମ୍ଭାଟୁଆ ଡ଼ାକୁଥାଏ" । ଏଇ ଡ଼ାକର ଗୋଟିଏ ଦାର୍ଶନିକ ମାନ କ'ଣ ଚିହ୍ନିହିଁ ଉଠୁନାହିଁ? ଇତିହାସର ରହିଛି ଅନେକ କୁଶଳୀ ଗଠନ ପ୍ରକ୍ରିୟା, ନିମ୍ନ ସ୍ୱରରେ ଉଚ୍ଚାରିତ କରେ ଉଚ୍ଚାଭିଳାଷ ତାହାର ? ପଂକ୍ତିଟି ଦିଏ 'ମୁଁ କେଉଁଠି' ପ୍ରଶ୍ନର ଉତ୍ତର । ଏହା ଏକ 'supple confusions', ନମନୀୟ ଅସ୍ୱଚ୍ଛତା ।

'ସ୍ୱଦେଶ ପକ୍ଷୀ' କବିତା ହୃଦୟ ପଦ୍ମ କେବଳ ସୌନ୍ଦର୍ଯ୍ୟରେ ସୁବାସିତ ନୁହେଁ, ଡ଼ିକ୍ସନରେ ତା'ର ସାଂସ୍କୃତିକ ଉତ୍କଳର ଚାରୁଚିତ୍ରପଟ:

"ଆସିବାକୁ ଥିବା ଋତୁଟିଏ
ସୁମରି ସୁମରି କାନ୍ଦେ
ଛାଡ଼ିଥିବା ଗାଁ ତା'ର
ହଳଦୀ ବସନ୍ତ ଭଳି ଡ଼େଇଁ ଡେଇଁ

ଖୁଂପୁଥାଏ ଚୁମୁଥାଏ

ଝୋଟି ଆଉ ମାଣବସା ଚିତାର ପଦୁଅଁ।" (ହରିହର ମିଶ୍ରଙ୍କ କବିତା ୧୦୦୧, ପୃ. ୫୦୨)।

'ସ୍ୱଦେଶ ପକ୍ଷୀ' ପରବର୍ତ୍ତୀ ସ୍ୱର 'ପରଦେଶୀ ଚଢ଼େଇ' ; ଏ ଚଢ଼େଇ ବିଦେଶରୁ ଆସିଥିବା ଅଜବ ଚଢ଼େଇ। ଝାଉଁବଣରେ ଘୂରୁଥିବା ବ୍ୟାଧମାନଙ୍କୁ ମୁଗ୍ଧ କରେ ତା' ମୁକ୍ତିର ଠିକଣା। ଚମତ୍କାର ବ୍ୟଂଜନାରେ ମାନଚିତ୍ରରୁ ମାନଚିତ୍ର ଡ଼େଇଁ ଆସିଥିବା ପକ୍ଷୀ ତା' ରକ୍ତର ତାତି ଓ ଅନୁଭୂତିରୁ ସୂଚିତ କରେ ପୂର୍ବ ପକ୍ଷୀମାନଙ୍କ ଠାରୁ ସୁଚାଏ ଏକ ଅଲଗା ପକ୍ଷୀ। 'ସ୍ୱଦେଶୀ ପକ୍ଷୀ' ସହିତ ତା' ଅଳସୀ ମୂର୍ଚ୍ଛନାର ସାଦୃଶ୍ୟ ରହିଛି। ସିଏ ଅୟସୀ ପରୀ। 'ଏକ ହେବାର ଯେତେକ ବିଶ୍ୱାସ' ତା' 'ଇସାରା ଭିତରେ' ସ୍ପଷ୍ଟ କରିଦିଏ ପିକାଶୋଙ୍କ ଚିତ୍ରର ଅର୍ଥ। କବିତା ଏକ ଅବସୋସର ସ୍ୱର, ଅପହଂଚ ଓ ଅପ୍ରାପ୍ତିର ତୁଳସୀ। "ଆମଭଳି କବିଙ୍କୁ ଅନିଷା କଲେ / ବିମାନ ଘାଟିରେ ଥାଏ କେବଳ ଝାପ୍‌ସା କୁହୁଡ଼ି ଆଖିପତା ତଳେ।" 'ଘର ଚଟିଆ' କବିତାରେ ଏହି ନିଃସଙ୍ଗତାର ସ୍ୱର - 'ଏଥର ନିଜକୁ ଚୁଂବୁଥାଅ / ନିଜ ସ୍ୱପ୍ନରେ... / ଅନ୍ଧାରକୁ ଚୁମୁଥାଅ...' ଅନନ୍ୟୋପାୟ ଓ ଅସହାୟତାରେ ସାଂଘାତିକ ମାନବର ସଂପର୍କଶୀଳ ଚେତନା। ଦି ମିନିଂ ଅଫ୍ ମିନିଂ ଭିତରେ ଗୋଟିଏ ସ୍ପନ୍ଦନ ଉହ୍ୟ ରହିଛି, ତାହା ମାନବ ମନର ଅଭିଳାଷର ପକ୍ଷୀ। କବିତା ଖୋଜୁଛି ଅଭିବ୍ୟକ୍ତ କରିବାକୁ ସୌନ୍ଦର୍ଯ୍ୟ ଚେତନାର ଶୋଷକୁ, ତାହା କବିଙ୍କ ଅଭିଳାଷର ପକ୍ଷୀ। ବସ୍ତୁର ଅନୁପାତରେ ଅନ୍ତର୍ଦୃଷ୍ଟି ଯନ୍ତଟିଏ ପରି ପକ୍ଷୀର ମେଟାଫରକୁ ପରିଚାଳନା କରିଛି।

'ଘରଚଟିଆ' ଓ 'ପାରା ଘୁମର' ଆଉ ଦୁଇଟି ପକ୍ଷୀ ଏପିସୋଡ୍‌ର ନିନାଦ। 'ପାରା ଘୁମର' ରେ 'ଚକାଡ଼ୋଳା ଦୁଇଟି ଦୁଇଫାଳ ଶିଝା ଅଣ୍ଡା ଭଳି' ଉପମା ଓ ଉପମେୟକୁ କରିଛି ହୃଦୟସ୍ପର୍ଶୀ। ଏହାର ଉପସଂହାରରେ କୁହାଯାଇଛି, 'ପାରା ଗୁମୁରିବାର ଅନ୍ତ ନାହିଁ / ପ୍ରଗତି ମଇଦାନର ଗାଲେରିରେ / ମଂଦିରରେ / ମାର୍ବଲ କବରରେ ପାରା ଗୁମୁରୁଥାଏ / ପାର୍ଲାମେଣ୍ଟ ଓ ସଚିବାଳୟରେ / କାକୁସ୍ତରେ ଅବା ତାସ୍ୱଲ୍ୟରେ।'

ପାରା ଗୁମୁରା ଏଠାରେ ଗୋଟିଏ ସାଦା କଥା ନୁହେଁ। ପ୍ରଗତି ମଉଇଦାନରୁ ଯାହା ପହଂଚେ ପାର୍ଲାମେଣ୍ଟରେ କିଂବା ମନ୍ଦିରରୁ ସଚିବାଳୟରେ ତାହା ଏକ ଅସାଧାରଣ ଘଟଣା। 'Oh, do not ask, what is it? Let us go and make

our visit. (The love song / T.S. Eliot)' ଦାର୍ଶନିକ ରଜନୀଶ ତାଙ୍କ 'ଦି ୱେ ଅଫ୍ ସୁଫୀ'ରେ ମତ ରଖିଛନ୍ତି, 'Poetry is an intoxication. Poetry makes one drunk with poet. But only drunkards know it, what exactly it is. Even those who know it can not put it in to words. Let is become an experience, let us not only discuss it let us go in to it.' ଏହାର ସୌନ୍ଦର୍ଯ୍ୟକୁ ଉପଭୋଗ କର । ସୌନ୍ଦର୍ଯ୍ୟ ହିଁ ଜଣେ ଯୁବତୀର ଯୌବନ ପରି କବିତାର ଐଶ୍ୱର୍ଯ୍ୟ । ଅବଗାହନରେ ହୁଏ ତାହାର ଭୋଗ । କବିତା ଶବ୍ଦର ଅର୍ଥାନ୍ତରର ରୂପ । ଅର୍ଥାନ୍ତର ସହିତ ଅର୍ଥର ସଂପର୍କ ଅପରିଚିତ । ଏହି ବହିର ଅଷ୍ଟମ କବିତା 'ଅତ୍ରି', ବାଘମାରୀ', ଏହା ଏକ ଅସାଧାରଣ କବିତା । ନନ୍ ଏକ୍ସପ୍ଲେନ୍ ଷ୍ଟାଇଲ୍‌ରେ ଶବ୍ଦରେ ସୌନ୍ଦର୍ଯ୍ୟର ବର୍ଷା । 'ବାଘମାରି', ସେ ଯାଇଛନ୍ତି ଯେ ଯାଇଛନ୍ତି / ପାରିଧି କରିବାକୁ ସେ ପୋଖରୀକୁ', ବୟାନ ଭିତରେ ଇମୋସନ୍‌ର ବିମ୍ବ କି ସୁନ୍ଦର ଉତୁରି ଆସିଛି । 'ଅତ୍ରି', 'ପଥର ପ୍ରସ୍ରବୁଛି' / ଜହ୍ନରାତିରେ ଉଜ୍ଜ୍ୱଳ ବୁଦ୍‌ବୁଦ୍‌ରେ / ଜଳୁଛି ଗନ୍ଧକର ନୀଳ ଅଭ୍ୟନ୍ତର / ବାଂଫିକୁ ମୁହଁ ଗଳେଇ ଶୀତ ରାତିରେ / ଡ଼ାକ ଶୁଭୁଛି "ଜଲ୍‌ଦି ଆସ ଭାତ ଫୁଟିଲାଣି" । ଭୂଗୋଳ ଯେତେବେଳେ କବିତା ହୋଇଯାଏ, ତାହା ହୋଇଯାଏ 'Impression Art' । ବସ୍ତୁର ସବିଶେଷ ଚିତ୍ରଣ ନକରାଯାଇ କୌଣସି ଏକ ମୁହୂର୍ତ୍ତର ଆଲୋକ ଛଟାରେ ଦିଶୁଥିବା ଅବସ୍ଥାର ଚିତ୍ରଣ ଏହା । ସେହିଭଳି ବର୍ଷା ଋତୁରେ 'ନିମାପଡ଼ା'ର ଭୌଗୋଳିକ ଦୃଶ୍ୟ: ଜଳରୁ ବାହାରି କେଉଁ ବରାହର ଦନ୍ତ ପରେ / ହସି ଉଠେ ଉଜ୍ଜ୍ୱଳ ମେଦିନୀ ! ଚାରିପଟ ନଦୀ ନାଳ ଜୋର, ଜଳମୟ, ବଳୟ, ମଝିରେ ତା' ଅରାଏ ଭୂମି ଯେମିତି ପଦ୍ମବନ !

ଏତେ ସୁନ୍ଦରୀ ଏ ଭୂମି, 'ନିମାପଡ଼ା ଜାଣେ କି ନଜାଣେ ତାହା / ପ୍ରାଚୀର ମେଖଳା ।' ପ୍ରାଚୀ, ପ୍ରାଚୀ ନଦୀ ତା'ର ମେଖଳା । ନିମାପଡ଼ାର ପୌରାଣିକ ଇତିହାସ କାବ୍ୟିକ ସ୍ମୃତିପଟରେ ବସାଇଛି ତା'ର ଆଲେଖ୍ୟ । 'ସେ ପାଖେ ସୂର୍ଯ୍ୟର ରଥ' ବୋଧହୁଏ କୋଣାର୍କ । 'ଏପାଖରେ ଘାଟଦେବୀ... ମଙ୍ଗଳା' ସାଧବ ବାଣିଜ୍ୟକଙ୍କ ଅରାଧ୍ୟା । ଆଗକୁ କାକଟପୁର ପୀଠ । ନିମ୍ନ ଉଦ୍ଧୃତି ସ୍ପଷ୍ଟ କରେ ଅସଂଖ୍ୟ ଗଳ୍ପର କିମ୍ବଦନ୍ତୀ, ପ୍ରଖର ପାଣ୍ଡିତ୍ୟର ଚୌହଦୀ, ମିଥ୍ ବିସ୍ତାରିତ କରିଛି ତା' ବୁନିୟାଦି:

"ସେ କେଉଁ ଘୋଟକୀ
ଅଭିଶପ୍ତା ସ୍ୱର୍ଗର ଉର୍ବଶୀ
ହଜିଥିବା ଘୁଂଗୁରର ଲୟ ଖୋଜି
କାଂଦେ ଏକା ବସି

ଅଶ୍ରୁର ଦର୍ପଣ ତା'ର
ପୁଣ୍ୟତୋୟା ଚନ୍ଦ୍ରଭାଗା
ଅପହୃତା ଗୁରୁ ପତ୍ନୀ
କେଉଁ ତାରା କେଉଁ କଳାରାତି
ପରଦା ଉହାଡ଼େ ଯା'ର
ଲୁଚେ ଅରୁନ୍ଧତୀ ।" (ନିମାପଡ଼ା, ବିସ୍ମିତ ମୁଁ, ବିସ୍ମୃତ ମୁଁ)

ରାମକୃଷ୍ଣ ମିଶନ୍‌ଠୁ ଏମାର ମଠ ପରି 'ନିମାପଡ଼ା'ରୁ 'ଭୁବନେଶ୍ୱର' ପାରମ୍ପରିକ ଓଡ଼ିଆ କବିତାର ମନ - ଚୈତନ୍ୟ ସମ୍ବାଦରୁ ସଂଗୃହୀତ 'ମନୁଆ' ଚରିତ । ମନୁଆକୁ ବୁଝାଇ ଦେଉଛନ୍ତି ସାଆନ୍ତ, 'ଏବେ ଯେଉଁଠି ମୁଁ କବିତା ଲେଖୁଥିଲି / ସେଠି ନାହିଁ ।' ଭୁବନେଶ୍ୱର ବଦଳୁଛି ନିଶାଖୋର ଭସାମେଘର ଛାଇରେ, 'କାହାର ହାତ ପବନଭଳି / ଶଂଖ କଂଢ଼େଇଟିଏ ବେକରୁ / ଭିଡ଼ି ନେଉଛି ନକଲି ହାର' । ସହିଷ୍ଣୁ ବିଧବା ଭଳି ହସୁଛି ଭୁବନେଶ୍ୱର ।

'ଭୟ କ'ଣ / ଏହା ହିଁ ତ ଭବିଷ୍ୟତ !' 'ସଭ୍ୟତାର ବିକାଶ, ବିପଣନ ସଂସ୍କୃତିର ପ୍ରାଚୁର୍ଯ୍ୟ, ସତ୍ତ୍ୱେ, ଅନ୍ଧାର ଓ କୁହୁଡ଼ିରେ ଜଳିଯାଉଛି ଚଣା ଆମ୍ବ ସୁନାର ବଉଳ ! ଫାଳେ ମୁହଁ ଆକାଶରେ ଝଟକୁଛି ତ ଫାଳେ ଦିଶୁଛି କଦାକାର । 'ଭୀଷଣ ଅନ୍ଧାର' ରାତ୍ରି ନଥିବା ନଗରୀରେ କବି କରିଛନ୍ତି ଅନୁଭବ ।'

ଆମକୁ ପ୍ରାଚୀନ ଶିଳାଲେଖ ସମୃଦ୍ଧ 'ଜଉଗଡ଼' ଯେମିତି ଇତିହାସର ଗଡ଼ । 'ନରାଜ' ଦେଇଛି ଗୋଟିଏ ନୂଆ ଇଂପ୍ରେସନ : ଏବେ ସେଠି କନ୍ଦର୍ପର ଘର / ଡ଼ାକ ବଂଗଳା / ସତେ ଅବା କେଉଁ ବିଦେଶିନୀର / ସଫେଦ ବ୍ରେସିୟର... । ଡ଼ାକ ବଂଗଳାରେ ଆଉ ହୁଏ କ'ଣ, 'ସୋଫା ଓ କୁସନ / ... ମଦ ଗନ୍ଧ କୁକୁଡ଼ାର ଝୋଳ !' ସମକାଳ ସାମାଜିକ ଇତିହାସର ଫର୍ଦ୍ଦମାନଙ୍କୁ ଭେଟିବାକୁ 'ନରାଜ' ଯାଇଥିଲେ ଯେମିତି କବି ହରିହର ମିଶ୍ର । ଏକବିଂଶ ଶତାବ୍ଦୀ ଆତଙ୍କବାଦର ଶତାବ୍ଦୀ । ଟେକ୍‌ନୋଲଜିର ଶତାବ୍ଦୀ । ଟେରର୍, ଟେଲିଫୋନ୍ ଓ ଟେଲିଭିଜନ୍‌ର ସଭ୍ୟତା । 'ଚୁପ୍, ରିଚି ଶୋଇଛି' କବି ଆଙ୍କିଛନ୍ତି ସମକାଳ ଭୟାବହତାକୁ, ମାନବବୋମା ମାଧ୍ୟମରେ ଇତିହାସର ଶୋଣିତ ସିକ୍ତ ବର୍ଣ୍ଣମାଳାକୁ : ବରଂ ଦଶରା କି ଦିବାଲିର / ରାବଣ ଭଳି ଜଳି ଯିବି / ଅଣ୍ଟାରେ ବନ୍ଧା ହୋଇଥିବା ମୋ ବୁଲେଟ୍ ବେଲ୍ଟରେ / ଟାଇମ୍ ବମ୍ ବାନ୍ଧି ଦେଇଥିବି ରିମୋଟ୍‌କୁ ତାକୁ / ନହେଲେ ପ୍ରୀତିବର୍ଣ୍ଣାକୁ.... । ଏଠି କବିତା ତାଙ୍କର ଶବ୍ଦର ସୁମନ ନୁହେଁ, ଏଠାରେ କବିତା ତାଙ୍କର ତ୍ରିକାଳ ସମନ୍ୱିତ ତ୍ରିଭଙ୍ଗିମା ଶବ୍ଦରେ ତାଙ୍କର ସଂଚରିଛି ସମକାଳ ସହିତ ଜୟପୁର, ଶିଶ୍

ମହଲ ଓ ରାଜପୁତ୍‌ର ଅତୀତ । କବିତା ତ ସବୁବେଳେ ନିରୁତା ଭବିଷ୍ୟତ, ଦେଇଛି ବୟାନ୍ । ଜୀବନର ବୟାନ୍, ଅନୁଭୂତିର ସାକ୍ଷୀ, ଜଣେ ପ୍ରୀତିପର୍ଣ୍ଣା ତାକୁ ଲିପିବଦ୍ଧ କରି ତା' ଚେତନାର ଲକ୍‌ରରେ ସାଇତି ରଖିଛି ।

ମଝିରେ 'ଖଣ୍ଡାଧାର', 'ଗନ୍ଧମାର୍ଦ୍ଦନ', 'ସାତକୋଶିଆ', 'ଚନ୍ଦ୍ରଭାଗା', 'ନୀଳଗିରି', 'ସିଦ୍ଧମୂଳ' ଓ 'ମଶୌରୀ' ଗଢ଼ା ହୋଇଛି ସୃଜନ ବିଭୋର କବିଙ୍କ କୋମଳ ଅଙ୍ଗୁଳିର ମୃଦୁ ସ୍ତବକରେ । ଅସ୍ତ ଆକାଶର ପ୍ରଚ୍ଛଦ ପରି ଫୁଟିଛି ଇତିହାସ, ଦେଇଛି ଜହ୍ନ ଜାଣିଥିବା ଆସୁଥିବା ସିଜନ୍‌ର ଠିକଣା । ଗୋଟିଏ ଅବଦମିତ ଅତୃପ୍ତି କଳା ପ୍ରବଣତାରେ ଭିଜି ପୁରାଣ, ପୁରାବୃତ୍ତ, କିମ୍ବଦନ୍ତୀ ଓ ଇତିହାସକୁ ଗୋଟିଏ ସୂତ୍ରରେ ବନ୍ଧନ କରିଛି । ତାଙ୍କ ଖଂଜା ଶବ୍ଦ ମଣ୍ଡଳ ବୈଚିତ୍ର୍ୟ ଭିତରେ ରଖିଛି ଯେଉଁ ବୈଶିଷ୍ଟ୍ୟ ତାକୁ ଦେଖିବା ପାଇଁ ଆଖିକୁ ପ୍ରସ୍ତୁତ କରାଇବାକୁ ହେବ । ହୃଦୟର କବାଟକୁ ଉନ୍ମୁକ୍ତ ନରଖିଲେ ଚନ୍ଦ୍ର କିପରି ପ୍ରକୋଷ୍ଠ ମଝିକୁ ଆସିବ ?

ଯେଉଁ ହିଷ୍ଟ୍ରୀ ସର୍ଭିଟ୍ୟୁଡ୍, ସେହି ହିଷ୍ଟ୍ରୀ ପୁଣି ଫ୍ରିଡ଼ମ୍, ଯେଉଁ ଭୌଗୋଳିକ ପରିବେଶ ବନ୍ଦୀ କାବ୍ୟିକ ତଲ୍ଲୀନତା ହୋଇ ବିଦ୍ୟମାନ, ତାହା ପୁଣି ସ୍ୱାଧୀନ କାବ୍ୟିକ ଅବତରଣ ହୋଇ ହୋଇଛି ରିଡ଼ିମ୍ । ଇତିହାସର ରହିଛି ଅନେକ ଗଠନ ପ୍ରକ୍ରିୟା କୌଶଳ । ସମୟହୀନ ମୁହୂର୍ତ୍ତର କିଛି ସୌନ୍ଦର୍ଯ୍ୟବର୍ଦ୍ଧକ ଚିତ୍ର (ଲିଟିଲ ଜିଡ଼ିଂ, ୫ ମ ପର୍ବ, ଇଲିୟଟ) । 'ପାହାଡ଼ର ଡ଼େଣା'ରେ ମୌଳିକ ସୃଷ୍ଟିରେ କବି କରିଛନ୍ତି ଅଙ୍କିତ । ତାଙ୍କୁ ଅଭିଳାଷ ତାହାଙ୍କ କୃତିତ୍ୱ ପ୍ରତି ପାଠକଙ୍କୁ କରିଛି ପଥ ପ୍ରଦର୍ଶିତ । ସାତକୋଶିଆର ନୀଳ ଆଖି ଓ କିମ୍ବିରିଣୀ କେବଳ ନୁହଁନ୍ତି, ବଂର ଧାବମାନ ଚନ୍ଦ୍ରଭାଗାର ଆଲୋକର ନଦୀ ପାହାଡ଼ ସ୍ଥିରତାରୁ ସ୍ୱାଧୀନ କରିଦେଇଛି ପ୍ୟାସେଜ୍‌କୁ । ଏଠି ଇଲିୟଟଙ୍କ କଂଟ୍ରାଇଭ୍ କରିଡ଼ର ନାହିଁ, ଯାହା ଅଛି ତାହା 'ମୋ ମାଟି ମୋ ସ୍ୱପ୍ନ', (ହରିହର ମିଶ୍ରଙ୍କ ୧୦୦୧ କବିତା, ପୃଷ୍ଠା ୫୧୪ – ୫୧୫) । 'ନଈକୂଳେ ସ୍ୱପ୍ନ ବଂଚିବାର !' ଭାରତୀୟ ସଂସ୍କୃତି ପଂଚନଦୀ ଅବବାହିକାର ସଂସ୍କୃତି । କବିଙ୍କ ଦୃଷ୍ଟିରେ 'ଚନ୍ଦ୍ରହାସୀ ମାଟି ମୋର' ।ଯେଉଁଠି ଆଲୁଅର ସମୁଦ୍ରକୁ ଖୋଜି ନଈ ଯାଏ ଗହ୍ୱରର ଅନ୍ଧାରରେ ହଜି । ଅନ୍ଧାର ସ୍ଥିର ବା ଅସ୍ଥିର, ସ୍ଥାୟୀ କି ଅସ୍ଥାୟୀ ଜାଣି ହୁଏନାହିଁ । ତେବେ – 'ପ୍ରବାହ ହିଁ ସୃଷ୍ଟି, ଜୀବନ ହିଁ ଗତି / ସ୍ରଷ୍ଟାର ଚକ୍ରବତ୍ ଦୃଷ୍ଟି /କେଉଁଠି ସମୟ ସ୍ଥିର' (ନିଶ୍ଚଳ ଚିତାଳି, ପୃଷ୍ଠା ୫୧୬) । କବିଙ୍କ ବିଭୋର ପଣ ତା'ରି ଉପରେ କେନ୍ଦ୍ରୀଭୂତ । ଇତିହାସର ସେହି ନୀଳଗଣ୍ଡ ଭିତରେ କବିତା ନାଭିବୃତ୍ତର ସ୍ପନ୍ଦନ କରାଏ ପ୍ରାଜ୍ଞଜନଙ୍କୁ ଆନନ୍ଦେ ଅଧିର ।ପାହାଡ଼ ଓ ନଦୀ ପ୍ରକୃତିର ଚିପଚିହ୍ନ । ଭୌଗୋଳିକତା (ପ୍ରକୃତି) କାବ୍ୟିକତାର ଯୌବନ, କାବ୍ୟିକ ସୃଜନ ପ୍ରେରଣା, ମନକୁ ଭାବନାରେ କରାଏ ଉତାଳ ।

# ଚିରକାଳ ସଂପଦରେ ବଦଳିଥିବା କ୍ଷଣ ସୌନ୍ଦର୍ଯ୍ୟର ବସ୍ତୁବୋଧ

## ('ଧୂଳି ମାଟିର ସ୍ୱର୍ଗ' ରଙ୍ଗ, ବ୍ୟଞ୍ଜନା ଓ ଶୃଙ୍ଖଳାର ଅନୁଭବ)

ଏକବିଂଶ ଶତକ ପ୍ରଥମ ଦଶକ ସରି ସରି ଆସୁଥାଏ, ସ୍ମୃତିର ଗନ୍ତାଘର ଭର୍ତ୍ତି, କେତକେତେ ସୁଖ ସ୍ମୃତି ଓ ଶୋକ ସ୍ମୃତି ବି ନୁହେଁ କମ୍! ମୋଟ ଚାଳିଶଟି କବିତା, କବି ହରିହର ମିଶ୍ରଙ୍କ 'ଧୂଳି ମାଟିର ସ୍ୱର୍ଗ'! ଓସ୍କାର ଓ୍ୟାଇଲ୍ଡଙ୍କ ଚରିତ୍ର କହିଥିଲା ସ୍ୱର୍ଗ କ'ଣ ମୁଁ ଜାଣି ନାହିଁ, ମତେ ଆପଣ ଆଉ କେଉଁ ନରକକୁ ପଠାଇବେ, ମୁଁ ଯେଉଁଠିଥିଲି ତାହା ନରକ! ଶିଳ୍ପୀ ଭାନ୍‌ଗୋଘ୍ କହିଥିଲେ, ମୁଁ ଦେବତାକୁ ଦେଖି ନାହିଁ, ଦେଖିଛି ମଣିଷର ଆଖିକୁ। ଦେବତାର ମୂର୍ତ୍ତି ମୁଁ ଆଙ୍କିପାରିବିନି, ଆଙ୍କିଛି ଶ୍ରାବଣ! ମଣିଷର ଆଖି ଭିତରେ ଥାଏ ବିରହ ବିଷାଦ, ସୁଖର ନବମେଘ ଓ ଶୋକର ଅଲିଭା ଶ୍ରାବଣ! ବିରହ ବିଚ୍ଛେଦ କତୁରୀରେ କାଟିଥାଏ କଲିଜାକୁ, ସୁଖର ନବମେଘ ଅମାପ ପୁଲକରେ ନଚାଇଥାଏ ପ୍ରାଣର ମୟୂରୀକୁ ଏବଂ ପ୍ରିୟଜନ ବିୟୋଗ ଦୁଃଖ କେତେ ନିଦାରୁଣ, କେତେ ଅସହ୍ୟ, ସହିବାକୁ ପଡ଼ିଥାଏ ତାକୁ। କିନ୍ତୁ କବି...?? ସବୁ ସହ୍ୟ କରେ କବି ଏବଂ ଶୋକକୁ ସିଏ ସାରସ୍ୱତ ସୁଖରେ ବଦଳାଇ ଦିଏ! ସୁଖକୁ ସିଏ ମୁକ୍ତା କରିଦିଏ, ଶବ୍ଦ ମୁକ୍ତା ଏବଂ ତାକୁ କରିଦିଏ ବିତରିତ। ବିଚ୍ଛେଦ ସବୁ କବିଙ୍କ ସହଜାତ। ଏହି

ଭାବ ତ୍ରୟ କବି ପ୍ରାଣକୁ ସଂତପ୍ତ ନ କରୁଥିଲେ କବିତାର ମଧୁ ନିର୍ଝରି ଆସୁନଥାନ୍ତା ! ଶେଲୀ ଲେଖିଛନ୍ତି, Poetry is ever accompanied with pleasure: କବିତା ନିଶ୍ଚିତ 'ଟେମ୍ପୁଲ ଅଫ୍ ଡ଼ିଲାଇଟ୍' ଏବଂ ତତ୍ ସହିତ 'Veil'd Melan Choly' ଅନ୍ୟ ପକ୍ଷରେ, ସ୍ୱୀକାର କରିଛନ୍ତି କୀଟସ୍ ! Odeରେ ତାଙ୍କ ଯଂତ୍ରଣା ନିର୍ଝରିଛି ଏମିତି, କବି ବି ଜଣେ ସାଧାରଣ ମଣିଷ ସିଏ ସାଧାରଣତ୍ୱ, ବ୍ୟର୍ଥତା, ହତାଶା, ଅସ୍ଥିରତା ଓ ଉଦାସୀନତାରୁ ନିଜକୁ ମୁକ୍ତ କରିପାରେ ନାହିଁ । ସୁଖରେ ପୁଲକ ଜୁଡ଼ୁବୁଡ଼ୁ ହୁଏ ଏବଂ ଦୁଃଖରେ ଦୋହଲି ଯାଏ ! ପ୍ରେମର ଅତଳ ଗଭୀରରେ ତାର ଅବଗାନ ରୁଚି ତା' ସ୍ୱାଧୀନତା ଓ ମୁକ୍ତ ସ୍ୱଭାବକୁ କରୁଥାଏ ପରିପ୍ରକାଶ । ପ୍ରେମ ହିଁ ତାକୁ କରିଥାଏ ନିର୍ଭୀକ ! ଜଣେ ନିର୍ଭୀକ ଓ ସ୍ୱାଧୀନ ନହେଲେ ସ୍ୱଚ୍ଛ କରିପାରିବନି ଆତ୍ମପ୍ରକାଶ ! ପ୍ରେମିକ ନହେଲେ ଅଙ୍କୁରିତ ହୁଏ ନାହିଁ କବିତ୍ୱ !

କବିର ପ୍ରେମିକା କବିତା ! କବିତା ତା'ପ୍ରେମ ଏବଂ କବିତା ତା ଆତ୍ମା । ମୁଖବନ୍ଧରେ କବି ହରିହର ମିଶ୍ର କରିଛନ୍ତି ଉଲ୍ଲେଖ - ପ୍ରେମ କେବଳ ମନ ସର୍ବସ୍ୱ, ଦେହ ସର୍ବସ୍ୱ ଏପରିକି ନାରୀ ସର୍ବସ୍ୱ ନୁହେଁ । ଅବକ୍ଷୟ ଓ ଅଭ୍ୟୁଦୟମୁଖୀ ଚେତନାରେ ଦୋଳାୟିତ ତଥା ନୈସର୍ଗିକ ଆନନ୍ଦର ଉପାସନା କରିବାର ମୁକ୍ତ ମାଧ୍ୟମ । ପ୍ରେମ ମୋ ମନର ପ୍ରାର୍ଥନା ଗୃହ । (ଧୂଳିମାଟିର ସ୍ୱର୍ଗ, ଅନ୍ତରଙ୍ଗ କବିତା (ମୁଖବନ୍ଧ), ହରିହର ମିଶ୍ର) । କବିତା ଲିଖନ, ଚିନ୍ତନ ଓ ପ୍ରକାଶନ ବ୍ୟତୀତ କବି ହରିହର ମିଶ୍ରଙ୍କ ଭିତରେ ଅଲଗା ଏକ ଅନୁଭବ ସଂଚିତ ଯେ ସିଏ କବିତାକୁ ନେଇ ଜୀବିତ ! The way of Sufi ରେ ଯୋଗୀ ରଜନୀଶ ବ୍ୟକ୍ତ କରିଛନ୍ତି, Poetry is a way of living. ଜୀବନ ପ୍ରତି ଏହି ଧନ୍ୟବାଦ କେମିତି ଘଟେ, ସେହି ବହିରେ ଆଲୋଚିତ । 'There is communion' (The way of sufi, page 40-41) ସ୍ପଷ୍ଟ କରାଯାଇଛି,...What is poetry? Just a certain arrangement of words? It is not. It is something that happens in a certain arrangement of words, but it is more than the certain arrangement of words itself. It is not grammar, it is not language - It is something transcendental. It is provoked by the words. The words are used as an occasion for the poetry to happen.

କବିତା ଏକ ଗାଢ଼ ନୀରବତା, କବି ଜାଣନ୍ତି ତାହାର ହୃଦୟ, ପ୍ରାଣ ଓ ଆତ୍ମାଙ୍କୁ ! ଏହାର ଅଦୃଶ୍ୟ ପରିମେୟ ପରିସର (Dimension), ଯଥା - ଦୈର୍ଘ୍ୟ, ପ୍ରସ୍ଥ, ସ୍ଥୁଳତା ଓ କ୍ଷେତ୍ରଫଳ ବା ଆକୃତି ପ୍ରଭୃତି । କବିତା ଏକ ପୂର୍ଣ୍ଣତା । କବି

ତହିଁରେ ଖାଲି ବଂଚନ୍ତି ନୁହେଁ, He sleeps in poetry, his sleep is a kind of poetry. He relaxes into sleep as if he is relaxing in to lap of poetry. He eats poetry, he drinks poetry, he walks in poetry; He breathes in poetry, he breathes poetry. It is just a feeling presence. (The way of sufi, by Osho)

ଶିଶୁ କ୍ଷୁଧିତ ହେଲେ କ୍ରନ୍ଦନ କରେ, ଆହାର ପ୍ରାପ୍ତି ପରେ ଚୁପ୍ ହୋଇଯାଏ, ଠିକ୍ ସେମିତି କବି ପ୍ରାଣରେ ଟିକିଏ ଠୋକର ବାଜିଲେ, ବାହ୍ୟ ଦେହ ଆଘାତସ୍ଥଳରୁ ଶୋଣିତ କ୍ଷରିବା ପରି କ୍ଷରି ଆସିଥାଏ କବିତା ! ହରିହର ମିଶ୍ର ଉଲ୍ଲେଖ କରିଛନ୍ତି...ଦୁର୍ଭାଗ୍ୟ ମତେ ଅସ୍ଥିର ଓ ବ୍ୟାକୁଳ କରିପକାଏ । ଲିଖିତ ନହେଲେ ତ ସାହିତ୍ୟ ନୁହେଁ, କିନ୍ତୁ ଅଲିଖିତ ଭାବେ ରହସ୍ୟ ଆତ୍ମ ପ୍ରକାଶ କରିବାକୁ ଅକ୍ଷର ପାଏ, ଶବ୍ଦ ପାଏ । ପୁନଶ୍ଚ - 'ବେଳେବେଳେ ଅନାହୂତ ଭାବେ ଶବ୍ଦମାନେ ଆସି ଗୁଂଜରଣ ଆରମ୍ଭ କରି ଦିଅନ୍ତି ଓ ବ୍ୟଗ୍ର ହୁଅନ୍ତି ଗୋଟିଏ ଧାଡ଼ିରେ ବୋଲ ମାନି ଶୃଙ୍ଖଳାବଦ୍ଧ ହୋଇ ରହିବା ପାଇଁ । ତା'ରି ଭିତରେ ମୋର ଅପ୍ରକାଶ୍ୟ ଜଗତର ଦୃଶ୍ୟ ହଠାତ୍ ଦିଶିଯାଏ ନାନା ବ୍ୟଞ୍ଜନାରେ, ନାନାଦି ଶବ୍ଦ ଭିନ୍ନଭିନ୍ନ ରଙ୍ଗରସରେ ସଜେଇ ହୋଇ । ଏପରି ଅବସ୍ଥା ସୃଜନ କାଳରେ ନ ଆସିଲେ କବିତାଟିଏ ସୃଷ୍ଟିହୁଏ ନାହିଁ' (ଅନ୍ତରଙ୍ଗ କବିତା, ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା -୪୭୨)

'ଧୂଳି ମାଟିର ସ୍ୱର୍ଗ' ନୂଆ କିସମର ଗ୍ରନ୍ଥ । ଏଥିରେ ସଂକଳିତ ସମସ୍ତ କବିତା କାହାକୁ ନା କାହାକୁ ଉତ୍ସର୍ଗୀକୃତ ଏବଂ ସମସ୍ତ କବିତା ଇଣ୍ଡିଭିଜୁଆଲ୍ କାହାପାଇଁ ନା କାହା ପାଇଁ ରଚିତ ।

'ନନା ବୋଉ ଓ ଅନ୍ୟାନ୍ୟ ସାନପିଲା' ପରେ ଆସେ 'ହାତୀ ଫିଟିଗଲା' ମାନ୍ୟବର କବିଙ୍କ ପିତା ଚିନ୍ତାମଣି ମିଶ୍ରଙ୍କ ସ୍ମୃତି । ପାଖକୁ ପାଖ ତ୍ରୟୋଦଶଟି ବିୟୋଗ ଶୋକ ଶବ୍ଦ ଶିଳ୍ପ । ଏହା ପରେ 'ନଥିବା ଭଉଣୀ ପାଇଁ ରାକ୍ଷୀ' ଏବଂ 'ଜଣେ ହବିଷ୍ୟାଳୀ ବିଧବା ମାଆଙ୍କୁ' ଶୀର୍ଷକ ଦୁଇଟି କବିତା ପରେ ପୁଣି ପାଞ୍ଚଟି ବିୟୋଗ କବିତା ସଂକଳିତ । ଧର୍ମପତ୍ନୀଙ୍କୁ ନିବେଦିତ 'ମାଧ୍ୟାକର୍ଷଣ', ନିଜର ଷଷ୍ଠୀ ପୂର୍ତ୍ତି ଉପଲକ୍ଷେ ରଚିତ 'ଅର୍ଦ୍ଧାଙ୍ଗିନୀ' ପରେ ୧୯୯୯ ମହାବାତ୍ୟା ପ୍ରପୀଡ଼ିତ ସ୍ମୃତି ! ଶେଷ କବିତା ତିନୋଟି ଯଥାକ୍ରମେ ସ୍ୱର୍ଗତ କବି କୈଳାସ ଲେଙ୍କା, ସଚ୍ଚିଦାନନ୍ଦ ରାଉତରାୟ ଏବଂ ଗୁରୁପ୍ରସାଦ ମହାନ୍ତିଙ୍କୁ ନିବେଦିତ ।

କବିତାକୁ ଆକୃତି ଦେଇଛି ସଂପର୍କ । ଚୀନ୍ କବି Wen Fu ଙ୍କ ପଂକ୍ତି ମ୍ୟାକଲିସ୍ କରିଛନ୍ତି ସଂଗ୍ରହ – A poem begins not in isolation but in relationship. କବିତାର କେନ୍ଦ୍ରରେ 'ମୁଁ' କର୍ତ୍ତା, ଚାରିପଟ ସଂପର୍କର ବଳୟ, ଶବ୍ଦର ବଳୟ ଏବଂ ଭାବର ବଳୟ ! ଅନ୍ତର୍ବେଦନାର ଅନ୍ଧକାର ଗର୍ଭରୁ ଗୋଟିଏ ନବ୍ୟ ଉଷାର ଉଦୟ ରୂପେ ଘଟିଛି କବିତାର ଅବତରଣ ।

ଶବ୍ଦର ନିଜସ୍ୱ ପ୍ରାଣ ଶକ୍ତି ରହିଛି । ସ୍ପଷ୍ଟ ଅଭିଜ୍ଞତା, ଦର୍ଦନାକ ଅନୁଭୂତି, ଜୀବନ ନିର୍ବାହର ସ୍ୱତଃସ୍ଫୂର୍ତ୍ତ ଚିତ୍କାର, ଏଗୁଡ଼ିକ ପ୍ରାଣ ପ୍ରବୃତ୍ତିକୁ ଏପରି ପୀଡ଼ିତ କରନ୍ତି ଯେ ସ୍ୱତଃ ଚେତନା ଜୀର୍ଣ୍ଣ ହୋଇ ନିଗିଡ଼ି ଆସେ କବିତା । କବିଙ୍କ ଉର୍ଦ୍ଧ୍ୱମୁଖୀ ମାନସିକ ଅବସ୍ଥା ବହୁମୁଖୀ ଅବରୋଧ ଭିତରେ ଥାଏ ଅବରୁଦ୍ଧ । ଯେତେବେଳେ ସେ ଘଟଣା ଅନୁଭବରୁ ଆବେଗଟିଏ ପାଏ, ପାଏ ଏକ ଛିଦ୍ରବାଟ, ସେଇ ବାଟ ଦେଇ ଶବ୍ଦ ରୂପରେ ପିଚିକ୍ ଆସେ ଯାହା, ତାହା କବିତା !

ଜଟିଳ ସଂସାରର ବାସ୍ତବତା, ଭାବନାଗତ ଆହତ ଆନନ୍ଦ ଓ ସୌନ୍ଦର୍ଯ୍ୟ ଏବଂ ଶବ୍ଦ ଅନ୍ତର୍ଗତ ପାର୍ଥିବ ଧ୍ୱନି ଏବେ କଳା କବିତା ରୂପେ ସ୍ୱୀକୃତ । ନିମ୍ନ ପ୍ରାଣର ଦାବୀ, ଅସ୍ଥାୟୀ ଚିନ୍ତାର ଆତ୍ମିକ କବିତା ପଂକ୍ତି ବସାଣରେ ତନ୍ମୟତାରେ ହେଉଛି ବ୍ୟବସ୍ଥିତ । ଯଦିଓ କବିତା ଏକ ସ୍ୱତଃସ୍ଫୁର୍ତ୍ତ ପ୍ରକାଶ ଏବଂ ଆତ୍ମିକ ଉନ୍ମାଦନା ଓ ପ୍ରକାଶ ବ୍ୟାକୁଳତା ଏହାର ମୂଳ ।

୧. ମତେ ତ ଅଦୃଶ୍ୟ ଶିକାରୀ
ନେଇ ସାରିଥିଲା ତା'ର ସୁନା ପଂଜୁରୀରେ
ଖାଇବାକୁ ଦେଉଥିଲା ମୁକୁତାର ଫଳ
ଦାନା କେତେ ମୋତେ ମାଣିକର ।
(ଆଶା ଛାଡ଼ି ଦେଇଥିଲେ ସମସ୍ତେ)
୨. ଖସି ଯାଇଥିଲି ବହୁଥର ସଂସାର ଫାଶରୁ
ଆଉ ଜଣେ ଶିକାରୀର
ଅଠା କାଣ୍ଡିଆରେ ଲାଖି
ଶୂନ୍ୟରେ ଡ଼େଣା ଫଡ଼୍ ଫଡ଼୍
କରୁଥିଲି କି କ'ଣ
ବୋଉ ଜାଣି ପାରିଲା
(ଆଶା ଛାଡ଼ି ଦେଇଥିଲେ....)

ବୋଉର ପଖାଳ କଂସାରେ ଲୁହ ହୋଇ ପଡ଼ିବା ଆଗରୁ ଜୀବନକୁ ମୁହୂର୍ତ୍ତେ ରୋକି ଦେଇଛି କେହି! ପ୍ରତୀକମାନଙ୍କ ଭିତରେ ଏତେ ଯେ ଝର୍କା, ଗୋଟିଏ ଅଜଣା ମୁହଁଇ ଭଙ୍ଗୀ ଅନୁଭୂତ କରାଉଅଛି କାବ୍ୟିକ ଷ୍ଟ୍ରକ୍‌ଚର! ସେ ମୁହଁଟି ଇନ୍ଦ୍ରିୟ ଗ୍ରାହ୍ୟ ସିମ୍ବଲିଜିମ୍‌କୁ ପ୍ରତୀକ୍ଷା କରିପାରିନାହିଁ, ଫେରି ଆସିଛି କାବ୍ୟିକ ସୁଯତ୍ନର ଭିନ୍ନ ଗୋଟିଏ ଅବସ୍ଥାକୁ! ଅଦୃଶ୍ୟ ଶିକାରୀ, ସୁନା ପଂଝୁରି ଓ ଖସି ଯାଇଥିଲି ସଂସାର ଫାଶରୁ ପ୍ରଭୃତି ସମ୍ବନ୍ଧ ପ୍ରତୀକମାଳା ସ୍ମରଣ କରାଇ ଦିଏ ଇଲିୟଟଙ୍କ ଧାଡ଼ିକୁ: Signs are taken for wonders, we would see a sign/The word within word...!

ମ୍ୟାକଲିସ୍ ଗୋଟିଏ ପ୍ରବନ୍ଧ କରିଛନ୍ତି 'ୱାର୍ଡ୍‌ସ ଆଜ୍ ସାଇନ୍ସ', ଶବ୍ଦମାନ ବସ୍ତୁମାନଙ୍କ ଅବସ୍ଥାର ଚିହ୍ନ (words as signifiers of 'things') ମାଲାର୍ମେ ଖଣ୍ଡିଏ ପତ୍ରରେ ଶିଳ୍ପୀ ଡ଼େଗାସ୍‌ଙ୍କୁ ଅବଗତ କରାଇଥିଲେ, Poetry is not made with ideas: it is made with things or words that signify things. (Poetry and Experience, page -29)!

ଅନୁଭୂତିରୁ ଅନୁଭୂତିକୁ ଗତି କରିଛି କବିତା। ସ୍ଫଟିକ ପରି କେତେ ସ୍ୱଚ୍ଛ ବୋଉର ପଖାଳ କଂସା, 'ବୋଉ ଜାଣି ପାରିଲା' ବୋଉମାନଙ୍କ ଅନୁଭୂତିର ନକ୍ସା! ସବୁ ବୋଉ ଗୋଟିଏ ପ୍ରକାର, ସବୁ ଜାଣିପାରନ୍ତି ?

ନିଶ୍ଚିତ ଭାଷା ସୁସ୍ପଷ୍ଟ କରିଛି ଅନୁଭୂତିକୁ! କବିତା ସୁନ୍ଦର ଲାଗୁଛି ନୁହେଁ, ଅଭିବ୍ୟକ୍ତିର ଭଙ୍ଗୀ ପ୍ରବଳ ଆବେଗ ପ୍ରଭାବିତ ହୋଇଛି। ଏହି ଆବେଗ ଗୋଟିଏ ମୁହୂର୍ତ୍ତର କାବ୍ୟିକ ଆବେଗ ଏବଂ ଗୋଟିଏ ମୁହୂର୍ତ୍ତର ସୃଜନ ଆବେଗ।

'ପ୍ରତିଦ୍ୱନ୍ଦ୍ୱୀ'; ଶେଷକୁ ଭୁଷୁଡ଼ି ପଡ଼ିଲା ଛାତ / ଭାତ ଥାଳି ଉପରେ.../ ଏବେ ପବନ ବଦଳିଗଲାଣି / ମୁଁ ଛାତଟାଏ ଉଠାଇ ପାରିବି/ଲୋକେ ବିଶ୍ୱାସ କଲେଣି/ସାପ ବଢ଼ିଲାରୁ ପେଡ଼ି ବଢ଼ିଲାଣି/ ମୁଁ ତା'ର ପ୍ରତିଦ୍ୱନ୍ଦ୍ୱୀ ହୋଇପାରିବିନି.../ ସେ ସର୍ବଶକ୍ତିମାନ.../ ସର୍ବଦା ଚୁକ୍ତି ଖିଲାପ କରନ୍ତି...। ସମୀକ୍ଷକ ଡ଼େନିସ୍ ଥମ୍ପସନ୍ ଆରବ କବିତା ଉପରେ ଆଲୋଚନା ଲେଖିବାବେଳେ ଗ୍ରହଣ କରିଛନ୍ତି ଗୋଟିଏ ଉଦ୍ଧୃତି: Poetry is, of all the forms of discourses, that which the Arabs regarded as the noblest; କବିତା ଏକ ଆଳାପ (discourse) କାବ୍ୟ ପୁରୁଷର ଆତ୍ମ-ଜୀବନୀ, ଅଳିଭା ସ୍ମୃତି ସିଏ ଶୁଣାଇଛି ଏଠି! 'ସାପ ବଢ଼ିଲାରୁ ପେଡ଼ି ବଢ଼ିଲାଣି' ଯେମିତି ଆୟ ବଢ଼ିଲାରୁ ବ୍ୟୟ ବଢ଼ିଲାଣି, କି ମନୋରମ ଅଭିବ୍ୟକ୍ତି! କବିତା ଏଠି ଗୋଟିଏ କହିବା ଭଙ୍ଗୀର ନାଁ।

'ଧୂଳି ମାଟିର ସ୍ୱର୍ଗ' ସ୍ଥ ସମସ୍ତ କବିତା ତଳେ ରହିଛି ପାଦଟୀକା । ସାନଝିଅ ବର୍ଣ୍ଣମାଳାର ପୁଅ ନୈବେଦ୍ୟ ପାଇଁ ରଚିତ କବିତାର ଶୀର୍ଷକ 'ନୈବେଦ୍ୟ' । ବଡ଼ ଝିଅ ରୀତିମୁକ୍ତାର ସାନପୁଅ ଶୌନକ ପାଇଁ ରଚିତ 'ଶିଶୁ' ଶୀର୍ଷକ ଶବ୍ଦଚିତ୍ର । ମଝିଆଁ ଝିଅ କବୟିତ୍ରୀ ମୋନାଲିସା ବଡ଼ ଝିଅ ସ୍ୱପ୍ନତୋୟା ପାଇଁ ଲିଖିତ କବିତାଟି 'ସ୍ୱପ୍ନତୋୟା' । କବି ସହ ସଂପର୍କଶୀଳ ବ୍ୟକ୍ତିତ୍ୱ, ଦୁଇଟି ଚୁମ୍ବକୀୟ ମେରୁ, ପରସ୍ପରର ଆକର୍ଷଣ ହିଁ ଅଟେ 'ରିଲେସନ୍‌ସିପ୍' (ପୋଏଟ୍ରୀ ଏଣ୍ଡ ଏକ୍ସପିରିଏନ୍ସ, ପୃଷ୍ଠା -୧୫), ଯେଉଁଥିରୁ ହୋଇଛି କବିତାର ଜନ୍ମ । କବିତା ଜନ୍ମ ନେବାକୁ ପୃଥକ୍-ଅବସ୍ଥା ପ୍ରତିକୂଳ ।

ସଂକଳିତ ସମସ୍ତ କବିତା ଜୀବନର ସାକ୍ଷୀ । ସିଏ ବ୍ରଜ ଭାଇନା ହୁଅନ୍ତୁ କି ହେଉ ଶାଶ୍ୱତ ରାଜଗୁରୁ! ଏମାନେ ଭାଷା ଭିତରୁ ବାହାରି ଆସିଥିବା କାବ୍ୟପୁରୁଷ ଆତ୍ମାର ଅତିଥି ଏବଂ କାବ୍ୟ ପୁରୁଷ ଆତ୍ମାର ସାକ୍ଷୀ! ଏମାନେ ବୟାନ ଦେଇଛନ୍ତି ଅସାରତା ଭିତରେ ଯାହା ସାର ରହିଛି ତାହା ସ୍ମୃତି, ତାହା ଏହି କବିତା! ଏଇ କବିତାକୁ ବାଦ ଦେଲେ କାବ୍ୟପୁରୁଷ ପାଇଁ ଆଉ 'ବିଙ୍ଗ୍' ନାହିଁ ।

ସାନ୍ଦ୍ର ସାମାଜିକ ଇତିହାସବୋଧକୁ ସଂଦିଗ୍ଧ ଭାବେ ଯେମିତି ପ୍ରଦାନ କରାଯାଇଛି ବସ୍ତୁରୂପ! ତା ନହେଲେ କବିତାରେ ବ୍ୟକ୍ତିତ୍ୱର ସ୍ଥାନ କାହିଁ? The poet has not a 'personality' to express, but a particular medium..., କବିଙ୍କ 'ମିଡ଼ିୟମ୍' ଅବଶ୍ୟ ଭାଷା! ଦେଖନ୍ତୁ କିମିତି ଚମତ୍କାର ଭାଷା ଖଂଜିଛନ୍ତି କବି: ପିନ୍‌ଟାଏ ପଡ଼ିଗଲେ / ସାରା ଘର ଶିହରି ଉଠିବ ତୁ ଗଲା ପରେ / କିମ୍ବା ଥାକଥାକ ସ୍ମୃତି ଉପରେ / ଲଦି ହୋଇ ପଡ଼ିଥିବ ଓଜନ ସମୟ (ମୁଗ୍ଧ ପ୍ରଜାପତି)

ବିଷୟର ବଳୟ ଶୀର୍ଷକର ପୁରୁଣା ଭାଗ୍ୟରେଖାକୁ ତାଳପତ୍ର ଜାତକରେ ସାଇତି ନାହିଁ । କବିତା ଭଲ ପାଇବାର ରତ୍ନ, ଅଷ୍ଟମ ଗର୍ଭ ଉଜ୍ଜ୍ୱଳ କରି ଚମକୁଥିବା ବିଦ୍ୟୁତ କନ୍ୟା ପ୍ରତିମା ରୂପ ତାର । ଏଇ ରୂପ ଇମୋସନ୍ ନୁହେଁ, ଇମୋସନ୍‌କୁ ପ୍ରତୀକର ସିରିଜ୍‌ରେ ବଦଳାଉଥିବା ମୁହୂର୍ତ୍ତ! ସ୍ମୃତିକୁ ସଂଖୋଳୁଥିବା କବିଙ୍କୁ ସନ୍ତୁଷ୍ଟ କରୁଥିବା ବିଭ୍ରମ! ଗୋଟିଏ ଅଲିଭା ଭାବସତ୍ତା ତାହାର ଆସ୍ଥାନରେ ହୋଇଛି ସାରସ୍ୱତ ପୂର୍ଣ୍ଣ-କଳସ! ପାଦଟୀକାରେ ଲିଖିତ ଚରିତ୍ରମାନଙ୍କୁ କବିତା ଯେମିତି କରାଇଛି ସମୟ ଅତିକ୍ରମ! ଗୋଟିଏ ଊର୍ଦ୍ଧ୍ୱଗାମୀ ସମ୍ଭାବନା ଫିଟାଇଛି ଦୀର୍ଘାୟୁ ଆଡ଼କୁ କବାଟ! 'ମୁଗ୍ଧ ପ୍ରଜାପତି' ଶୁଭେନ୍ଦୁ ରୀତିମୁକ୍ତା ପରିଣୟ, 'ଲିପି ରୂପକଙ୍କର' ଲିପି ଓ ରୂପକଙ୍କର ପରିଣୟ ଶୁଭ ଅବସର କବିତା, 'ତାରାର ଚାନ୍ଦୁଆ ତଳେ'

କବିତାଟି ମୋନାଲିସା ଓ ଗୋପାଳଙ୍କ ଶୁଭପରିଣୟ ଏବଂ ମନୋଜ ଓ ବର୍ଣ୍ଣମାଳାର ଶୁଭବିବାହ ଉପଲକ୍ଷେ ରଚିତ 'ଶୁଭଶଂଖ' । କବିତା ତଳେ ପାଦଟୀକା ଅବଗତ କରାଇଦିଏ କବିତା ପ୍ରେରଣାର ପରିବେଶକୁ, ସେହି ଆନନ୍ଦ ଘନ ପାରମ୍ପରିକ ମୁହୂର୍ତ୍ତକୁ, ଆତ୍ମୀୟତାରେ ହସୁଥାଏ ଖାଲି ଖାଲି ହସ ! 'ବାପା' ଗୋଟିଏ ଦାୟିତ୍ୱ ବୋଝ ଖାଲି ନୁହେଁ, ବାପା ଦାୟିତ୍ୱର ବାସ୍କେଟରେ ମମତାଭର୍ତ୍ତି ଏକ ସମୃଦ୍ଧ ଶିଖର, ଝିଅ ପାଇଁ ଏବଂ ଝିଅ ଯେମିତି ପିତା ପ୍ରାଣର ସ୍ପନ୍ଦନ : ନନା ବୋଲି ଡ଼ାକ ଶୁଣିଲେ ତୋର / ରୋଗ ଶଯ୍ୟାରେ / ବିଦାୟ ନେଲାବେଳେ / ମାଡ୍ରାସ କି ଦିଲ୍ଲୀର ପ୍ଲାଟଫର୍ମରେ / ମେଘ ବର୍ଷେ ଦୁମ୍ ଦୁମ୍ / ମୋ ଛାତିର ଶୁଖିଲା କୂଅରେ / (ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୪୭୯)

ବିବାହ ସଂଗୀତ ଓ ନୃତ୍ୟ ଉତ୍ସବର ମାହୋଲ ଅଦ୍ୟାବଧି ହିଂଦୀ ଚଳଚ୍ଚିତ୍ରମାନଙ୍କ ପରିବେଶକୁ କରୁଛି ମୁଖର । ସଂପର୍କର ମଧୁମାସର ବାର୍ତ୍ତା, ପ୍ରକୃତି ପୁରୁଷଙ୍କ ବ୍ରହ୍ମଚର୍ଯ୍ୟ ଚେତନା ସଂସ୍କାର ହେବା ଅବକାଶ, କବିତାର ନୂଆ-ଶୈଳୀରେ କରି ହୁଏ ଅନୁଭବ: କବିତାଟି ପଢ଼ା ସରିବା ଆଗରୁ / ତୋ କୁମାରୀ ଜୀବନର / ଶେଷ ଅଧ୍ୟାୟଟି ଚିରା ସରିଥିବ / ପୁନଶ୍ଚ – 'ଦି କୁଳକୁ ହିତ ସେତ / ଦୁହିତା ଗୋ ବୋହିଗଲା ପାଣି ଆଉ ପାରେନା ଉଜାଣି !'

ପତିଗୃହ ଈଶାଣ ତଳେ ପତିଗୃହ ସପ୍ତପୁରୁଷଙ୍କ ସହିତ ପିତୃଗୃହ ସପ୍ତପୁରୁଷଙ୍କୁ ମୁଠିଏ ମୁଠିଏ ପିଣ୍ଡ ବାଢ଼ି ଆର୍ଯ୍ୟ ଦୁହିତା ସାଧନ କରିଥାଏ ଦୁଇକୁଳ ହିତ । ତାହା ପରେ ମାଡ଼ିଥାଏ ଫୁଲ ଶେଯ ! ଚିରିଥାଏ କୁମାରୀ ଜୀବନର ଅନ୍ତିମ ଅଧ୍ୟାୟ ! 'ମମତାର କୋଠି ଖଳା କ୍ଷେତ ଦୋ' ଫସିଲି / ମୁଁ ଠେଲି ଦେଇଛି ଯା / ଆଉ କେବେ ଫେରିଲା ବେଳକୁ ହୁଏତ / କୋଳକୁ ଆସିଥିବ ନୂତନ ଅତିଥି (ତାରାର ଚାନ୍ଦୁଆ ତଳେ) !

'ଦୋ' ଫସଲି' ଦୁଇକୁଳର ମିଳନ ଫସଲ ମାନବ ! ନାରୀଟି ମମତାର କୋଠି, ଖଳା କ୍ଷେତ, ଗର୍ଭରେ ତା'ର ଧାରଣ କରୁଛି ନୂତନ ଅତିଥି, ଏହା ତାକୁ ଦୁଇକୁଳ ହିତ ପାଇଁ ଗ୍ରହଣ କରିବାକୁ ହେଉଛି ! ସାଂସାରିକତାର ସୁଖକୁ ଗୋଟିଏ ସାଂସ୍କୃତିକ ଆଚ୍ଛାଦନ କବିତା ଆତ୍ମାର ବିଶୁଦ୍ଧତାକୁ କରିଛି ପ୍ରଦର୍ଶନ । ସନ୍ଧିକ୍ଷଣ ସଂସ୍କୃତିକୁ କବିତା ନିଜ ଆଙ୍ଗିକର ଆଳଙ୍କରଣରୁ ଦେଇ ନାହିଁ ବାଦ ! ନିମ୍ନ ପଂକ୍ତି କରେ ସୂଚିତ – 'ଏବେ ଓଡ଼ିଆଣୀ ବୋହୂର / ପାଟ ପିନ୍ଧା ଅଣ୍ଟାରେ ତାରକସି ଚାବିଟିଏ ତୁ / କେଉଁ ଆପାର୍ଟମେଣ୍ଟର ପାରା ଭାଡ଼ିରେ /ଘୁମୁରୁଥିବା କପୋତୀଟିଏ ସେ /ଚାହିଁ ବସିଥିବ'... !

ମାନବ ସଂସ୍କୃତିରେ ସୁଖ, ଦୁଃଖ, ପ୍ରେରଣା, ଉତ୍ସାହ, ଆବେଗ, ଅବଶୋଷ ଓ ହାରି ଯିବାର କ୍ଳାନ୍ତି ପ୍ରଭୃତି ଅଂଶ ବିଶେଷ ଏବଂ ଏହା ବଂଚିବା ସହିତ ସଂଲଗ୍ନ ହେତୁ ଜୀବନ ପ୍ରକ୍ରିୟାର ଅଂଶ ବିଶେଷ ମଧ୍ୟ! ଏଗୁଡ଼ିକର ସ୍ତର ଚେତନାରେ ଗାଢ଼ ହେଲେ କବିତା ନିଏ ଜନ୍ମ। ସାଧାରଣ ଅର୍ଥକୁ ବିଶୋଧିତ (Disti) କରି କବି ହିଁ କାଢ଼େ କବିତା। ଏମିତି କିଛି କବିତା ଏଗୁଡ଼ିକ। ଏଗୁଡ଼ିକ ନିର୍ମମ ଜୀବନ ପିପାସା, ମାନବୀୟ ଉତ୍ତେଜନାରେ ପ୍ରଗାଢ଼। ଯେଉଁ ଉତ୍ତେଜନାର କ୍ଷେତ୍ରଫଳ ରହିଛି କଳା, ଗୋଟିଏ ବିସ୍ମୟକର ଅଭିବ୍ୟକ୍ତି ସମ୍ପନ୍ନ କଳା : କବିତାଟି ପଢ଼ା ସରିବା ଆଗରୁ / ତୋ' କୁମାରୀ ଜୀବନର / ଶେଷ ଅଧ୍ୟାୟଟି ଚିରା ସରିଥିବ! କେବଳ କଳା ହିଁ ଏତେ ସହଜ, ସୁନ୍ଦର ଓ ଶ୍ଳୀଳ ଭାଷାରେ ଉଚ୍ଚାରିତ କରିପାରିଥାଏ କିଛି ଅନୁଚ୍ଚାରିତ ଉତ୍ତେଜନାକୁ।

ସାମାଜିକ ଜୀବନରେ ଅମୂଲ୍ୟ ମୂଲ୍ୟବୋଧର ପ୍ରତୀକ ପିତାମାତା (ନନା ଓ ବୋଉ) କବି କହି ନାହାନ୍ତି ସେମାନଙ୍କୁ ଶାସ୍ତ୍ରୀୟ ଭାଷାରେ ସ୍ୱର୍ଗାଦପି ଗରିୟସୀ କିମ୍ବା ଆକାଶଠୁ ଉଚ୍ଚ! ଅତ୍ୟୁକ୍ତି ନାହିଁ କି ଛଳନା ନାହିଁ, କେବଳ ମୁହୂର୍ତ୍ତମାନଙ୍କ କେତୋଟି ନିଷ୍କପଟ ଚିତ୍ର 'ନନା ବୋଉ ଓ ଅନ୍ୟାନ୍ୟ ସାନ ପିଲା'!

ପକ୍ଷୀ ଋତୁକୁ ଜାଣେ, କାଳ ଜୀବନକୁ ଚିହ୍ନେ, ମୁହୂର୍ତ୍ତ କପ୍ ଭିତରେ ଭର୍ତ୍ତି ହୁଏ, ଶବ୍ଦ କରିବାକୁ ସ୍ୱୀକୃତି ଦିଏ, ମୁକୁଳିତ ହୁଅ, ଦୋ ଦି ଉଇଁଣ୍ଡ ନୋ ଦି ଟାଇମ୍! ଲାଇଫ୍ ଇନ୍ ଦି ୱାର୍ଲଡ୍ ଇଜ୍ ଏ ବିଗ୍ ଡ୍ରିମ୍! ସ୍ୱପ୍ନ ଏମିତି ଫିଟେ ଯେମିତି ଫିଟେ ଘରେ ହାତୀ! ଆଗକୁ ବିୟୋଗ ଋତୁର ରାଗିଣୀ, ଯାହାର ପ୍ରତୀକ ଲୋତକ! ଯାହାର ପ୍ରତୀକ ବିୟୋଗ! ବିୟୋଗ କବି କିମ୍ବା କବିତାକୁ ଅଶ୍ଳୀଳ କରାଇପାରେ ନାହିଁ, କରାଇଥାଏ ନିଃସଙ୍ଗ ଓ ବିମର୍ଷ (Melancholy)! ସେ ସେଇ ନିଃସଙ୍ଗ ଓ ବିମର୍ଷତା ଭିତରୁ ଯେଉଁ ଶବ୍ଦ ପାଏ ତାହା ତା'ର ପିଓର୍ ପୋଏମ୍! ଏମିତି ଥାକେ ପିଓର୍ ପୋଏମ୍ ଆସିଛନ୍ତି ଆଗକୁ। ଦେହରୁ ତିରୋହିତ ହେବା ବସ୍ତୁ ଚେତନା ବିୟୋଗ! ରୂପ ପ୍ରତିମାକୁ କଳା ପଟାରୁ ପୋଛି ନିଏ କାଳ! ମଣିଷଟି ଆଉ ନଥାଏ, ଥାଏ ତା' ସ୍ମୃତିର ବସ୍ତୁ। ତା' ଭିତରୁ ସାମାଜିକ ସଂପର୍କର ଚେତନାକୁ ଓଲଟ ପାଲଟ କରି ଦେଖୁଥାଏ ପ୍ରିୟ ମଣିଷ। ବିଜ୍ଞାପିତ କରୁଥାଏ ଅନୁଭବର ଇତିହାସ ଫର୍ଦ୍ଦକୁ। ଆତ୍ମୀୟଙ୍କ ବାଦେ ଅନ୍ୟ କେତେକ କବି ହୃଦୟ ପ୍ରକୋଷ୍ଠରେ ଦଖଲ କରି ବସିଛନ୍ତି ଚୌକୀ, ସେମାନେ କିଏ? But none, I think, do there embrance. ଗୋଟିଏ ଉତ୍ତର ରଖିଛନ୍ତି ମାର୍ଭେଲ୍!

କବି ଗୋଟିଏ କାମ କରିଛନ୍ତି, ସେ ଶୋକ ଓ ସ୍ମୃତିର ବସ୍ତୁ ଜଗତ ଭିତରେ କରିଛନ୍ତି ଅନୁପ୍ରବେଶ ଏବଂ ବିୟୋଗ ବସ୍ତୁ ଚେତନାଠାରୁ ନିଜକୁ କରି ନାହାନ୍ତି ଡ଼ିଟାଚ୍! ଦୃଷ୍ଟିର ନିରୀହତାରେ ବସ୍ତୁ ଚେତନାକୁ ବ୍ୟକ୍ତି ଚେତନା ଠାରୁ ପୃଥକ୍ କରିଛନ୍ତି । ଆତ୍ମୀୟ ବ୍ୟତୀତ ଅନ୍ୟ ସମସ୍ତ ଦେହ ମୁକ୍ତଙ୍କ ପ୍ରତି ମଧ ତାଙ୍କର ରହିଛି ଗଭୀର ସମ୍ମାନ । ସେମାନେ ବି ଦିନେ ଥିଲେ ଆତ୍ମା, ଦେହ ତ୍ୟାଗ ପରେ ପ୍ରେତାତ୍ମା, ପିଣ୍ଡପାଣି ପ୍ରାପ୍ତି ପରେ ସୂକ୍ଷ୍ମାତ୍ମା ବା ପିତୃ ପୁରୁଷ! ଏଇଥିପାଇଁ ରାଇନର ମାରିଆ ରିଲ୍‌କେ ଲେଖିଥିଲେ Duino Elegies!

ଜୀବନର ନିସ୍ତବ୍‌ଧ ଅନୁଭବର Musico-philosophical structure, ହରିହର ମିଶ୍ରଙ୍କ ଏଗୁଡ଼ିକ ମାନବିକତା! ଏଗୁଡ଼ିକ ପର୍ସନାଲ ସେନ୍ସ ଅଫ୍ ଲସ୍‌ର ଭିଜନ୍! ବଂଚିତ ରହିବା ଅନୁଭବର ଆଲିଙ୍ଗନ! 'ତୁମ ଥମ୍‌ଥମ୍ ମୁହଁ ଦିଶିଯାଏ / ଯେତେବେଳେ ଦେଖା ହେଉଥିଲେ ଦୁହେଁ / ସତେ ଅବା ବହୁଦିନ ତଳେ ହେଲା / ସାକ୍ଷାତ୍ ଆମର' (ପ୍ରିୟ ଶତ୍ରୁ) । ଗୋଟିଏ ଫଳପ୍ରଦ, ପିଓର୍ ପର୍ସନାଲ ଓ ସୁନ୍ଦର ସିମ୍ବଲିଜିମ୍‌ରେ ସମ୍ପର୍କର ସମୟକୁ ଉତାରିଛନ୍ତି କବି ।

କବିତା ଏକ ପ୍ରକାର ମିଶ୍ରଣ (Amalgam), ଏହି ମିଶ୍ରଣରେ ହରିହର ମିଶ୍ର କ'ଣ ରଖି ନାହାନ୍ତି? ପୁନଶ୍ଚ ରଖିଛନ୍ତି କ'ଣ? ଯାହା ରଖିଛନ୍ତି ତାହା ଏକ Mystical Transcendence, ଆଲୋକ ଦିଗକୁ ଶାବ୍ଦିକ ମୁଭ୍‌ମେଣ୍ଟ! ଏହି ମୁଭ୍‌ମେଣ୍ଟ୍‌ଟି ହୋଇଛି from time to eternity! ଗୋଟିଏ ଉତ୍ତର କାଳର ମୋହ ଅତୀତ ଭିତରୁ ବାହାରି ସ୍ଥିରତାରେ ପହଂଚିଛି! ଇଲିୟଟ ଲେଖିଛନ୍ତି ମୃତ୍ୟୁ ଓ ବିଶୃଙ୍ଖଳାକୁ ଜିତି ପାରେ ଏକ ମାତ୍ର ଶବ୍ଦ-କଳା! ଶବ୍ଦରୁ ଶବ୍ଦକୁ ଅବସ୍ଥାନ୍ତର ବିସ୍ମୟକର! ତଥାପି ମରୁଭୂମିରେ ଶବ୍ଦ ଉତେଜିତ ହୋଇ କରେ ବଳ ପ୍ରୟୋଗ, କ୍ରନ୍ଦନରତ ଛାଇ କରୁଥାଏ ଅନ୍ତେଷ୍ଟିକ୍ରିୟାର ନୃତ୍ୟ! ଅବାସ୍ତବ ଅସହାୟ କଳ୍ପନା କରୁଥାଏ ଉଚ୍ଚ ସ୍ୱରରେ ବିଳାପ (ଫୋର୍ କ୍ୱାର୍ଟେଟସ୍, ପୃଷ୍ଠା -୮)

'ମଧୁସ୍ମୃତି' 'ସୁନାସିଂହ', 'ସ୍ୱପ୍ନର ତାରକସି ଅଙ୍ଗାରେ ଜଳୁଛି', 'ନଥିବା ଭଉଣୀର ରାକ୍ଷୀ' ପ୍ରଭୃତି ପ୍ରାଧାନ୍ୟ ଲାଭ କରିଛି, ଯେଣୁ ଭାଷାର ପରିପକ୍ୱତା ମାଧ୍ୟମ ହୋଇ କବିତାଗୁଡ଼ିକୁ କରିଛି ଶ୍ରୀ ସମ୍ପନ୍ନ । କହିବାର ନିଆରା ନିଆରା ବାଗ ଅନୁଭବକୁ କରିଛି ପ୍ରଭାବ ପ୍ରବୃତ୍ତ! ନିରୀକ୍ଷଣ କରାଯାଇପାରେ ନିମ୍ନ ଚିତ୍ର –

୧. ଉଜୁଡ଼ି ଯାଏ ଗୁରୁବାର ଝୋଟି
ପଦ୍ମ ଚାଉଳ କ୍ଷୀରୀ ମୁଗବିରି
ରାତି ସାରା ଧର୍ଷଣ ପବନର

ବଢ଼ି ମରୁଡ଼ିର ହାହାକାର
ଆର୍ତ୍ତନାଦ କୋଳାହଳ
ଅଟ୍ଟହାସ୍ୟ ନାମ କୀର୍ତ୍ତନର
ଏତିକି ବେଳେ ଜନ୍ମ ସାନର (ଖବର ଆମ ଦି' ଭାଇଙ୍କର)
୨. ଶୁଣ୍‌ଶୁଣ୍ ନିକଟରେ ପ୍ରେମିକ ପ୍ରେମିକା ଦୁଇ
ବିଷ ପିଇ ଟଳି ପଡ଼ିଥିଲେ ଏଠି
ସେଇଦିନୁ ସଂଧ୍ୟା ପରେ ପ୍ରବେଶ ନିଷେଧ ଅଛି
କିନ୍ନରୀର ସ୍ନିଗ୍ଧ ଏଇ ଉପତ୍ୟକା
ଅବାଧ ସ୍ୱାଧୀନତାର ଭାର ନେଇ
ଏଠାରେ ରହିବା ଭୁଲ୍
ବଳାତ୍କାର ପଶି ଆସି ତମ ସାଙ୍ଗେ
ପ୍ରବୁଦ୍ଧ ମୁଁ କଲି ଅପରାଧ'
ହସିହସି ଉଡ଼ିଗଲା ସେ ଝିଅଟି
ଘାସରୁ ଘାସକୁ
ସତେ ଅବା ଚଳଚ୍ଚିତ୍ର ଗୀତଟିଏ
X X X
ସସ୍ମିତା ଶ୍ରୀଚନ୍ଦନ ଦେଖା ହେଲା
କାଲି ସପନରେ
ପଢ଼ିଥିଲି ସମ୍ବାଦ ପତ୍ରରେ କିରାସିନ୍ ଢ଼ାଳି ହୋଇ
କୁମାରୀ ସସ୍ମିତାର ଆତ୍ମାହୁତି ଅନ୍ତଃସତ୍ତ୍ୱା ପରେ
ଗଲାବେଳେ ନିମାପଡ଼ା କୋଣାର୍କ ବସ୍‌ରେ....
(କେନ୍ଦୁଝର, ସାରା ରାତି ମୁଁ ଯେ ଉଜାଗର)

କବିତା କ'ଣ କହୁଛି, ଯାହା କହୁଛନ୍ତି ଶବ୍ଦମାନେ? କେତେ କରୁଣ ସମକାଳ ସାମାଜିକ ଜୀବନ, କେତେ କ୍ଷତାକ୍ତ ମଣିଷର ସ୍ୱାଧୀନ ଇଚ୍ଛା? ପୁରୁଣା ସଂବିତ୍ ଓ ଭୁଲ୍ ବୁଝାମଣା! ସବୁ ଏକାଠି ହୋଇ ଦେଇଛନ୍ତି କବିତାର ଠିକଣା! ମାନବିକତା, ପ୍ରତିଶ୍ରୁତି ଓ ଆଶ୍ୱାସନା ତଥାପି ବଂଚିଛି, ତଥାପି ବଂଚିଛି ମଣିଷର

ଶୁଭ ଅଭୀପ୍ସା: 'ମା' ସବୁଦିନେ ଶୁଭ କାଉର ଡ଼ାକ ଶୁଣି କହେ – 'ଯା ଅନ୍ଧାର ନେଇ ଡ଼େଣାରେ ପଳା ଆଲୁଅ ନେଇ ଆ ।'

'ଧୂଳି ମାଟିର ସ୍ୱର୍ଗ'ରେ ମୃତ୍ୟୁବୋଧକୁ ନେଇ ଯେଉଁ ଆଧୁନିକ ବହୁମୁଖୀ ସୃଜନ କଳ୍ପନାର ବିସ୍ତାର କବିମାନେ କରିଛନ୍ତି ତାହା ନାହିଁ । ପାର୍ଥିବ ଦେହର ମୃତ୍ୟୁ ପୀଡ଼ା ପ୍ରଦାୟକ ସ୍ୱଜନଙ୍କୁ କିଂତୁ ମୃତ୍ୟୁର ସ୍ମୃତି ଅମୃତ । କବିତାର ଆବେଦନ ବି ଅମୃତ ! ମୃତ୍ୟୁକୁ ସେମାନେ ଜିତି ଯାଇଛନ୍ତି ବୋଧେ, ଯେଉଁମାନଙ୍କୁ ସାରସ୍ୱତର ସୁଉଚ୍ଚ ଉପତ୍ୟକାକୁ ଉଠାଇ ଆଣିଛନ୍ତି ଶବ୍ଦ ଓ ସ୍ମୃତିର ପାଲିଙ୍କିରେ ମାନ୍ୟବର କବି !

ଜୀବନ ତ ପାଣି ଫୋଟକାଟିଏ, ଜୀବନ ତ ବୃନ୍ତରେ ଲାଗିଥିବା ପବନରେ ଝୁଲୁଥିବା ଚଂପାଫୁଲଟିଏ ! ସେଇ ଜୀବନ ଧୂଳି ମାଟିରେ ଯେମିତି ସ୍ୱର୍ଗ ଗୋଟିଏ ! ସଂସାର ଅଳୀକ ଓ ଧୂଳିମାଟି; ଜୀବନ ଅମୃତ, ଜୀବନର ସୌନ୍ଦର୍ଯ୍ୟ ଅନନ୍ତ !

କବିତା କାହାର ପ୍ରତିଫଳକ ନୁହେଁ, କବିତା କାହାର ପ୍ରତିଫଳନ ନୁହେଁ, କବିତା ନିଜେ ନିଜର ବିମ୍ବ ! ଗୋଟିଏ ତଲ୍ଲୀନ ଚେତନାର ଆଙ୍ଗିକ ଶବ୍ଦ-ବିମ୍ବ; ଆନନ୍ଦରୁ ଆନନ୍ଦର ଜନ୍ମ ! ତାହା ସ୍ୱର୍ଗ ନ ହୋଇ ଆଉ କ'ଣ ହେବ ?

ଦି ସ୍କାଇ ହାଜ୍ ଏ ଲିମିଟ୍, ପ୍ରବାଦ ବାକ୍ୟଟିକୁ ଯେମିତି ତାଙ୍କ କବିତା ଘୋଷଣା କରିଛି; ମୃତ୍ୟୁର ବି ସୀମାଟିଏ ରହିଛି ! ସେ ସୀମାକୁ କବିତା ଅତିକ୍ରମ କରିଛି ! କବିତା ଯେଉଁ ବସ୍ତୁର ନାମ ତାହା ବିଶୁଦ୍ଧ ସୌନ୍ଦର୍ଯ୍ୟ ! ସୌନ୍ଦର୍ଯ୍ୟ କ'ଣ ? ତାହା କେବଳ ଅନୁଭବ୍ୟ ! ଅସୀମ ଚିନ୍ମୟର ବସ୍ତୁବୋଧ ସୌନ୍ଦର୍ଯ୍ୟ ! ସୌନ୍ଦର୍ଯ୍ୟ ଏକ ଜୀବନ୍ତ ଚେତନା, ଯେଉଁ ଚେତନାର ପ୍ରାଣ ସତ୍ତା ଆନନ୍ଦ । ଜୀବନ ପ୍ରକ୍ରିୟା ପ୍ରତିଷ୍ଠାର ସାମର୍ଥ୍ୟ ରଖିଥାଏ ଶିଳ୍ପୀର ଉପାଦାନ ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟ ଖାଲି ଦୈହିକ ନୁହେଁ, ସୌନ୍ଦର୍ଯ୍ୟ ମଧ ନୈତିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ । ତ୍ରୈବିଧ ସୌନ୍ଦର୍ଯ୍ୟର ବସ୍ତୁ ବୋଧ କବି ହରିହର ମିଶ୍ରଙ୍କ କାବ୍ୟିକ ଚେତନାର ମୁହୂର୍ତ୍ତମାନଙ୍କୁ ଖୋଜିଛି ଏବଂ ନିୟନ୍ତ୍ରିତ କରିଛି । ଶ୍ରୀ ଅରବିନ୍ଦ ଲେଖିଛନ୍ତି, ଆର୍ଟ ଆଜ୍ ଏ ପରଫେକ୍ଟ ଫର୍ମ ଏଣ୍ଡ୍ ଡ଼ିସ୍କଭରୀ ଅଫ୍ ବିୟୁଟି । ପ୍ରତ୍ୟେକ ସୃଷ୍ଟିର ନେପଥ୍ୟରେ ଗୋଟିଏ ସମୃଦ୍ଧ ପ୍ରାଣୀକ ଜୀବନ ଏବଂ ମନର ଭଣ୍ଡାର ବା ଥାଏ କଳ୍ପନାର ଭଣ୍ଡାର । ଜୀବନର ଅନୁଭବ ଓ ମନର ଭଣ୍ଡାରରେ ତାହାର ସଂରକ୍ଷଣ ଦିଏ କଳ୍ପନାକୁ ଜନ୍ମ । କଳ୍ପନା ସୌନ୍ଦର୍ଯ୍ୟର ଉପାଦାନମାନଙ୍କୁ ନେଇ କରାଇଥାଏ ସଂକଳ୍ପାନୁଯାୟୀ ଜଗତ ରଚନା ବା ସୃଷ୍ଟି । କବିତା 'ସୃଷ୍ଟି' ଶବ୍ଦର ଯଥାଯଥ ଶବ୍ଦ ଅଭିବ୍ୟକ୍ତ ବା 'Expression'! କାବ୍ୟାଚାର୍ଯ୍ୟ ଶ୍ରୀ ଅରବିନ୍ଦ ଉଲ୍ଲେଖ କରିଛନ୍ତି, The word "expression"

means only something that is manifested by the Ananda and of which Ananda is the essence. ଆନନ୍ଦର ଶକ୍ତି ଦୁଇଟି, ପ୍ରେମ ଓ ସୌନ୍ଦର୍ଯ୍ୟ । ନୈସର୍ଗିକ ଆନନ୍ଦ ଉପାସନା କରିବାର ମୁକ୍ତ ମାଧ୍ୟମ ପ୍ରେମ । ହରିବାବୁ ଲେଖିଛନ୍ତି, ପ୍ରେମ ମୋ ମନର ପ୍ରାର୍ଥନା ଗୃହ । ଶ୍ରୀଅରବିନ୍ଦ ଲେଖିଛନ୍ତି, Rasa is the mind's understanding of beauty and pleasure in it accompanied usually by the vitals enjoyment of it (Bhoga).

ପୁନଶ୍ଚ Beauty is not the same as Delight, but like love it is an expression, a form of Ananda, created by Ananda and composed of Ananda; ସୌନ୍ଦର୍ଯ୍ୟ ଆନନ୍ଦର ଆକୃତି ନିଏ କିନ୍ତୁ ଆକୃତିଟି ଫିଜିକାଲ୍ ହେବା ନୁହେଁ ଅନିବାର୍ଯ୍ୟ । ନନ୍ଦନତାତ୍ତ୍ୱିକ ଭାବେ ଉଲ୍ଲାସ (ଡ଼ିଲାଇଟ୍) ଟି ନିଏ ରସ ରୂପ ଏବଂ ଏହି ରସକୁ ଉପଭୋଗ କରେ ମନ ଓ ଏହାର ପ୍ରାଣୀକ ପ୍ରତିକ୍ରିୟା ରୂପେ ଅନୁଭୂତ ହୁଏ ସୌନ୍ଦର୍ଯ୍ୟ । କିନ୍ତୁ ଆଧ୍ୟାତ୍ମିକ ଉପଲବ୍ଧି ଆଣି ଦେଇଥାଏ ମାନବକୁ ଗୋଟିଏ ଦୃଷ୍ଟି ଓ ପ୍ରଗାଢ଼ ଆନନ୍ଦ, ଯାହା ଦ୍ୱାରା ତାଙ୍କୁ ଦୃଶ୍ୟ ହୁଏ ଜଗତ ସର୍ବତ୍ର ସୁନ୍ଦର ! 'ବିଶ୍ୱ ଦେଖ ମଧୁମୟରେ ଜୀବନ, ବିଶ୍ୱ ଦେଖ ମଧୁମୟ' ! ସେହି ମଧୁର ସୌନ୍ଦର୍ଯ୍ୟକୁ ଶବ୍ଦରେ ପ୍ରକାଶ କରିଥାନ୍ତି କବି । 'ଧୂଳି ମାଟିର ସ୍ୱର୍ଗ' ର ସୃଷ୍ଟିର ଉଷ୍ମ ସଂସ୍ପର୍ଶକର ବସ୍ତୁ ମଧୁ, ଯାହା କବିଙ୍କ ପ୍ରାଣୀକ ଓ ସାମାଜିକ ଚେତନାରେ ସୃଷ୍ଟି କରିଛି ମୋହ-ରସର ବଳୟ ! ରସ-ଦୃଶ୍ୟ ସ୍ମୃତିରେ ଆଣିଛି ପ୍ରାଣୀକ ଭୋଗ ଓ ଅନୁଭବ, ତାହାକୁ ସିଏ ପ୍ରଦାନ କରିଛନ୍ତି ମୂର୍ତ୍ତରୂପ । ପ୍ରକାଶ ଭଙ୍ଗୀରେ ଆଣିଛନ୍ତି ଚମତ୍କାରିତା ।

ପ୍ରକାଶ ଭଙ୍ଗୀରେ ଚମତ୍କାରିତା ଆଣିଥାଏ ଏକ ପ୍ରକାର ବିଶେଷ ଶବ୍ଦ । ସେଗୁଡ଼ିକ କଂକ୍ରିଟ ଏବଂ କଂକ୍ରିଟ ଶବ୍ଦମାନ ବସ୍ତୁ । ଏହା ଜାଗ୍ରତ କରାନ୍ତି ଏସ୍‌ଥେଟିକ୍ ପୁଲକ । ତେଣୁ କବିତା କ'ଣ କହୁଛି ତାହାର ପ୍ରାଧାନ୍ୟ ନଥାଏ, କବିତା କେମିତି କହୁଛି, କବିତାର ସେହି କହିବା ବାଗରେ Aesthetic Thrill ମିଳୁଛି ତ ? Ludwing wittgnste ଲେଖିଛନ୍ତି, Don't look for meaning, look for the use. ଶବ୍ଦମାନଙ୍କ ବ୍ୟବହାର ବା ଆରେଂଜମେଣ୍ଟ, ଅଫ୍ ୱାର୍ଡ଼ସ୍‌କୁ ଦେଖ, କବିଙ୍କ ଭାବାନୁଭୂତି ରୂପରେ ମୂର୍ତ୍ତ । କବିତାର ଜୀବନ୍ତ ରୂପ ରମଣୀୟତାବୋଧ ଉପଲବ୍ଧି କରାଇବା କ୍ଷେତ୍ରରେ ହୋଇଛି ସାର୍ଥକ । କବିତା ସ୍ୱୟଂ ପୁଷ୍ପଟିଏ କିମ୍ବା ତରୁଣୀଟିଏ ପରି ହୋଇଛି ଦୃଶ୍ୟ । ଚେତନାର ଗଭୀରତାରୁ ଉତ୍‌ଥିତ ପ୍ରତୀକମାନଙ୍କ ବସ୍ତୁବୋଧ ରୂପ ସୃଷ୍ଟିରେ ମୁଖ୍ୟ । ସେହି ପ୍ରତୀକଗୁଡ଼ିକ ଅସତ୍ତାରସତ୍ତା, ହୃଦୟ ଶୂନ୍ୟତାର ଡ଼ାକ, କବିତା ଆଙ୍ଗିକରେ ନୀରବିତ ନିବିଡ଼ତାକୁ

କରିଛନ୍ତି ଅଙ୍କିତ, ଯେମିତି ଏକ ସ୍ପର୍ଶର ଅନୁଭବ! ଯେଉଁ ସ୍ପର୍ଶଟି ନିଶ୍ଚିତ ଓ ରହସ୍ୟମୟ। ଭାବନାଟିକୁ ପୁନଃ ସଂଗ୍ରହ କରିଥାଏ ଭାବାବେଗ! ତେଣୁ 'ପ୍ରତିସ୍ପର୍ଦ୍ଧୀ, କିଂବା 'ଆଶା ଛାଡ଼ି ଦେଇଥିଲେ' କିମ୍ବା 'ସ୍ୱପ୍ନତୋୟା' ବା 'ଶିଶୁ' ରେ କବିଙ୍କ ଚକ୍ଷୁର ଶକ୍ତି ଦେଖିଛି ଲାଇଫ୍ ଅଫ୍ ଥିଙ୍ଗସ ଏମାନଙ୍କର! ଶବ୍ଦ ହୋଇଛି ଏହି ସୃଷ୍ଟି ରୂପ ଦର୍ଶନ ହାର୍ମୋନୀ ଦ୍ୱାରା ସଂଜୀବିତ। ସଚେତନ ଚିତ୍ତବୃତ୍ତି ଭାବାବେଗକୁ ରୂପ ସୃଷ୍ଟିରେ ପରିବର୍ତ୍ତିତ କରି କବିତାଗୁଡ଼ିକ ଚିକ୍‌ଚିକ୍ କରିଛି। କ୍ଷଣକାଳ ସୌନ୍ଦର୍ଯ୍ୟର ବସ୍ତୁବୋଧ ଚିରକାଳ ସମ୍ପଦରେ ପରିବର୍ତ୍ତନ ଲଭିଛି।

ଗୋଟିଏ ମହାସମୟର କଥା କହିଛି ହରିହର ମିଶ୍ରଙ୍କ କବିତା! ସେଇ ସମୟଟି ଯେମିତି 'ଫାଶୀ ପାଇବା ପୂର୍ବରୁ କେତୋଟି ମୁହୂର୍ତ୍ତ' (ମୃତ୍ତିକାର ଏଡ଼େ ଦାବି, ... କବିତା ୧୦୦୧, ପୃଷ୍ଠା ୪୯୭)! ମହାଜୀବନକୁ ଭଲ ପାଇବା ପ୍ରେମିକ ଜଣେ ତାକୁ କରୁଛି ପୁନରୁଦ୍ଧାର! ଯେଉଁଠି ନୀଳ ହୁଏ ଲୋହିତ ଏବଂ ଅଶେଷ ଯାତ୍ରାପଥ! ଯଦିଓ ବିପର୍ଯ୍ୟସ୍ତ ସବୁଜ ଉପତ୍ୟକା; 'କୀର୍ତ୍ତି ମୋର ପନିକିରେ କାଟୁଥାନ୍ତି / କଂଚା କଂଚା ପରିବା ଯେମିତି, ଯେଉଁ ସଂପର୍କରୁ ଫୁଟେ କବିତା ଚଂପାଫୁଲ, ସେ ସଂପର୍କ କାହାର? ସେ ସଂପର୍କ ଗୋଟିଏ ସଂଗମର, ସମୟକୁ ସହବାସ କରୁଥିବା ଦୃଷ୍ଟିର! ଦୁଇଟି ଉନ୍ମୁକ୍ତ ଆଖିପତାଭଳି ଦୃଷ୍ଟି ମହାଜୀବନକୁ ଅନେଇଛି, ଯେଉଁଠି ସ୍ମୃତି ସ୍ୱପ୍ନରେ ବଦଳୁଛି ଏବଂ ପ୍ରୀତି ସଙ୍ଗମରେ ହେଉଛି ନୀଳ ଲୋହିତ!'

ମୃତ୍ୟୁର ମଥୁରାରେ ନଥାଏ ଜୀବନର ଯମୁନା, କିଂତୁ ବୃଂଦା ତା' ଷୋଳକୋଶୀ ବନ ସାରା ସଜ୍ଜିତ କରି ରଖିଛି ଷୋହଳ ସହସ୍ର ଅଷ୍ଟକୁଂଜ! କେନ୍ଦ୍ରସ୍ଥ ବିନ୍ଦୁକୁଂଜ ଗୋଟିଏ ଛୋଟ ଷ୍ଟେସନ, ଯେଉଁଠି ପଣ ରକ୍ଷା ପାଇଁ ଯାତ୍ରା ଆରମ୍ଭିଛି ମହାଜୀବନ! ସୃଷ୍ଟି ସ୍ଥିତି ଲୟର ଓଁକାର! କାବ୍ୟପୁରୁଷ ଅମୃତ ଖୋଜୁନାହିଁ, ଅମୃତ ନିଜେ ଆସି ହୋଇଯାଇଛି ବ୍ଲୁ ହ୍ୱାଇଟ! କବିତା କହିଛି ଗୋଟିଏ ଅଖଣ୍ଡ ସମୟ କଥା ମଧ୍ୟ! ଯେଉଁ ଅଖଣ୍ଡ ସମୟକୁ ଇଲିୟଟ ବହୁ ଜନାଦୃତ ଗୋଟିଏ ଚିତ୍ରକଳ୍ପରେ କରିଛନ୍ତି ଅଭିବ୍ୟକ୍ତ, 'ବାର୍ଥ ଏଣ୍ଡ୍ କପୁଲେସନ୍ ଏଣ୍ଡ୍ ଡ଼େଥ୍'! ଏହିଭଳି ଅନ୍ୟ ଏକ ମହାସମୟର ପ୍ରତୀକ From wrong to wrong the exaperated spirit/ proceeds (four Quarters), ଅନୁଭବ କରାଇଦିଏ ମହାଜୀବନକୁ, ସୀମିତତା ମଧ୍ୟମରେ ଥରକୁ ଥର ନୃତ୍ୟଶିଳ୍ପୀପରି ମହାନାୟକ ଆବଶ୍ୟକ କରେ ଜନ୍ମ ଓ ମୃତ୍ୟୁର ମାନସିକ ଏବଂ ଶାରୀରିକ ଯନ୍ତ୍ରଣା।

'ଧୂଳିମାଟିର ସ୍ୱର୍ଗ' ରେ ଗୋଟିଏ ଅଲଗା ଜିଭ କହିଛି ମଣିଷ ଅବସ୍ଥାର ଦୃଶ୍ୟ, ଯେଉଁ ଦୃଶ୍ୟରେ ଜଳୁଛି ମହାଜୀବନ ଓ ଅଖଣ୍ଡ ସମୟ । କହିବା ଶୈଳୀ, ଏଭ୍ରୀ ଓ୍ୱାର୍ଡ଼ ଇଜ୍ ଆଟ୍ ହୋମ୍ / ଟେକିଂ ଇଟସ୍ ପ୍ଲେସ୍ ଟୁ ସପୋର୍ଟ ଦି ଅଦର୍ସ ! ଶବ୍ଦ ଅତୀତ ଓ ବର୍ତ୍ତମାନକୁ ଏକତ୍ର ଦେଇଛି ଫାଶ, ଯେମିତି ଏକ ସହଜ ସାମୂହିକ ପ୍ରାଚୀନ ଓ ନବୀନର କ୍ରୟ ବିକ୍ରୟ ! ଗୋଟିଏ ପଜେଟିଭ୍ ସିମ୍ବଲିଜିମ୍ କବିତାକୁ ଉତ୍ତମ ଆଚରଣରେ କରିଛି ସଜ୍ଜିତ ।



# ସମୟର ଡ୍ରଇଁ ଖାତାରେ ଚିଲିକାର ଚିତ୍ର

ଚିଲିକାର ସର୍ବଶ୍ରେଷ୍ଠ ବିଶେଷତ୍ୱ କାଳିଜାଈ ! କାଳିଜାଈ ଚିର ସବୁଜ କିମ୍ବଦନ୍ତୀ, ଯାହାକୁ ସାରସ୍ୱତ ରୂପରେ କବିତାର ସଂସ୍କୃତିକୁ ସଂଭ୍ରାନ୍ତ କରିଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର । ଝିଅ ଉପରେ ରଚିତ ହୁଏତ ପ୍ରଥମ ଓଡ଼ିଆ କବିତା । କନ୍ୟା ବିଦାୟର କରୁଣ ଦୃଶ୍ୟ, ଯାହା 'ଶକୁନ୍ତଳମ୍'ରେ ତପସ୍ୱୀ କଣ୍ୱଙ୍କୁ ମଧ କରିଥିଲା ବିହ୍ୱଳିତ ।

ଓଡ଼ିଆ ସାହିତ୍ୟକୁ ଚିଲିକାର ଦାନ ମଧ୍ୟରୁ "କାଳିଜାଈ" ଅନ୍ୟତମ । ଅନେକ କବି କାଳିଜାଈର ସୌନ୍ଦର୍ଯ୍ୟ ବିମୁଗ୍ଧ ବଶମ୍ବଦ । ପୁଣି କାଳିଜାଈ କନ୍ୟା ବିଦାୟ କାରୁଣ୍ୟ ରସ ବିଦଗ୍ଧ । 'କାଳିଜାଈ' କବିତା, କବି ହରିହର ମିଶ୍ରଙ୍କ ଆବେଦନ:

ଝିଅଲୋ ତୁ ଯା ନାହିଁ ଉପତ୍ୟକା
ନିର୍ଜନ ପାରିକୁଦ ଲୁହର ଚିଲିକା !

x x x

ନଡ଼ିଆ ତାଳର ବଣ / ପକ୍ଷୀର ଶାସନ
ସେଠି ଖାଲି ତାମ୍ରବର୍ଣ୍ଣ ଟଂପର ଇଲାକା
ଝିଅଲୋ, ତୁ ଯା ନାହିଁ ବୃଥା ଉପତ୍ୟକା

ମଣିଷ ପ୍ରକୃତି ଓ ପ୍ରବୃତ୍ତିର ଉଜ୍ଜ୍ୱଳତମ ରଶ୍ମିକୁ ପ୍ରତିଫଳିତ କରାଏ ଔଜଲ୍ୟ, ଚିର କୋଷବଦ୍ଧ, ତା' ଏଇ ଚିକ୍‌ଚିକ୍‌କୁ ହଜମ କରୁଥାଏ ଖୋଳ । ସାମାଜିକ ଜୀବନର କାରୁଣ୍ୟ ଓ ସାମାଜିକ ସଂବେଦନା, ଏ କୋଲ୍‌ଡ଼ ଇମିଟେସନ୍ ଅଫ୍ ଫର୍ମ, ସୁଖଦାୟକ ସାହଚର୍ଯ୍ୟରେ ହୋଇଚି ଆର୍ଟ । କବିତା ଏଠି ଏକ ଡ଼ୋମେଷ୍ଟିକ୍ ଡ୍ରାମା । ଜୀବନ ମଂଚ । The poet is not one who simply makes "some-thing beautiful". He imitates or represents what we call reality. what plato calls phenomena objects which are at least real to our five senses - in a word, life. (The making of Literature, page -45, ପ୍ରବନ୍ଧ 'imitation')

ମାନବର ପଞ୍ଚେନ୍ଦ୍ରିୟକୁ ଠିକ୍ ଲାଗୁଥିବା ବା ବାସ୍ତବ ବୋଧ ହେଉଥିବା ବସ୍ତୁ ଅଟେ ଇମିଟେସନ୍ ବା ରିପ୍ରେଜେଣ୍ଟେସନ୍, ତାହା କବିତାକୁ କରିଥାଏ ସୁନ୍ଦର । ଚିତ୍ରପରି ଏବଂ ପଞ୍ଚେନ୍ଦ୍ରିୟ ମୁଖ୍ୟ ମନକୁ କରିଥାଏ ଆହ୍ଲାଦିତ । ମନରେ ଆହ୍ଲାଦ ଆଣେ ରସ । ନବରସର ଶାସନ କେଉଁ ଅନାଦି କାଳରୁ ମାନି ଆସିଛି କାବ୍ୟ ଶିଳ୍ପ । ସମକାଳ କବିତା ରୂପ ପ୍ରାଧାନ୍ୟକୁ ପାଶ୍ଚାତ୍ୟ ସାହିତ୍ୟ ଶାସ୍ତ୍ରରୁ କରିଛି ଋଣ । ରୂପ ଦର୍ଶନରେ ଭୟର ରସଚିତ୍ର ମଧ୍ୟ ହରିହର ମିଶ୍ର କରାଇଛନ୍ତି ଅନୁଭବ । 'ସେଠି ଖାଲି ତାମ୍ର ବର୍ଣ୍ଣ ତମ୍ପର ଇଲାକା / ଝିଅଲୋ, ତୁ ଯା ନାହିଁ' ତାମ୍ରବର୍ଣ୍ଣ ତମ୍ପ ଭୟ ଉଦ୍ରେକ କରୁଥିବା ଗୋଟିଏ ପ୍ରତୀକ, ତାହା ନୁହେଁ ପ୍ରାକୃତିକ ସରୀସୃପ, ତାହା ସାମାଜିକ ଅସାମାଜିକ ଆଧୁନିକ ମଣଷ ! ତାହାର ହିଂସ୍ରତା, ଲୋଲୁପତା ଓ କାମୁକତାକୁ ପଞ୍ଚେନ୍ଦ୍ରିୟ ଅନୁଭୂତିରେ କରିଛି ନିଜସ୍ୱ । ଏଠାରେ Poetry at-taches its emotion to the idea କିନ୍ତୁ idea ନୁହେଁ fact, ଫ୍ୟାକ୍ଟ ହେଲା କ୍ରିଟିସିଜିମ୍ ଅଫ୍ ଲାଇଫ୍ ! ଆଉ ଗୋଟିଏ ତତ୍ତ୍ୱ ଏଠାରେ ଆସେ ସାମ୍ନାକୁ, in poetry the distinction between sound and unsound or only half sound! (ଦି ଷ୍ଟଡ଼ୀ ଅଫ୍ ପୋଏଟ୍ରି, ମାଥ୍ୟୁ ଆର୍ଣ୍ଣୋଲ୍‌ଡ଼ !) କବିତାର ମାନ ଉଚ୍ଚ, ଯେଣୁ ସୌନ୍ଦର୍ଯ୍ୟର ଉଚ୍ଚମାନ । ଚିଲିକା ଉତ୍କଳ କମଳା ବିଳାସ ଦୀର୍ଘିକା, ପୁଣି ଉତ୍କଳର ଶୋଭା ଅଳଙ୍କାର ! ତଦନୁଯାୟୀ କାଳିଜାଈ କାଳଜୟୀ କିମ୍ବଦନ୍ତୀର ପସରା ଏବଂ ତାହାର ଉପସ୍ଥାପନା କବିତାର ଉଚ୍ଚ ସୌଭାଗ୍ୟ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଚିହ୍ନା ଜଣା ଚିତ୍ରର ପଦଚିହ୍ନ ଅନୁସରଣ କରି ନାହାନ୍ତି ଆମ ସମୟ କବିତାର ଦା ଭିନ୍ନ କବି ହରିହର ମିଶ୍ର ତାଙ୍କ କବିତାରେ ଥଟ୍ ଏବଂ ଆର୍ଟ୍ ଅଲଗା ବାହ୍ୟ ସମ୍ମାନ ନହୋଇ ହୋଇଛି ସୌନ୍ଦର୍ଯ୍ୟମୟ ଏକ ଉପାଦାନ ।

କବିତା ଖାଲି ସୁନ୍ଦରୀ ନୁହେଁ, ପ୍ରକୃତି ବି ! ପ୍ରକୃତି ବର୍ଣ୍ଣନାରେ ଉତ୍କଳର ୱାର୍ଡ଼ସ୍‌ୱାର୍ଥ କବିବର ରାଧାନାଥ ରାୟ ! ତାଙ୍କ ଚିଲିକା ଅନୁପମା ପ୍ରାକୃତିକ

ଚିଲିକାଠାରୁ ତାଙ୍କ ଖଣ୍ଡକାବ୍ୟ 'ଚିଲିକା' ବହୁଗୁଣରେ ମନୋରମ! ଶ୍ୱେତାଙ୍ଗ ଚଢ଼େଇ ଗୁହା ସମୁଦ୍‌ଗତ/ନୀର ଭେଦି କିବା ଉଠେ ଐରାବତ୍ (ଚିଲିକା, ରାଧାନାଥ)! ଗୋଟିଏ ଉତ୍‌ପ୍ରେକ୍ଷା ଭାବୁକ ପାଠକଙ୍କୁ କରେ ବିହ୍ୱଳ! ସୁନୀଳ ଲବଣ ଜଳରାଶି, କୂଳ ଭୂମି କର୍ଦ୍ଦମାକ୍ତ ଓ ଆଇଁଷିଆ ଦୂଷିତ। କିନ୍ତୁ ଚିଲିକା ଗର୍ଭ ସ୍ୱର୍ଗ ପ୍ରଦେଶ ଯେମିତି! ଚଢ଼େଇହଗା ପାହାଡ଼ ଦୂରରୁ ଦିଶୁଛି ନୀର ଭେଦି ଯେମିତି ଉଠୁଚି ଐରାବତ! ଏଠିବି କବିଙ୍କ ଇମୋସନ୍ ସହିତ ଆଇଡ଼ିଆ ସଂଲଗ୍ନ! ଶେଲୀ ଗୋଟିଏ ଧାଡ଼ିରେ ଲେଖିଛନ୍ତି - Poetry Lifts the Veil from the hidden beauty of the world. ଚଢ଼େଇହଗା ଉପରେ ଢ଼ଙ୍କା ଯାଇଥିବା ଚଦରଟିକୁ କାଢ଼ି ନେଇଛି କବିବରଙ୍କ କବିତା। ତା' ସୌନ୍ଦର୍ଯ୍ୟର ବିମଳ ଜ୍ୟୋତ୍ସ୍ନା ବିସ୍ତାରିତ ହୋଇଯାଇଛି। ଶେଲୀ ଅନ୍ୟ ଗୋଟିଏ ପଂକ୍ତିରେ ସତ୍ୟଟିକୁ ଆଲୋକିତ କରିଛନ୍ତି ଯେ - Poetry is a mirror which makes beautiful that which is distorted. କବିତା ଏପରି ଏକ ଦର୍ପଣ ଯେ ଯାହା ବିରୂପ ବା ବିକୃତ ତାକୁ ସୌନ୍ଦର୍ଯ୍ୟଯୁକ୍ତ କରିବାରେ ସମର୍ଥ। କଳା ସବୁବେଳେ Narcissus। ପାଠକ ବା ଦର୍ଶକ କଳା ଅନୁରାଗ ପ୍ରବଣ। କବି ତ କଳାର Prophet, କାନ୍ତଦର୍ଶୀ ତାଙ୍କ ଦୃଷ୍ଟିରେ ଥାଏ ସମୟର ଶେଷତମ ଫଳ ଏବଂ ପୁଷ୍ପର ଜୀବାଂଶ, ଯାହା ନୂତନ ପୁଷ୍ପର ବୀଜାଣୁ! ମହାନ ସ୍ୱାଧୀନତା ସଂଗ୍ରାମୀ କବି ଗୋପବନ୍ଧୁଙ୍କୁ ନିଆଯାଉଛି କଟକରୁ ବ୍ରହ୍ମପୁର କାରାଗୃହ। ବନ୍ଦୀ କବି, ଚିଲିକା କୂଳେ କୂଳେ କୋଇଲା ବାଷ୍ପ ଚାଳିତ ଇଂଜିନ୍ ଟ୍ରେନ୍‌କୁ ଟାଣି ନେଇଛି, କବି ପ୍ରାଣପକ୍ଷୀ ବନ୍ଦୀ ଦେହ ଭିତରେ ଛଟପଟେଇ ଯାଉଛି।

'ରହରହ କ୍ଷଣେ ବାଷ୍ପୀୟ ଶକଟ ଦେଖିବି ଚିଲିକା ଚାରୁ ଚିତ୍ରପଟ୍ଟ' (ରେଳ ଉପରେ ଚିଲିକା ଦର୍ଶନ, ଗୋପବନ୍ଧୁ ଦାସ) ଆଗକୁ ରହିଛି, ଚିତ୍ର ମଣେ, ଯେଣୁ ନାହିଁ ଅନୁଭବ, ବାସ୍ତବ ବିଶ୍ୱେ କି ଏ ଛବି ସମ୍ଭବ? ରୂପସୀ ଚିଲିକା : କବି ଗୋପବନ୍ଧୁ ଦୃଷ୍ଟିକୁ ପଦୋନ୍ନତି ଦିଏ କୀଟସ୍‌ଙ୍କ ଗୋଟିଏ ପଂକ୍ତି, And can I ever bid these joys farewell? ଉଚ୍ଚତମ ଜୀବନ ପାଇଁ କୀଟସ୍ କହିଥିଲେ 'ହଁ'। ସେଠାରେ ଆନନ୍ଦ ଥିଲା ସୀମିତ ଓ ସଂକୀର୍ଣ୍ଣ। ଏଠାରେ ଚିଲିକାର ସୌନ୍ଦର୍ଯ୍ୟ ବ୍ୟାପକ ଓ ବିଶାଳ ହେତୁ ମାନବ ହୃଦୟ ଭିତରେ ପରିପୂର୍ଣ୍ଣ ଆନନ୍ଦ ଅସୀମ। ଚିତ୍ର ମଣେ ଯେଣୁ ନାହିଁ ଅନୁଭବ, ଭାବୁଛନ୍ତି ଗୋପବନ୍ଧୁ। ପୂର୍ବରୁ ସିଏ ଏହି ପ୍ରାକୃତିକ ଶୋଭାରାଜିକୁ କେବେ ଓ କେଉଁଠି କରିନାହାନ୍ତି ଉପଲବ୍ଧି। ଦୂରନ୍ତ ନୀଳ ମେଘ ସହିତ ମିଶିଯାଇଛି ଘନନୀଳ ଜଳରାଶି! ଜଳ ଓ ଆକାଶ ପରସ୍ପର ଆଶ୍ଳେଷିତ ଅର୍ଦ୍ଧନାରୀଶ୍ୱର ଶ୍ୟାମ ରୂପ। ମଝି ଶୂନ୍ୟତା ଚିରି ଉଡ଼ିଯାଉଛନ୍ତି ଦଳ ଦଳ ବିହଙ୍ଗମ,

କାମ ଓ ହଂସରାଳୀ । ସୌନ୍ଦର୍ଯ୍ୟର ଗୋଟିଏ ବିପୁଳ ଓ ବିଶାଳ କାରବାର ଖାଉଟୀୟ ଭାବେ ପୂର୍ଣ୍ଣତାର ସୀମାକୁ ସୁରକ୍ଷିତ ରଖିଛି ।

ଏଇଠି କୀଟସ୍‌ଙ୍କ ବହୁ ପ୍ରସିଦ୍ଧ ଗୋଟିଏ ପଂକ୍ତି ଆସେ ସାମ୍ନାକୁ, A thing of beauty is joy for ever ଓ କବିବର 'ଚିଲିକା' ଫର୍ଦ୍ଦରେ ସମ୍ପାଦିତ କରିଛନ୍ତି ତାଙ୍କ ସୌନ୍ଦର୍ଯ୍ୟ ଦର୍ଶନ ପିପାସା: ସୁନ୍ଦରେ ତୃପ୍ତିରେ ଅବସାଦ ନାହିଁ ଯେତେ ଦେଖୁଥିଲେ ନୂଆ ଦିଶୁଥାଇ । 'ଚିଲିକା' ରାଧାନାଥ ରାୟଙ୍କ ପ୍ରକୃତ ସୌନ୍ଦର୍ଯ୍ୟ ଉପାସନା । ଅନ୍ୟ ପକ୍ଷରେ ପାଶ୍ଚାତ୍ୟ ସାହିତ୍ୟ ଶାସ୍ତ୍ର ଦୃଷ୍ଟିରୁ ଦେଖିବାକୁ ଗଲେ 'ଚିଲିକା' କବିବରଙ୍କ ରଚନା । ନିଓ-କ୍ଲାସିକ୍‌ବାଦ ସମୀକ୍ଷାର ମୁଖପାତ୍ର ଆଲେକ୍‌ଜାଣ୍ଡର ପୋପ୍ କବିଙ୍କୁ ଦେଇଛନ୍ତି ପରାମର୍ଶ – Learn rules embodied in the works of ancient writers and then to observe them in the composition.

ପୋପ୍‌ଙ୍କ ମୂଳ ପଂକ୍ତି –

Learn hence for ancient rules a just esteem
To copy Nature is to copy them.

(Aspects of literary criticism, page - 42)

ଗୋଟିଏ ଗୋଲ ଦର୍ପଣରେ ଦେଖିହେବ ସୂର୍ଯ୍ୟ, ଆକାଶର ନୀଳିମା, ଭୂମିକୁ ଏବଂ ଏପରିକି ନିଜକୁ । ସଂସାରର ବୃକ୍ଷଲତା, ଜୀବଜନ୍ତୁ, ନକ୍ଷତ୍ର ଏବଂ ସମସ୍ତ ପ୍ରକାର ବସ୍ତୁ, କାହାକୁ ଯେ ଦେଖାଇ ନପାରେ ଦର୍ପଣ । ଠିକ୍ ସେହିପରି ଶବ୍ଦର ଦର୍ପଣରେ କବିବୃନ୍ଦ କରିଛନ୍ତି ଚିଲିକାର ପ୍ରତିଫଳନ ବା ନକଲ । ବୁକ୍ ଟେନ୍, 'ରିପବ୍ଲିକ୍'ରେ ପ୍ଲାଟୋ ତାଙ୍କ ଏହି Dilemma ଟିକୁ କରିଛନ୍ତି ସ୍ପଷ୍ଟ । ଅବଶ୍ୟ What the poet speaks of is the true and the beautiful (The platonic Dilemma, in critical approaches to Literature, D. Daiches, page-9) ଜନ୍ କ୍ରୋଇ ରାନ୍‌ସମ୍‌ଙ୍କୁ ସମୀକ୍ଷା କଲାବେଳେ ପ୍ରଫେସର ଡ୍ୟାଚେସ୍ ଗୋଟିଏ ପଂକ୍ତି ଉଚ୍ଚାରଣ କରିଛନ୍ତି – Poetry is a special way of drawing attention to things.

ଚିଲିକାର ବିପୁଳ ଶୋଭା ଦିଗକୁ ଲୋକଙ୍କ ଦୃଷ୍ଟି ଆକର୍ଷିତ କରାଇବାକୁ ରାଧାନାଥ କ୍ଷୋଭ ପ୍ରକାଶ କରି ଉଲ୍ଲେଖ କରିଛନ୍ତି, ସ୍ୱରୂପା ଅଂଶୁପା ଲୋକେ ଅଗୋଚର / ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର । ଉତ୍ତର ଭାରତର ପୁଷ୍କର ତୀର୍ଥ

କ୍ଷୁଦ୍ର ଗୋଷ୍ପଦ ଆକୃତି, ମହାକବି କାଳିଦାସଙ୍କ କୃତି ତା ବର୍ଣ୍ଣନା କରି ତାହାକୁ ପ୍ରସିଦ୍ଧ କରାଇ ଦେଇଛି । କିନ୍ତୁ ଚିଲିକା ଓ ଅଂଶୁପା ଉତ୍କଳର ଦୁଇ ପ୍ରସିଦ୍ଧ ହ୍ରଦ ଗୋଷ୍ପଦର ବହୁ କୋଟିଗୁଣ ଆୟତନ ଓ ପ୍ରସ୍ଥ, ତାହା ଲୋକେ ଅଗୋଚର । ବଣ୍ୟ ମଲ୍ଲିକା ସଦୃଶ୍ୟ, ଅଖ୍ୟାତ । ବୋଧେ ଏଇଥିପାଇଁ ଗୋଟିଏ ଗୋଟିଏ ଧାର୍ମିକ କାହାଣୀ ଖୋଜି ଉତ୍କଳର ଭୂଗୋଳ 'ଚନ୍ଦ୍ରଭାଗା' ଓ 'କେଦାରଗୌରୀ' ପ୍ରଭୃତିକୁ ସିଏ ଜୀବନ୍ତ କରିଛନ୍ତି, ନବ କଥା ସଂଯୋଜିଛନ୍ତି । ଚିଲିକାର ସୌନ୍ଦର୍ଯ୍ୟକୁ ସାହିତ୍ୟର ଦରବାରରେ ତଥା ପର୍ଯ୍ୟଟନର ଇତିହାସରେ ଉପସ୍ଥାପିତ କରିବାରେ କବିବର ରାଧାନାଥ ରାୟ ହିଁ ଅଗ୍ରଦୂତ । ତାଙ୍କ ପଛକୁ ପଛ ଆକର୍ଷିତ ହୋଇ ରୂପସୀ ଚିଲିକାର ଚିତ୍ରପଟ୍ଟ ଅସଂଖ୍ୟ କବି ଶବ୍ଦର କାନ୍‌ଭାସରେ କଲେଣି ଅଙ୍କିତ । ଅଂଶୁପା ବି ପଡ଼ି ନାହିଁ ବାଦ୍ । କବି ହରିହର ମିଶ୍ରଙ୍କ ୨୦୦୫ରେ ପ୍ରକାଶିତ ଖଣ୍ଡିଏ କାବ୍ୟଗ୍ରନ୍ଥ 'ପାହାଡ଼ର ଡ଼େଣା' । ଏହି ସଂକଳନରେ ରହିଛି ତିନୋଟି କବିତା ଚିଲିକା ଉପରେ ଆଧାରିତ ଅନୁଭୂତି । 'ରୂପସୀ ଚିଲିକା', 'ତୃଷିତ ଚିଲିକା' ଏବଂ 'ମନ୍ଦ ପାଗ ଚିଲିକାରେ' ଶୀର୍ଷକ ଶବ୍ଦ ଚିତ୍ର । ତାଙ୍କ ଚିଲିକା କେତେ ରୂପସୀ ନିମ୍ନ ତିନୋଟି ପଂକ୍ତିରୁ ଅନୁଭୂତ ହୋଇଯାଉଛି !

> ଗତିରୁଦ୍ଧ ହ୍ରଦର ଚାରିପାଖ ପରିବେଶ
> ରାତିର ଜାଲରେ ଶୋଇଥିବା ରମ୍ଭାର ଅଧୀର ଅଙ୍ଗ
> ସେ ନିଜେ ତା ମାୟା ସ୍ୱର୍ଗ ନିଜେ ଜାଲ ନିଜେ ତାର ମାଛ
> (ରୂପସୀ ଚିଲିକା)

ତାରାର ହ୍ରଦ ଓ ଅବରୁଦ୍ଧ ତରଙ୍ଗର କଥାଟିଏ ହୋଇଛିବ୍ୟାପ୍ତ । ମାଛମାନଙ୍କୁ ଦେଖି ଅଟକି ଯାଇଛି ନକ୍ଷତ୍ର । ଛାଇର ଢ଼ଙ୍ଗାରେ ବୋଝେଇ ପାହାଡ଼ । ପୁନଶ୍ଚ ପାହାଡ଼ର ଛାଇ ସବୁ ନିବୁଜ ମାଲ ଗାଡ଼ିରେ ଚିଲିକା ତୀରରେ କେଉଁ ଆଡ଼େ ଗଲାବେଳେ ସ୍ୱପ୍ନର ଏକ୍ସପ୍ରେସ୍ ଧକ୍‌କା ଖାଏ । ଦୁର୍ଘଟଣା ଘଟେ ଦର୍ଶକର ଚେତନାରେ, ସୌନ୍ଦର୍ଯ୍ୟ ପିପାସିତ ମନର ଧାରଣା ଉପରେ, କି ଦୃଶ୍ୟ ଏହା ? ରମ୍ଭାର ଅଧୀର ଅଙ୍ଗ ? କବି ରହସ୍ୟବାଦୀ, ତେଣୁ ତାଙ୍କ ଅନୁଭବକୁ ଆସିଛି 'ମାୟାସ୍ୱର୍ଗ' ଚିଲିକା ରମ୍ଭାର ଅଧୀର ଅଙ୍ଗ ହେବାବେଳେ ତାହା ନିଜେ ଜାଲ ଓ ନିଜେ ମାଛ ! ଭାଗବତର ପରମ ରହସ୍ୟ ! ଗୋଟିଏ ଅଦ୍ୱୈତ ଚେତନାର ଅଂଶ, ମାୟା ତତମିଦମ୍ ସର୍ବମ୍ ! ଅବଜାନନ୍ତି ମାଂ ମୁଢ଼ାଃ (ଗୀତା ୯/୧୧) 'ଏପାଖ ସେପାଖ ଖୋଜେ/ ସଂଜ ଆଉ ସକାଳର ପକ୍ଷୀଟିଏ' ତା ପାଇଁ ସ୍ଥାନ ଚାଖଣ୍ଡେ, 'କେଉଁଠି ବଂଚିବ ସିଏ କେଉଁଠି ରଖିବ ତାର କାଠିକୁଟା ସ୍ୱର୍ଗ ?' ପକ୍ଷୀଟି

ରହସ୍ୟବାଦ ଦୃଷ୍ଟିରୁ ଜୀବପକ୍ଷୀ ! 'ସଞ୍ଜ' ଦିବସର ଓ ରାତିର ମିଳନ କ୍ଷଣ ଏବଂ ସକାଳ ରାତ୍ରୀ ଓ ଦିବସର ମିଳନ ଲଗ୍ନ, ଗୋଟିଏ ଆସନ୍ନ ମୃତ୍ୟୁକ୍ଷଣ ହେବାବେଳେ ଅନ୍ୟଟି ଜନ୍ମ ଲଗ୍ନ । ସାଧାରଣ ଦୃଷ୍ଟିରୁ ଚିଲିକାକୁ ଜୀବିକାର୍ଜନ କ୍ଷେତ୍ର କରିଥିବା ମାଛୁଆ ଓ ନାବିକ ପ୍ରଭୃତିଙ୍କ ନୀଡ଼ ନିର୍ମାଣ ଆଶ୍ରୟ ରୂପେ ଚିନ୍ତା କରାଯାଇହୁଏ । 'କାଠିକୁଟା ସ୍ୱର୍ଗ' ଚିତ୍ରକଳ୍ପଟି ସୂଚିତ କରେ, ବୈକୁଣ୍ଠ ସମାନ ଆହା ସେହି ଘର, ସୁଖ ଶାନ୍ତି ଥାଏ ଯହିଁ ନିରନ୍ତର ।

ଚିଲିକା ଦିଶୁଛି ଯେମିତି ରମ୍ଭାର ଅଧୀର ଅଙ୍ଗ । ଝଲମଲ ତରଙ୍ଗାୟିତ ନୀଳ ଧବଳ ଉଜ୍ଜଳ ବାରିରାଶି ରମ୍ଭାର ଅଧୀର ଅଙ୍ଗପରି କବିଙ୍କୁ ଦିଶିଛି । କବି ଉତ୍ପ୍ରେକ୍ଷା କରିଛନ୍ତି ତରଙ୍ଗାୟିତ ଇଏ ଚିଲିକା ନୁହେଁ ଅଧୀରା ଅଙ୍ଗ ଅପ୍ସରା ରମ୍ଭାର, ସିଏ ମର୍ତ୍ତ୍ୟ ଭୂମିରେ ଲୋଟି ପଡ଼ିଛି ! କାରଣ ସ୍ୱର୍ଗରେ ସୌନ୍ଦର୍ଯ୍ୟ ଅଛି, ଅମୃତ ଅଛି, କିନ୍ତୁ ସମ୍ଭୋଗ ନାହିଁ ! ଅଧୀରା ରୂପସୀ ରମ୍ଭା, ତାକୁ ଆଲିଙ୍ଗନ କରିଛି ପାହାଡ଼ର ଛାଇ ! ମାୟାବୀ ପୁରୁଷ ! ମୋହିନୀଟିକୁ କରୁଛି ଭୋଗ । ଗୀତ ଗାଉଛି ପକ୍ଷୀ, କାମପକ୍ଷୀ, ଜନ୍ମ ଓ ମୃତ୍ୟୁ ତାକୁ ଡ଼ାକୁଛନ୍ତି, 'ଯାଅନାରେ ପକ୍ଷୀ ମୋର ଅତି ଆପଣାର !' ଜନ୍ମ ଓ ମୃତ୍ୟୁକୁ ବାଦ ଦେଇ ସୃଷ୍ଟି ନାହିଁ । ସୃଷ୍ଟି ଅର୍ଥ ରୂପର ଦୃଶ୍ୟ । ଚିଲିକା ତ ରୂପମୟୀ, ଅପୂର୍ବା, ଚିତ୍ର ମଣେ ଯେଣୁ ନୁହେଁ ଅନୁଭବ, ପୁଣ୍ୟଶ୍ଲୋକ ପୂର୍ବଜ କବିଙ୍କ ଦ୍ୱାରା ଉଚ୍ଚାରିତ ।

ଓଡ଼ିଶା ଏକ ଗ୍ରାମ ବହୁଳ ପ୍ରଦେଶ । ପ୍ରାୟ ସମସ୍ତ ଗ୍ରାମୀଣ ଲୋକ ପରିଚିତ, ଆକାଶ କଇଁଆ ଚିଲିକା ମାଛ, ବାକ୍ୟାଂଶ ସହିତ । ସାଧାରଣତଃ ସାମାଜିକ ମାନବ ଚେତନାରେ ଚିର ଜୀବନ୍ତ ବହୁ ଅନୁଭବ ଲବ୍ଧ ବାସ୍ତବ । ଚିଲିକା ମତ୍ସ୍ୟ ପାଇଁ ପ୍ରସିଦ୍ଧ । ୧୯୬୫ ମସିହା ସୁଦ୍ଧା ଗୋଟିଏ ମାଛ ଗାଡ଼ି (ଟ୍ରେନ) ଆସୁଥିଲା ଖୋର୍ଦ୍ଧା ରୋଡ଼ (ଜଟଣୀ) ଷ୍ଟେସନ ପର୍ଯ୍ୟନ୍ତ । ଏଠାରୁ ଅନ୍ୟାନ୍ୟ ଟ୍ରେନ୍ ମାଛ ଭର୍ତ୍ତି ଡ଼ବାଗୁଡ଼ିକ ସଂଲଗ୍ନ ହୋଇ ଯାତ୍ରା କରୁଥିଲା କଲିକତା ।

କବି ହରିହର ମିଶ୍ରଙ୍କ ଶବ୍ଦର ଡ୍ରଇଂ ଖାତାରେ ରହିଛି ଯେଉଁ ଚିଲିକାର ଚିତ୍ରପଟ୍ଟ ତହିଁରେ ପ୍ରାଧାନ୍ୟ ଲାଭ କରିଛି ମତ୍ସ୍ୟ ବିପଣନ । ଚିଲିକା କୂଳର ସଭ୍ୟତା ଓ ସଂସ୍କୃତି ମତ୍ସ୍ୟ ବିପଣନ ଆଧାରିତ । ହରିହର ମିଶ୍ରଙ୍କ ଚିଲିକା ଏପିସୋଡ଼ର ମଧ୍ୟ ପର୍ବ 'ତୃଷିତ ଚିଲିକା' ତହିଁରୁ କରାଗଲା ଉଦ୍ଧୃତ –

ଚିଲିକାର ମାଛମାନଙ୍କ ପାଇଁ
ତା' କୂଳର କେଉଟମାନଙ୍କ ପ୍ରଲୋଭିତ

ତାଟ ବଜା ଜାଲର କୁଶଳୀ ହାତ

ନାଆ ଭଳି ମେଲା ଖୋଲା ଛାତି

ଧଉଡ଼ି ଖଇଁଟୀର କଳାକଳା ଆଙ୍ଗୁଠି

ଚତୁର ମାଛରଙ୍କାମାନଙ୍କ ସହିତ

ନିର୍ଜନ ବର୍ଷାରେ ମଂତ୍ରଣାକରେ ଚୁପ୍‌ଚାପ୍ ।

ଏଠାରେ ଏକ୍ସପ୍ରେସନ୍ ଫର୍ ଦି ଆର୍ଟିଷ୍ଟ୍ ଇଜ୍ କମ୍ୟୁନିକେସନ୍! ଯାହା କମ୍ୟୁନିକେଟ୍ ହୋଇଛି ବା କମ୍ୟୁନିକେସନର ଫର୍ମରେ ପ୍ରାଧାନ୍ୟ ଲାଭ କରିଛି ତାହା ଡ଼ିକ୍ସନ! 'ତାଟ ବଜା ଜାଲ', 'ଧଉଡ଼ି ଖଇଁଟୀ' - ଏ ସମସ୍ତ ସ୍ଥାନୀୟ ମତ୍ସ୍ୟ ସାଂସ୍କୃତିକ ଶବ୍ଦ ନିର୍ମିତ ବାକ୍ୟାଂଶ । ନିଜ ଶୈଳୀରେ ଏପରି ବୁଣା ଯାଇଛି ଯେ ଅନନ୍ୟ ଜୀବନ୍ତ ଲାଗୁଛି! 'ଖୋଲାଛାତ', 'କଳାକଳା ଆଙ୍ଗୁଠି' ପ୍ରଭୃତି ଅବୟବୀୟ ଅଭିବ୍ୟକ୍ତି କଂକ୍ରିଟ! ଉଦ୍ଧୃତି ବଳିଷ୍ଠ ଭାବେ ପ୍ରମାଣିତ କରିଛି କବି ହରିହର ମିଶ୍ର, ହି ଇଜ୍ ଆନ୍ ଆର୍ଟିଷ୍ଟ ହୁଜ୍ ସବଜେକ୍ଟ ଇଜ୍ ଆର୍ଟ!

'ତୃଷିତ ଚିଲିକା'ରେ ତାଙ୍କ ଆର୍ଟର ସ୍ୱରୂପ ସୂଚିତ କରେ କି ସୁନ୍ଦର ଭାବେ ନିମ୍ନ ପଂକ୍ତିତକ:

ନିଃଶ୍ୱାସର ଘନୀଭୂତ ପର୍ବତ

ଝାପ୍‌ସା ନଳ ବଣ

ହସୁଥାନ୍ତି ହଂସ ପଂକ୍ତି

ପ୍ରତିଟି ପାହାନ୍ତି

ମଣିଦୀପଟିଏ ଜାଳି ମଥା ପରେ କାଳକାଳ

ଅସ୍ତ ତାରକାର

ସେ କେଉଁ ପ୍ରତୀକ୍ଷା ସତେ!

ରୂପସୀ ଚିଲିକାର ଏକ ମନୋଲୋଭା ରୂପ ସମ୍ପଦ ଏହା! ତାକୁ ମିଳନ ତୃଷିତା ମହାନାୟିକା ଦମୟନ୍ତୀ ନିଜ ହୃଦୟ ଭିତରେ ଯେମିତି ଭାବିଛନ୍ତି କବି । ତେଣୁ ପରାମର୍ଶର ପଂକ୍ତିଟିଏ ରଚନା କରିଛନ୍ତି, ଉଡ଼େଇ ଦେ ମିତ୍ର ଏକ ରାଜହଂସ । ଆଉ କେଉଁ ସ୍ୱପ୍ନରେ ସଂଭବ / ସେ ମିଳନ ସେ ସାକ୍ଷାତ, ମଣିଷର ଅଜଣା ଭାଗ୍ୟ!

ଡ଼ଙ୍ଗାରେ ବନ୍ଧା ଯାଇଚି ବର୍ଣ୍ଣ ବିବର୍ଣ୍ଣ ଜୀର୍ଣ୍ଣ ପାଲ, ପବନର ଅନୁକୂଳରେ ଗତି କରିବ ନାବ! ଜୀର୍ଣ୍ଣ ପାଲ କବି ଭାବନାରେ ଜୀବନ୍ତ ଗୋଟିଏ ରାଜହଂସ,

ଚିଲିକାର ମିତ୍ର! ସମ୍ପର୍କଶୀଳତା କବିତା ସର୍ଜନାର ପ୍ରାଣ ଏବଂ ଅନୁଭବକୁ କରିଛି ସବୁଜ ଓ ସଜୀବ । ଚିଲିକାର ଅନ୍ୟ ଗୋଟିଏ ଦୃଶ୍ୟ-

କେଉଁ ଇଚ୍ଛାରେ ଉଜ୍ଜ୍ୱଳ ଘାସ ପତ୍ର
ଆହ୍ଲାଦିତ କରେ ମଈଁଷିମାନଙ୍କୁ
ଛୋଟ ଛୋଟ ଟାପୁମାନଙ୍କରେ ।

କବିତାର ବିଷୟବସ୍ତୁ ଗଦ୍ୟର ବିଷୟବସ୍ତୁ ସହିତ ନୁହେଁ ସମାନ । କବିତାର ବିଷୟବସ୍ତୁ କବିଙ୍କ ଭାବାନୁଭୂତି । କବିତାର ବାକ୍ୟ କୌଣସି କଥା କୁହେ ନାହିଁ, ପ୍ରଦର୍ଶିତ କରିଥାଏ ଚିତ୍ର । କବିତାର ସଂଜ୍ଞାରେ କହିଥିଲେ ପଲ୍ ଭାଲେରୀ, Poetry is an art of language କବିତା ଏକ ଶବ୍ଦ କଳା । ଏହି ଦୃଷ୍ଟିରୁ ଇଏଟସ୍ ମତ ରଖିଥିଲେ, A poem could be fashioned not from an idea, but from a language. କ୍ୱଚିତ ବୃଷ୍ଟିପଟଳ, ଆକାଶରେ ନିଷ୍କାମ ଭସାମେଘ, ଏଠି ଶରତର ବିସ୍ତୀର୍ଣ୍ଣ କାନ୍‌ଭାସ୍, 'ବିଭୋଳ ଶରତ' ଛୋଟ ଛୋଟ ଟାପୁ ଚିଲିକା ମଝିରେ, ତା ଭିତରେ ଭର୍ତ୍ତି ମଈଁଷି ପଲ୍ଲ, କେଉଁ ଇଚ୍ଛାର ଘାସପତ୍ର ଆହ୍ଲାଦିତ? ପଶୁର ଆହ୍ଲାଦ ଖାଦ୍ୟ ଓ ମୈଥୁନ! ପ୍ରଥମଟିର ପ୍ରାଚୁର୍ଯ୍ୟ କିପରି ଯେ ତାକୁ ନ କରିବ ଆହ୍ଲାଦ? ଚିଲିକାରେ ଅପରାହ୍ନ, ସ୍ୱପ୍ନ ଭଳି ଟାଣି ଦେଇ ଶହ ଶହ ଶ୍ୱେତ ପାଲ ଭାସୁଥାନ୍ତି ନୌବହ ।

'ତୃଷିତ ଚିଲିକା'ରେ ରହିଛି ଦୁଇଟି ଇମେଜ୍, ୧-ରକ୍ତର ଅନ୍ଧାରରେ ଏବଂ ୨- ଲୁଣିଆ ରକ୍ତର -ବଡ଼ ସନ୍ଦିଗ୍ଧ! କଣ ଏଇ ରକ୍ତ? ସାଧାରଣ ବ୍ୟବହୃତ ଶବ୍ଦ ଯେଉଁ ଅର୍ଥ ପ୍ରତିପାଦିତ କରେ କବିତାରେ ସେହି ଧ୍ୱନି ବିଶିଷ୍ଟ ଶବ୍ଦର ଅର୍ଥନୁହେଁ ତାହା । ସୁସାନୀ କେ. ଲାଙ୍ଗର ଉଲ୍ଲେଖ କରିଛନ୍ତି for poetry is not a kind of discourse at all କବିତା ନୁହେଁ ଭାଷା ଭାଷ୍ୟ ବା ସମ୍ବାଦ ପରିବେଷଣ! ଭାଷା କବିତାର ପ୍ରାକୃତିକ ଉପକରଣ ବା ଉପାଦାନ । କବିତା ପାଇଁ ବାସ୍ତବ ଜୀବନର ଶବ୍ଦ (language in actual life) 'ରକ୍ତ'! କବି ରିଲେକ୍‌ଙ୍କ ମତ No word in the poem is identical with the same sounding word in common use and conversation. ରକ୍ତ ପ୍ରବାହିତ ହୋଇ ଦେହଟିକୁ ରଖେ ସତେଜ । 'ରକ୍ତ' ଚିଲିକାର ତୃଷା, ତା ସୌନ୍ଦର୍ଯ୍ୟର ଧମନୀରେ ପ୍ରବାହିତ? ଲୁଣିଆ ରକ୍ତର ପ୍ରଶ୍ନ, ମଣିଷ ଅଜଣା-ଅଚିହ୍ନା, ସିଏ କ'ଣ ଚିହ୍ନିଲାଣି ତାକୁ? ଆଧ୍ୟାତ୍ମିକତାର ଗୋଟିଏ ଉହ୍ୟ ପାବଛକୁ ଶେଷ ଛତ୍ରରେ କବି ପ୍ରତିଷ୍ଠିତ କରାଇଛନ୍ତି ଯେମିତି!

ଶେଷ ସୂର୍ଯ୍ୟର ତୋରଣ ଭାଙ୍ଗି ପଡୁଛି, ଯେମିତି ଇଲିୟଟଙ୍କ ଲଣ୍ଡନ ସେତୁ!

ବିସ୍ତିର୍ଣ୍ଣ କାନ୍‌ଭାସ୍, ଚିଲିକାରେ ଘୋଟି ଆସୁଛି ରାତ୍ରୀ ! ନୌବହର ଜଳନ୍ତା ମଶାଲ ଯେମିତି ଚିଲିକାର ଦୃଷ୍ଟି, ଡ଼ାକୁଛି ମାଛମାନଙ୍କୁ; ସାମନାରେ ନୂତନ ସୂର୍ଯ୍ୟର ପ୍ରତୀକ୍ଷା ।

ବଡ଼ ଅଚିହ୍ନା ଚିଲିକାର ତୃଷ୍ଣା ! କେଉଁ ଇନ୍ଦ୍ରିୟ ତା'ର ଶୋଷରେ ଉତପ୍ତ ? କେଉଁ କଣ୍ଠ ନଳୀ ତା'ର ରୌଦ୍ର ତାପରେ ସୁଷ୍କ ? ପୂର୍ବରୁ ଅବଗତ ନିର୍ଘନ ବର୍ଷାରେ ଚୁପ୍‌ଚାପ୍ ମନ୍ତ୍ରଣା ସରିଛି ମାଛରଙ୍କାମାନଙ୍କ ସହିତ ! ଏବେ ବିଭୋଳ ଶରତ !! ଆଶ୍ୱିନର ବର୍ଣ୍ଣ ବିବର୍ଣ୍ଣ କାଶତଣ୍ଡୀ ନିଶ୍ୱାସ, ଭସାମେଘ ନିଷ୍କାମ ! ଚତୁର୍ଦ୍ଦିଗ ବିମଳ ଓ ବିଶୋଭିତ ସ୍ୱଚ୍ଛ । ଅଥଚ ଚିଲିକା ତୃଷିତ ! ସିଏ ରାତ୍ରିର ଜାଲରେ ଶୋଇଥିବା ରମ୍ଭାର ଅଧୀର ଅଙ୍ଗ !!

କାହା ସଙ୍ଗ ଲୋଡ଼ୁଛି ?

କିଏ ସେଇ ପରମ ସୌଭାଗ୍ୟବାନ ତା' ମନର ମଣିଷ ! ପ୍ରିୟ ପୁରୁଷ !

ରାଧାନାଥ ଲେଖିଛନ୍ତି, ଉଚ୍ଚାସନ ସିନା ସୁନ୍ଦରୀ ଆସୀନା ତା' ସଙ୍ଗେ ତୁଳନା ସେହି ଏକା ସିନା ! ସେହି ଅନନ୍ୟା କାଂଚି ରାଜଜେମା, ଏହି ଚିଲିକା ପଥ ଦେଇ ଆସୁଛନ୍ତି ! ଉନ୍ମୁକ୍ତ କୁଂଚିତ କୁନ୍ତଳା ସେ ତାଙ୍କ କେଶ ପାଶ ସହ ନିଜକୁ ତୁଳନା କରି ଅସମାନ ବୋଧ କରୁଥିଲେ ନୀଳ ବିଚିମାଳା ! 'ତେଣୁ କି ତରଙ୍ଗେ ଅପମାନ ଭରେ ମଥା ପିଟୁ ଥିଲେ ତରଣୀ ପଂଜରେ' (ରାଧାନାଥ) ! ତରଙ୍ଗମାଳିନୀ ଚିଲିକାର ଯେଉଁ ଦୃଶ୍ୟ କାମନାର ଜାଲରେ ଶାୟିତା ସ୍ୱର୍ଗ ଅପ୍ସରା ସେହି ଦୃଶ୍ୟ ଗୋଟିଏ ନୂଆ ଆତ୍ମିକର ଭାବରେ ରାଧାନାଥଙ୍କ ଦ୍ୱାରା ନିଆରା ! ଦୃଶ୍ୟ ଗୋଟିଏ, କିନ୍ତୁ ଦ୍ରଷ୍ଟା ଦୁଇ ଜଣ, ଦିଶୁଛି ଅଲଗା ଭାବପୂର୍ଣ୍ଣ, ଅନୁପମ ଓ ରମ୍ୟ !

ଏହା ରୂପସୀର ମାୟା ? ମୋହିନୀ ଚିଲିକା, ତୁମେ ଅନୁପମା, ଧନ୍ୟ ତୁମେ କବିଙ୍କ ପ୍ରେମିକା !

କାଳିଜାଈ କାହାଣୀର ଗୋଟିଏ ନୂଆ ପରିଶିଷ୍ଟ 'ମଂଦ ପାଣି ପାଗ ଚିଲିକାରେ' କବିତାଟି ! ଚଢ଼େଇ ଗୁହାରେ ଠିଆ ହୋଇ ଖୋଜିବା ଝଡ଼ର ଅଙ୍ଗୁଳି ଗୁଡ଼ିକୁ, ଚିଲିକାର ଜଳ ତରଙ୍ଗରେ ଖୋଜିବା ଚିଲ ଅଣ୍ଟରୁ ଖସି ପଡ଼ିଥିବା ଗାଁ ଓ ବସ୍ତିକୁ ! ଯେଉଁଠୁ ମିଳିବ କିଂବଦନ୍ତୀ, କାଳ୍ପନିକ ମିଥ୍ ଓ ରୀତିର କାଳିସୀ ନାଚ ! ମଝିରେ ଅନ୍ୱେଷାଟିଏ ଚିତ୍ରିତ: କେତେ ବାଟ ଗଲେ ଦେଖାହେବ ଆମ ସମସ୍ତଙ୍କ ମନ୍ଦଭାଗ୍ୟ ସହିତ ! କେହି କ'ଣ ଖୋଜେ ମନ୍ଦ ଭାଗ୍ୟ ? ବରଂ ଏହା ସୂଚିତ କରେ ଚିଲିକାର ମନ୍ଦ ପାଗ; ଝଡ଼ ! କେଉଁ ବତିଘରୁ ବତିଘର ଘୁରୁଥିବ ପାଲ

ଛିଡ଼ିଥିବା ଶୂନ୍ୟ ପୋତ ମୋର ! କେତେ ଉତ୍ତାଳ ଓ ଉଦାସ ଭର୍ତ୍ତି ଏଇ ଧ୍ୱନିର ଧ୍ରୁପଦୀ ! ଆନମନା କରି ପକାଏ ଚିଲିକାପରି ହରିହର ମିଶ୍ରଙ୍କ କବିତା ! ଜୀବନ ଓ ଶୂନ୍ୟ ନାବ ସମୟର ସମୁଦ୍ରରେ ଭାସୁଛି ! ସେହି ବ୍ୟକ୍ତି ଧନ୍ୟ, ଯାହାଙ୍କ ଜୀବନ ନାବ ଏହିପରି ମର୍ମସ୍ପର୍ଶୀ କବିତାରେ ଭର୍ତ୍ତି !

'ମନ୍ଦ ପାଣିପାଗ ଚିଲିକାରେ' ତୃତୀୟ ଛତ୍ର, କୁହୁକକୁ ଆବାହନ କରିଛି ଏବଂ କବିତାର ଶିଆଳୀ ଲତାରେ କାହାଣୀଟିଏ ତାର ଲୀଳା ପ୍ରକଟନ ପାଇଁ ମଂଚ କରିଛି ସଜ୍ଜିତ । ଦେଖନ୍ତୁ ସେଇ ଛତ୍ର-କେଉଁଠି ବାଲିସ୍ତୁପ ଉପରେ / ଦେବୀଙ୍କର ଉଡ଼ି ବୁଲୁଥିବା ପଣତକୁ / ଧରିବାକୁ ଚେଷ୍ଟା କରି / ଅଣ୍ଟାଏ ବାଲିରେ ଏକ ମରୁ ସୌଦାଗର / ଅବା କେଉଁ ଖବର ଆଣିବାକୁ ଯାଇଥିବା ଲୋକ / ଅନେକ ଦିନୁ ସେଠି ହଠାତ୍ ପଥର !

ଏ ବାଲିରେ କେହି ଫେରୁ ନାହାନ୍ତି, ପବନ କି ଅଶ୍ୱାରୋହୀ ! ତାହା କି କୁହୁକ ବାଲି ? ନା ଚିଲିକା ବାଲି ଶାପଗ୍ରସ୍ତ ? ରାତ୍ରୀ ଭାଗ୍ୟରେ ନାହିଁ ସେଠାରେ ବିଶ୍ରାମ ! ଶୋଷିଲା କଣ୍ଠ ଓ ଭୋକିଲା ପେଟ, ଶିରାଳ ମଣିଷ ଅହରହ ଜୀବିକାର୍ଜନରେ ବ୍ୟସ୍ତ । ତା' ପାଇଁ 'ସୁଦୂର ଭୋର୍' ! 'ସୂର୍ଯ୍ୟ ଘଣ୍ଟ' ଗୋଟିଏ ଚମତ୍କାର ଚିତ୍ରକଳ୍ପରେ ସମୃଦ୍ଧ ଏହି ଛତ୍ର ।

କାଳିଜାଈ କବିତାରେ ଝଡ଼ ଯେମିତି ବିସ୍ମୟକର ଭାବେ ଆସିଥିଲା ଠିକ୍ ସେମିତି ବିସ୍ମୟକର ଭାବେ ଫେରି ଯାଇଥିଲା । ଚିଲିକାରେ କ'ଣ ଏହିପରି ଉଠେ ଝଡ଼ ! ହରିହର ମିଶ୍ରଙ୍କ ଶବ୍ଦର ତ୍ରୁଇଁ ଖାତାରେ ଲକ୍ଷ୍ୟ କରନ୍ତୁ ଏଇ ଚିତ୍ର:

ଭାସି ଆସେ ଶବାଧାର କେଉଁ ଦେବତାର ।
ଛୋଟ ଛୋଟ ଝାଉଁବଣ
ଉଚାଁ ଉଚାଁ ତାଳଗଛଗୁଡ଼ିକର
ଆବାହନ କାଳିସୀ ନାଚରେ
ଝଡ଼ ଯାଏ ଝଡ଼ର ବାଟରେ
ନିସ୍ତୁକ ଚାବୁକ୍ ମାରି ଧୀବର ପିଠିରେ !

'କାଳିଜାଈ'ରେ ସୁନାଖରା ବିଛେଇ ହୋଇ ପଡ଼ିଥିଲା, ଏଠି କିନ୍ତୁ 'ଫେରି ଆସେ ଅମୁହାଁ ଅନ୍ଧାର !'

ଗୋଠ ଫେରା ମଇଁଷିପଲ୍ଲ ଏବଂ ନିଶ୍ଚଳ ପାଣିକୁ ଫେରି ଆସେ

ହଜିଯାଇଥିବା ସୁବର୍ଣ୍ଣ ଓ ପ୍ରବାଳର ନଗ୍ର !

କବିତାର ଶେଷଛତ୍ର, କେହି ଜଣେ ଆବାଜ୍ ଦିଏ - ପଳାତକ ରାଜହଂସ ଆସ ଆସ କେହିନାହିଁ ନିଘୋଡ଼ ଅନ୍ଧାର !

ପଳାତକ 'ରାଜହଂସ', ସେ କିଏ ? ଗୋଟିଏ ସଂଦିଗ୍ଧ ପ୍ରତୀକ ! ... the poetic use of words is not essentially communicative. (ଦି ପ୍ରୋବ୍ଲେମ୍ ଅଫ୍ ଆର୍ଟ୍, ସୁସାନୀ କେ ଲାଙ୍ଗର) ! ଏହା ଏକ କବିତାର ସୁନ୍ଦର ଉପାଦାନ, କବିତା ହୋଇ ଦିଶୁଛି ଚକ୍‌ଚକ୍ । ନିଘୋଡ଼ ଅନ୍ଧାର ଭିତରକୁ ପ୍ରତିକ୍ଷଣ ଚିଲିକା ଭିତରେ ଆସି ଥାଏ ରାଜହଂସ ! ଏଠି ତା' ପାଇଁ ମୃଣାଳ ନାହିଁ, ଅଛି ପ୍ରଚୁର ମତ୍ସ୍ୟ ! ଅଛି ଖାଦ୍ୟ ଓ ସ୍ୱପ୍ନ ।

ସଂଚୟ ଖାତାପରି ଅପ୍ - ଟୁ - ଡେ଼ଟ୍ ହେବା ପାଇଁ ଏଠି ଖୋଲା ହୋଇ ରହିଛି ଅସଂଖ୍ୟ ଜୀବନର ଡ୍ରଇଁ ଖାତା ! ଚିତ୍ରିତ ଚିଲିକା ଚିତ୍ର ନୁହେଁ, ଆକାଶ ଓ ନୀଳ ଜଳରାଶି ମାଧ୍ୟମରେ ପୃଥିବୀର ମିଳନ ଗାଥା ! ସୌନ୍ଦର୍ଯ୍ୟ ଓ ଅମୃତର ଘନନୀଳ ଅନୁଭବ, ଅନବଦ୍ୟ !



# ସୃଷ୍ଟିର ରହସ୍ୟ :
# ହରିହର ମିଶ୍ରଙ୍କ ମେଟା ଫିଜିକାଲ କାବ୍ୟ ତତ୍ତ୍ୱ

## (ଏକ)

ଫୁଲ ଫୁଟେ । ସ୍ୱପ୍ନ ଫୁଟେ । ପୃଥିବୀ ଉପରେ ଫୁଟି ବିଛୁଡ଼ି ପଡ଼େ ଜହ୍ନର ପାଖୁଡ଼ା । ପୂର୍ବବର୍ଷ ଭଳି ଫୁଟେ ବୀଜରେ ନବ ଅଙ୍କୁର । କୁମାର ବୃକ୍ଷରେ ଫୁଟେ ସବୁଜ ଯୌବନ । ମଳୟ କ୍ୱଳନର ରଙ୍ଗ ଦିନେ ଫୁଟେ ତା ବପୁରେ । ଅନ୍ତର୍ବେଦୀ ହୁଏ ରତ୍ନଦେବୀ । ରତ୍ନଦେବୀ ପୁଣି ହୁଏ ଏକ ସମର୍ପିତ ସିଂହାସନ । କମ୍ପନ ଓ ଉଦ୍‌ବେଳନ ଫୁଟାଏ ସମସ୍ତ ପାଖୁଡ଼ା । ଅଜଣା ନିଶାରେ ଫୁଲିଯାଏ ବକ୍ଷ । ବାଟୋଇ ପରି ସମ୍ପର୍କର ରାସ୍ତାରେ ଚାଲିଯାଏ ଯୌବନ । 'ପ୍ରଜାନାଂ ଅଜାୟତେ' ସୃଷ୍ଟିର ରହସ୍ୟ । କୀର୍ତ୍ତି ଓ ସ୍ମୃତି ଫୁଟେ । ଆତ୍ମା ନିଏ ନୂଆ ରୂପ । ପୁଣି ଫୁଟେ ଫୁଲ । ପୁଷ୍ପରୁ ବୀଜ ଓ ବୀଜରୁ ଅଙ୍କୁରୋଦ୍‌ଗମ ଜନ୍ମଚକ୍ର । ହରିହର ମିଶ୍ରଙ୍କର ଦାର୍ଶନିକ ଆଦିମବାଦ । ୧୯୭୮ ମସିହା ପ୍ରକାଶିତ କବିଙ୍କ ପୁସ୍ତକ 'ଚାହାଣି ମଣ୍ଡପ', ତାର ପ୍ରଥମ ଚାହାଣିରେ 'ଫୁଟିବାର ସ୍ୱପ୍ନ' । ଯେତେ ସ୍ୱପ୍ନ ସବୁ ତର୍କ ରହିତ । ପରିତୃପ୍ତ ଏକ ଏକ ନିଶାର ମହକ । ନବସୃଷ୍ଟିର ଜ୍ୱାଳାରେ ଭାଙ୍ଗି ଯାଇଥିବା ମଣିଷ କି ଆଦିମା ନିଜେ ପ୍ରକୃତି ଯେ ଏକ ମୋହମୁଗ୍ଧ ଅଦୃଶ୍ୟ ଶିକାରୀ । ବାଘୁଣୀ ଚକ୍ଷୁରେ ତା' ଚକ୍ଷୁ ମିଶିଗଲେ... ତାର ଆଦିମ ଅନୁଭୂତି ! ଆଦିମ ମାନବର ପ୍ରାଚୀନ ବଞ୍ଚିବା ପ୍ରଣାଳୀ ତାଙ୍କ "ଫୁଟିବାର ସ୍ୱପ୍ନ" ଟି । କୃଷିକର୍ମ ଶିଖିବା ପୂର୍ବରୁ ଜୀବନ ଧାରଣ ପାଇଁ ଆଦିମ ମାନବ ଗ୍ରହଣ କରିଥିଲା ତା' ପେଶା ଶିକାର । କୃଷିକର୍ମ

ଜାଣିବା ପରେ ତା' ଶିକାର ପ୍ରବୃତ୍ତି ପରିତୃପ୍ତ ହେଲାନି । ତା ମାଂସାସୀ ଚେତନା ମଝିରେମଝିରେ କଲା ଶିକାର । ମଧ୍ୟଯୁଗରେ ଏହି ଆଦିମ ପେଶା ହେଲା ଏକ ସୌଖିନ ବିଳାସ । ରାଜା ମହାରାଜା ମଧ୍ୟଯୁଗରେ ଏହି ବିଳାସକୁ ଦେଲେ ଅଭିଜାତପୂର୍ଣ୍ଣ ମର୍ଯ୍ୟାଦା । ଆଧୁନିକ ଓଡ଼ିଆ କବି ଆଖିରେ ଏହି ଆଦିମ ପ୍ରବୃତ୍ତିଟି ଜୀବନର ଦାର୍ଶନିକ ତତ୍ତ୍ୱ ସହିତ ଜଡ଼ିତ ରହିଛି ।

ସମ୍ପର୍କ ଓ ସମୁଦ୍ର ଏକାକାର ଆଦିମ ଅନ୍ଧକାର । ସମ୍ପର୍କ ଅଙ୍ଗାର ଓ ବାରୁଦରୁ ଅଙ୍ଗୀକାର କରେ ଏକ ଅଦୃଶ୍ୟ ସମ୍ଭାବନାକୁ । ବହୁ ତରଙ୍ଗିତ ପଞ୍ଚଭୂତ ଦେହ ଆଦିମ ପିପାସା କବଳିତ ହୋଇ କୃଷ୍ଣପକ୍ଷର ଶାଢ଼ୀରେ ମୁକ୍ତ କବରୀରେ ଖୋସିଦେବ ରଜନୀଗନ୍ଧାର ସ୍ତବକ ଗୋଟିଏ !! ଗୋଟିଏ ଅଜଣା ଲାଲକଢ଼ର ସମ୍ଭାବନାରେ ଅନୁରାଗୀ ଓ ବୈରାଗୀ ପଥହରା କବି ଦେଖେ "ତମେ ନଥିଲେ ବି ପ୍ରତିଫଳନ ତମର" । କେଉଁ ଅଜ୍ଞାତ ସ୍ୱରଲିପି ନେଉଛି ଜୀବନ୍ୟାସ । ଆଦିମ ମଣିଷ ଇମିତି ସବୁବେଳେ ସୃଷ୍ଟିମୁଗ୍ଧ । ସୃଷ୍ଟି ରହସ୍ୟ ଦୁର୍ବୋଧ୍ୟ ସମୟର ରୂପାନ୍ତର; ମୃତ୍ୟୁର ମହାଦେଶ ଆବିଷ୍କାରରେ ଜଣେ ଆଦିମ ଯାଯାବର । କବି ହରିହର ମିଶ୍ରଙ୍କ ବିଭୂତି ଭଳି ଫୁଟନ୍ତା ସ୍ୱରରେ ସୃଷ୍ଟି ପ୍ରାରମ୍ଭରେ ସେଇ ଅଜଣା ନୀରବତାର ତର୍ଜମା: "ଦେହ ଆମ ପରିଚିତ ପଞ୍ଚଭୂତରୁ / ଅଦୃଶ୍ୟ ଗୋଲକର ଆନନ୍ଦଧାମକୁ / ସମ୍ଭାବନାର ତରଙ୍ଗରେ / ଭରିଯିବ କୋଳର ବେଳାଭୂମି / ତମେ ଛାଡ଼ିବ ସେ ଅସ୍ଥିର ସମୁଦ୍ରକୁ... / ନା ସମୁଦ୍ର ତମକୁ... / ମୁଁ ଆବିଷ୍କାର କରିବି ପୁନଶ୍ଚ / ପୂର୍ଣ୍ଣାଙ୍ଗ ସମ୍ପର୍କର ପ୍ରାଚୀନତା / ତମରି କୁହୁକ ଛୁଆଁରେ ଫେରି ପାଇବି / ଅଜଣା ଏକ ମୂର୍ଚ୍ଛନାର ମହାଦେଶ / ସେ ମୁହୂର୍ତ୍ତ ...ସେ ସମୟ /ରୂପାନ୍ତରିତ ପ୍ରତିଟି ମୃତ୍ୟୁରେ" । (ନୀରବତା ଓ ଅନ୍ଧକାର) ଇଚ୍ଛାବନରେ ସୂର୍ଯ୍ୟାସ୍ତର ଅମେଣ୍ଟା ଶୋଷ ଇଏ । ଶିକାରୀ ଓ ଶିକାରର ରହସ୍ୟ ! ଯେଉଁଠି ଥାଏ ନିସ୍ତେଜ ଦେହ ଓ ବିଚ୍ଛିନ୍ନ ଆତ୍ମା ତା' ସଞ୍ଚିତ ମହକରେ ଶୂନ୍ୟତାକୁ ପାଲଟାଏ ନୀଳନୀଳ ଯାତାୟତ ରାସ୍ତାରେ । ପାଦଠୁ ମସ୍ତକ ପର୍ଯ୍ୟନ୍ତ ମଳୟ ସାଉଁଳେଇ ନେଲେ ବି ଅକ୍ଷୟ ମଣିଷର କାର୍ଯ୍ୟ ଶେଷ ହୋଇଯାଏ ନାହିଁ । କବି ଶ୍ରୀ ମିଶ୍ର କହନ୍ତି – 'ସେ ଦେହ ଆଉ ବଢ଼ିବ ନାହିଁକି କ୍ଷୀଣ ହୋଇଯିବ ନାହିଁ ।' ମୃତ୍ୟୁ ଶିକାର କରୁଛି ମଣିଷକୁ । ପୁରୁଷ, ସ୍ତ୍ରୀକୁ । ସମୟ ପୁରୁଷକୁ ଓ ତା' ଯୌବନକୁ । ପୁଣି ନୂଆ ସୃଷ୍ଟି ବାଦାମୀ କୋଳାହଳର ଓ ପୁଣି ଶିକାରର ଅପୂର୍ଣ୍ଣ ବାସନା ଓ ଶିକାର ପରେ ତୁଚ୍ଛା ଡ଼ିମ୍ବଖୋଳ ! ଆଧୁନିକ ମଣିଷର ରସରହସ୍ୟମୟ ଜୀବନ ଚକ୍ର ଜୀଜ୍ଞାସା ! କବିଟି ଅତ୍ୟନ୍ତ ଭଦ୍ର । ଗର୍ଭବତୀ ସମୟର ଜରାୟୁରେ ଭ୍ରୁଣଟିଏ ଅଙ୍କୁରିତ ହେବାକୁ ଛାଡ଼ିଦେଇ, ଶିକାର କରି ସାରି, ଶିକାରୀ ନିଜ ସ୍ଥିତିଟିକୁ ଅସ୍ତିତ୍ୱବାଦୀ ଦୃଷ୍ଟିରେ କରୁଛି ଦର୍ଶନ । "ବଞ୍ଚିବାରୁ ବିଚ୍ଛିନ୍ନ

କି କେହି / ଝର୍କା ଅର୍ଥ ନୁହେଁ ଯେ / ବାହରକୁ ଦେଖୁଥିବା / ନତୁବା ବୋହୂ ଭୂଆସୁଣୀ ହୋଇ ରହିଯିବା / ବଞ୍ଚିଥିଲୁ, ବଞ୍ଚିଛୁ ଓ ବଞ୍ଚିଥିବୁ / ଉଡୁଥିବା ସପ ମସିଣାରେ ବସି ଶରଦ ଜ୍ୟୋସ୍ନାରେ ।" (ମାୟା ସାମ୍ରାଜ୍ୟ) ଏହା ନୁହେଁ ଗୋଟିଏ ଅନିଶ୍ଚିତ କ୍ଷମତାର ବ୍ୟାଖ୍ୟା । ସ୍ନେହ ନ ଥିଲେ ଯେମିତି କବିତା ଲେଖି ହୁଏନା, ଠିକ୍ ସେମିତି ବ୍ୟଞ୍ଜନା ନ ଥିଲେ ସବୁ କଥା ସ୍ପଷ୍ଟ ହେବାକୁ ଡ଼େରି ଲାଗେନା । ଯେଉଁ ନୀଳ ତାରକାକୁ ସମସ୍ତେ ଦେଖୁଛନ୍ତି ରାତ୍ରିର, ନିରୋଳା ବେଳାଭୂମି ଉପରେ କବି ମଧ ଦେଖୁଛନ୍ତି ସେଇ ନୀଳ ତାରକାର ଜକ୍ ଜକ୍ ଦେହକୁ । କିନ୍ତୁ ତାଙ୍କ ଡ଼ୋଳା ଆଗରେ ବ୍ୟଞ୍ଜନାର ପ୍ରଚକ୍ଷୁ; ତେଣୁ ସିଏ ଉଡୁଛନ୍ତି ଆରବ୍ୟ କଥାନାୟକ ସିଂଦିବାଦପରି ଖଣ୍ଡିଏ ସପ ମସିଣାରେ ! ଡ଼େଇଁଡ଼େଇଁ ସୃଷ୍ଟି ସ୍ଥିତି ପ୍ରଳୟର ଅନ୍ତହୀନ ମୋହରାତ୍ରି; ସ୍ୱୟଂ ମ୍ରିୟମାଣ ଲାସ୍ୟର ପ୍ଲାବନରେ ତାଙ୍କ ଚେତନା ନିମଗ୍ନ । କବିଙ୍କ ପରିତୃପ୍ତ ଶବ୍ଦର ମୂର୍ଚ୍ଛନାରେ ଆସନ୍ତୁ ପୁଣି ଥରେ ଭେଟିବା ଶିକାରର ସେଇ ଆଦିମ ବ୍ୟଞ୍ଜନାୟିତ ମୁଗ୍ଧ ଚେତନା: "ଡ଼େଇଁ ଡ଼େଇଁ ସୃଷ୍ଟି ସ୍ଥିତି ପ୍ରଳୟର / ଅନ୍ତହୀନ ସୀମାସରହଦ / ଗର୍ଭିଣୀ ହରିଣୀ ଭଳି / ତୁ ଆଉ ପଡ଼ିବୁନି / ମହାକାଳ ମହା ଅନ୍ଧକାରେ / ଅଦୃଶ୍ୟ ଶିକାରୀ କେଉଁ ବ୍ୟାଧର ଜାଲରେ / ସୁନି ମିରିଗ / ମୋର ନାଚି ନାଚି ଯାଆ / ଅଚେତନ ବୁକୁପରେ ଡ଼େଇଁ ଚାଲିଆ / ଅହୋରାତ୍ର ମୋହରାତ୍ରି / ହେ ମୋର ଯେତେ କାଳରାତ୍ରି / ବିଜୁଳି କମ୍ପନ ଯେତେ ଅସ୍ତର ଝଲକ / ଚଞ୍ଚଳ ପଲକ ଯେତେ ସମୟର / ଆସ ଆମ ଅପେକ୍ଷାରେ..." ! (ମାୟା ସାମ୍ରାଜ୍ୟ) ଭାଗବତ ବୋଧ ହେଉଥିବା ଆତ୍ମା ଏକ ଅବିଚ୍ଛିନ୍ନ ଭଗ୍ନାଂଶ । ସଜଡ଼ା ମିଥ୍‌ରେ ଦାର୍ଶନିକ ସତ୍ୟଟିର ଦୃଶ୍ୟଗତ ଚିତ୍ରକଳ୍ପ:

"ମୁଁ ସେଠି ସମ୍ପର୍କର
ସବୁଜ ଛନଛନ ଘାସବୁଦାଟିଏ
ଶୁକ-ମୁଖ-ପତିତ !
ଶିଶୁବଟବୃକ୍ଷଟିଏ"

ବ୍ୟଞ୍ଜନାରେ ନିତ୍ୟ ସ୍ୱରୂପର ଇଏ ନବକଳେବର ! ଯୌନ ଚେତନା ତାଙ୍କ ପ୍ରଜାସୃଷ୍ଟି ଦୃଷ୍ଟିରୁ ଗଭୀର ଆଧ୍ୟାତ୍ମିକ । ନୁହେଁ ନଗ୍ନ ବା ଅଶ୍ଳୀଳ । ଆଦିମ ମଣିଷ ପାଇଁ ସବୁ ସ୍ତୂପୀକୃତ ଅଚିହ୍ନା ହେଲେ ବି ଏକ ଏକ ଅଭଙ୍ଗ ବିଶ୍ୱାସ । ତୀର୍ଥାଶ୍ରୟୀ ସଂଯମର ସ୍ୱରଲିପି ସେକ୍ସକୁ ଅଭିବ୍ୟକ୍ତ କରିଛି । ଯଥା – "ସ୍ୱର୍ଣ ସଂଜୀବନୀ ଢ଼ାଳି / ସମୁତ୍ଥିତ ଜ୍ୟୋତିର୍ଲିଙ୍ଗ ଆଲୋକ ଗଙ୍ଗାରେ / ନିଶାର୍ଦ୍ଧ ବା ଯୁଗାନ୍ଧର ଘନ ତମସାରେ / ଅନନ୍ତ ଶୟନରେ ମୋର କୋଳାଗ୍ରତ ହୁଅ ତୁମେ / ଧାରଣ କର ସମସ୍ତ ସୃଷ୍ଟିର ରହସ୍ୟ ।"

(ଦୁଇ)

କବିତା ନିଜେ ଏକ ମେଟାଫିଜିକ୍ସ (ତତ୍ତ୍ୱ ମୀମାଂସା) । ସତ୍ ତାର ବିବେଚ୍ୟ ପଦାର୍ଥ । ସତ୍ ପ୍ରତୀକିତ ହୋଇ ହୁଏ ପ୍ରଦର୍ଶିତ । ସତ୍ୟ ନିଶ୍ଚୟ କରାଯିବା ସମ୍ଭାବନା ଦୁଇ ପ୍ରକାର ବସ୍ତୁରେ ଥାଏ । ୧- ଭୌତିକ ପଦାର୍ଥ ଯଥା ନଦୀ, ପର୍ବତ ଓ ବୃକ୍ଷାଦି ଏବଂ ୨- ସୁଖ, ଦୁଃଖ ଓ ଔଦାସୀନ ଇତ୍ୟାଦି । ନିଜ ଇଂନ୍ଦ୍ରିୟମାନଙ୍କରେ ପଦାର୍ଥମାନଙ୍କୁ ସେହି ରୂପରେ ହୁଏ ସତ୍ ।

ଇନ୍ଦ୍ରିୟକୁ ବାଦ ଦେଲେ ପଦାର୍ଥକୁ ପରୀକ୍ଷା କରିବାକୁ କବି ପାଖରେ ଆଉ କଷଟି କାହିଁ? ସତ୍‌କୁ ଉପଲବ୍ଧ ଏଠି କରାନ୍ତି ଇନ୍ଦ୍ରିୟ୧ ନବରସ ଲୀଳା ରଚେ କଥନ ମଞ୍ଚରେ । ଅଭିବ୍ୟକ୍ତ ହୁଏ ନାଟକୀକୃତ ଭାବେ ସଂସାର ଓ ଜୀବନ । "ପରିତୃପ୍ତ ଶିକାରୀ ସେ / ଅଶ୍ରୁ ବିସର୍ଜନ କରି ଝରଣାରେ / ଶୋଇପଡ଼େ ସ୍ୱପ୍ନର ଚଟାରେ / ଅଦୃଶ୍ୟ ମହକ ପାଇଁ ଅଜଣା ନିଶାରେ ଯେବେ । ବୁକୁ ଭରିଉଠେ ।" ଶୃଙ୍ଗାରେ ସାତ୍ତ୍ୱିକତା ପୁଣି କେଉଁଠି ତାମସିକ ବିଭସ୍ତତାରେ କରେ ମିଳନର ମୀମାଂସା । ଯଥା 'ପ୍ରେତାତ୍ମାର ପଂଜରା ଥରାଇ ଆସେ / ଗଛ ବୁଛ ମଟମଟ ଡ଼ାକେ / ଭୟକୁ ଭୟ ଲାଗେ ଛୁଇଁବାକୁ ତାକୁ / ଦାନ୍ତ କଟମଟ କରେ ଚନ୍ଦ୍ରାଲୋକ / ଚକମକ ହସରେ ତାର / ମିଳେଇ ଯାଅତମେ ପେନ୍ଥା ପେନ୍ଥା ଅଚିହ୍ନା ଫୁଲରେ / ଅମୃତାୟନ । ଯସ୍ୟ ଛାୟାଽମୃତଂ ତସ୍ୟ । ମିଳନ ଶେଷ । ସଯତ୍ନ ପାଳିତ ସଂପର୍କ ଉତ୍ସର୍ଗିତ । ଅଫେରନ୍ତ ଭବିଷ୍ୟତ ଦୂରବର୍ତ୍ତୀ ସ୍ୱପ୍ନଟିଏ ହୋଇ ରହିଗଲା ଜରାୟୁର ଧଳା ଲଫାପା ଭିତରେ । ବୈରାଗ୍ୟ ସ ବିଛିନ୍ନତାବୋଧ ମହିମାମୟ କାରୁଣ୍ୟ ହୋଇ ଠିଆହେଲା । ନିରବତା କୁହୁଡ଼ିପରି ବ୍ୟାପି ଗଲା ନିଜ ସାମାଜିକ ଚାହିଦାଟିର ସ୍ଥିତିକୁ ଦେଖାଇ ଦେବାକୁ । କବି ଇଲିୟଟଙ୍କ ପରି ଥାକେ ପ୍ରତୀକ ସାମ୍ନାରେ ଦେଲେ ଥୋଇ: 'ତାଜ ଅବା ପିରାମିଡ଼ ଭିତରେ / ନମାଜ କି କାବାଲ ଶୁଣୁଥିବା ବୁର୍ଖାବତୀମାନେ / କୁଟିଆ ରମଣୀମାନେ ଅବା କାନ୍ଦୁଛନ୍ତି ଆତ୍ମୀୟଙ୍କ ଦଶାହରେ । ମୁହଁକୁ ଘୋଡ଼ାଇ ରଖି ମୁକୁଳା କେଶରେ / ଶୁଚିସ୍ମିତା ପାରାୟଣ କରେ ଆଜି ଶ୍ମଶାନରେ / ନିଜେ ଥାଇ ନିଜର ଜ୍ୱଳନ୍ତ ଶିଖାରେ / ସଂପର୍କ ବି ସେଇଭଳି ତମର ମୋହର ଯେତେ ଦେହ ବିଦେହର ଏକରୁ ବହୁ ହୁଅ/ ବହୁ ହୁଏ ଏକରେ ଲୀନ ।'

ବଢ଼େ କୁଟୁମ୍ବ ସମାଜ । କନ୍ୟା ହୁଏ ପତ୍ନୀ । ପତ୍ନୀରୁ ଜନନୀ ଓ ସେଇ ପୁଣି ଦିନେ ହୁଏ ଆଈ !! ସମୟ ବଦଳାଏ ସମ୍ବାଦକୁ ବୟସକୁ ଓ ଭୂମିକାକୁ । ମୂଳସତ୍ୟ କିନ୍ତୁ ଥାଏ ଅବିକୃତ । ସଂସାର ରଙ୍ଗମଞ୍ଚ ଓ ଅଭିନେତା ମଣିଷ କେତେବେଳେ ଯେଉଁ ଭୂମିକା ତା' । ଆଦିମରୁ ଉନ୍ନତ ଓ ସୁସ୍ଥ ସାମାଜିକ ପ୍ରଥାର ପହଂଚ ଶବ୍ଦଲିପି, ନାଁ ଗାଁ ଓ କବଲିୟତ ସ୍ୱତ୍ୱର ସ୍ଥିତି ବଡ଼ ବିଚିତ୍ର ଏଠି । ସତ୍ୟ କରାଏ ବିସ୍ମିତ କରାଏ ଉଭଟ । ମଣିଷ ଜାଣେ ଗାଧୁଆ କୁଣ୍ଡରୁ ପଡ଼େ ନାହିଁ ମାଛ, ତଥାପି ପକାଏ ବନଶୀ । ବଂଚିବାଟା ସ୍ଥିତିବାଦୀ ରଙ୍ଗରେ ରଙ୍ଗିଆ ଦିଶୁଛି ।

କବିତା ପୃଥକ ଅବସ୍ଥାରୁ ସୃଷ୍ଟି ହୁଏ ନାହିଁ, କବିତା ଆରମ୍ଭ ହଏ ସଂପର୍କରୁ । କବି ବସ୍ତୁମାନଙ୍କ ବଳୟ ଭିତରେ ଭାସୁଥାଆନ୍ତି । ତାଙ୍କ ବହିର୍ଦୃଷ୍ଟି ଓ ଅନ୍ତର୍ଦୃଷ୍ଟିର ବାତାୟନ ଥାଏ ଉନ୍ମୁକ୍ତ । ହଠାତ୍ କେଉଁ ଏକ ବସ୍ତୁ ତାଙ୍କ ଅନ୍ତର୍ଦୃଷ୍ଟିକୁ ସ୍ପର୍ଶକରି ଦେଇଛି । ଗନ୍ଧ ଓ ରୂପ ସ୍ୱତଃ ଛୁଇଁ ଯାଇଛି ତାଙ୍କ ଆତ୍ମ ଜଗତକୁ । ଭିତରର ନିଃସଙ୍ଗତା ହଠାତ୍ ଶବ୍ଦଙ୍କ ଆତ୍ମୀୟତା ଆଣେପୋଛି । ସାମ୍ନାରେ ପ୍ରକଟିତ ହୋଇଯାଇଛି । ସୁଠାମ କବିତା ପରୀଟିଏ ପରି । ବସ୍ତୁ ବ୍ୟୂହର କେନ୍ଦ୍ରରୁ ବ୍ରହ୍ମର ବୈଚିତ୍ର ବିହ୍ୱଳ ଓ ଆବେଗଦୀପ୍ତ କରନ୍ତି କବିଙ୍କୁ । କବି କଳସୀଟିଏ ହୋଇ କରିବସନ୍ତି ନିଜ ଭାବ ସଂବେଗର ଆବୃତ୍ତି । କବି କିଛି ଦେଖନ୍ତି ନାହିଁ କି ଲେଖନ୍ତି ନାହିଁ, ଗଢ଼ନ୍ତି ମୃତ୍ତିକାରେ ପାତ୍ର, ପରିବେଶର ଚିତ୍ର । ଆଙ୍କନ୍ତି ଶବ୍ଦରେ କମନୀୟ କବିତ୍ୱ । କବିତା ଏକ (ବିଙ୍ଗ୍) ସତ୍ତା, ନିଃସତ୍ତା (ନନ୍‌ବିଙ୍ଗ୍) ରୁ ସ୍ୱତଃ ନିଏ ରୂପ । ନୀରବତା ହୁଏ ସଂଗୀତମୟ, ହୁଏ ଅର୍ଥବନ୍ତ । ବସ୍ତୁ ଭାବ ରଚନା କଲା; ତାହା ହୋଇଗଲା କବିତାର ଭାବ । ଭାବୁକ ଅନୁଭବ ଓ ଭୋଗ କରନ୍ତି ପାଠକ । ମନସ୍ତତ୍ୱବିତ୍ ସମୀକ୍ଷକ କହନ୍ତି, କବିଙ୍କ ସୃଷ୍ଟିକ୍ଷମ ମନ ଅନୁଭବକୁ ବୁଦ୍ଧିର ଅନ୍ୱେଷଣଶୀଳ ପ୍ରବୃତ୍ତି ପାଖକୁ ପଠାନ୍ତି । ବୁଦ୍ଧି ଓ ହୃଦୟାବେଗ କବିତା ଉଦୟରେ ହୁଅନ୍ତି ସହାୟକ । ଚିତ୍ତବୃତ୍ତି ଓ ବୃଦ୍ଧି ଆବେଗକୁ କରି ପକାନ୍ତି ବସ୍ତୁ । ଯଥା – "ଖଳଖଳ ହସଭଳି ଶିଶୁର / କେଉଁ ଦୃଷ୍ଟ ତାରାର ଝରଣା / ଅଭିସନ୍ଧି ଭେଦିଯାଏ ମନଗହନର" ।

'ଘଟପୂଜା', 'ସାହାଣମେଲା', 'ଚାହାଣୀ ମଣ୍ଡପ', 'ଗଣବ୍ରହ୍ମ', 'ଇନ୍ଦ୍ରଦ୍ୟୁମ୍ନ' ଓ 'ଶୂନ୍ୟ ସିଂହାସନ' କବିତା ଗୁଡ଼ିକ ପ୍ରାଚୀନ ଜଗନ୍ନାଥ ସଂସ୍କୃତିର ବାହକ । ଆଧୁନିକ ଜୀବନବୋଧ ଭିତରେ ଆଧ୍ୟାତ୍ମିକତା, ବଞ୍ଚି ରହିବାର ପ୍ରେମମୟ ପୁଣ୍ୟ ନିଶ୍ୱାସ ବିଶ୍ୱାସର ଶକ୍ତ ଓ ସବୁଜ ଡ଼ାଳ ପ୍ରତିଟିରେ ହୋଇଛି ଛାୟାଛତ୍ର । ନିଷ୍କଳଙ୍କ ପରିଣତ ହାତ କମକୁଟ ଜିଜ୍ଞାସାମୟ ବିସ୍ମୟକୁ କରିଛି ଚିତ୍ରିତ । ହରିହର ମିଶ୍ରଙ୍କ କବିତାର ଭାସ୍କର୍ଯ୍ୟ ନିର୍ଭୁଲ ଓ ନିର୍ବିଶେଷାତ୍ମକ । ନର୍ତ୍ତକୀର ତନୁ ନୃତ୍ୟ ପରି

ତାଙ୍କ ଶବ୍ଦ ସଂଗୀତର ଅଭିସାରରେ ଶୁକ୍ଲାଭିସାରିକା । ପ୍ରତି ପଂକ୍ତିରେ ନିମଜ୍ଜିତ ବାସକ-ସଜ୍ଜିକା ଓଠ ଓ ହୃଦୟର ଉତ୍କଣ୍ଠା । ଅତିକ୍ରମ କଳ୍ପନା ଓ ପ୍ରବଣତା ସତ୍ୟର ଅବୟବ । ଏହି ପରିପ୍ରେକ୍ଷୀରେ ତାଙ୍କ 'ସ୍ୱପ୍ନ ବିନିମୟ' କବିତା ସଂଚୟନରୁ ସ୍ମରଣ କରାଯାଇପାରେ ପଂକ୍ତି କେତୋଟି । "ସମୁଦ୍ରର ସବୁ ଗୀତ ଥିଲା ତାର ପବନରେ / ଯାହା କେବେ ନଥିଲା ଢ଼େଉରେ / ଆକାଶର ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା / ଅତଳ ଜଳରେ ତାର ଖୋଲିଥିଲେ ଦୃଶ୍ୟର ପସରା / ପ୍ରତି ବାରି ରେଣୁରେ ଜଳ ସଂଘାତରେ / ଅଦୃଶ୍ୟ ସେ ନୀଳ ଜ୍ୟୋତି / ଗୁରୁଣ୍ଡି ଗୋପାଳ ଭଳି ଖେଳୁଖେଳୁ / ପରିଣତ ଅନନ୍ତ୍ ବିଗ୍ରହେ ସତେ / ସୁନାର ଗୌରାଙ୍ଗ ଠାରୁ କେତେ ବାଟ / ତୋଟା ଗୋପୀନାଥ ?"

ରହସ୍ୟ ଓ ଜିଜ୍ଞାସା ପରସ୍ପର ପରିପୂରକ, କବିତାର ଆତ୍ମାରେ ଜଡ଼ିତ । ଆଙ୍ଗିକରେ ଚିତ୍ରଗୁଡ଼ିକ ପୌରାଣିକ । ଗୁରୁଣ୍ଡି ଗୋପାଳ, ସୁନାର ଗୌରାଙ୍ଗ, ତୋଟା ଗୋପୀନାଥ, ପ୍ରତ୍ୟେକ ଦୃଶ୍ୟଗତ ମିଥ୍ । 'ଅଦୃଶ୍ୟ ସେ ନୀଳଜ୍ୟୋତି, ସୂର୍ଯ୍ୟ, ଚନ୍ଦ୍ର, ତାରା, ସମୁଦ୍ର ଓ ବସ୍ତୁ ହୋଇଯାଇଛନ୍ତି । ଯାହାଙ୍କୁ ଜାଣିଲେ ଆଉ କିଛି ଜାଣିବାକୁ ବାକି ରହେ ନାହିଁ, ଉପନିଷଦୀୟ ପ୍ରଶ୍ନଟି କବିଙ୍କୁ ସବୁ ଉତ୍ସାହ ଓ ଉତେଜନାରୁ ନେଇଯାଇଛି ଅନିର୍ବଚନୀୟ ସମ୍ବନ୍ଧ ଜଗତକୁ । ବାସ୍ତବଜଗତର ବସ୍ତୁରାଜି ଭିତରୁ ଏକ ଅଲୌକିକ ସମଗ୍ରତାକୁ ।'



# ଶବ୍ଦର ଆଇନାରେ ବ୍ରହ୍ମ କଣିକା

ମୁଣ୍ଡକୋପନିଷଦରେ ବର୍ଣ୍ଣିତ, 'ପ୍ରଣବୋ ଧନୁଃ ଶରୋ ହ୍ୟାତ୍ମା ବ୍ରହ୍ମ ତଲ୍ଲକ୍ଷ୍ୟ ମୁଚ୍ୟତେ' । ଅର୍ଥାତ୍ - ପ୍ରଣବ ଧନୁ, ଶର ଆତ୍ମା ଏବଂ ଏହାର ଲକ୍ଷ୍ୟ ବ୍ରହ୍ମକୁ କରିବା ବିଦ୍ଧ ! ବ୍ରହ୍ମ ହେଉଛନ୍ତି 'ଜ୍ୟୋତିଷାଂ ଜ୍ୟୋତିସ୍ତଦ୍', ସମସ୍ତ ଜ୍ୟୋତିଙ୍କ ଜ୍ୟୋତି ! ତାଙ୍କ ଉପସ୍ଥିତି, 'ହିରଣ୍ମୟେ ପରେ କୋଶେ ବିରଜଂ ବ୍ରହ୍ମ ନିଷ୍କଳମ୍' ! ପ୍ରକାଶମୟ ପରମ କୋଶରେ ସେ ନିର୍ମଳ, ଅବୟବ ରହିତ (ନିଷ୍କଳମ୍) ବ୍ରହ୍ମ ! ପୁନଶ୍ଚ କୁହାଯାଇଛି 'ବ୍ରହ୍ମୈ ବେଦମମୃତଂ', ବ୍ରହ୍ମ ଅମୃତ, 'ବିଶ୍ୱମିଦଂ ବରିଷ୍ଠମ୍', ସଂସାର ବା ସଂପୂର୍ଣ୍ଣ ଜଗତର ଇଦମ୍ ବରିଷ୍ଠମ୍, ସର୍ବଶ୍ରେଷ୍ଠ ଏହା !

ସେହି ସର୍ବଶ୍ରେଷ୍ଠ ଅମୃତରୁ କଣିକାଏ କବି ହରିହର ମିଶ୍ର ତାଙ୍କ ରଚନା 'ବ୍ରହ୍ମକଣିକା' କାବ୍ୟିକ ପୁଷ୍ପରେ କରିଛନ୍ତି ବିତରିତ । ଉପନିଷଦରେ ଋଷି - ଶିଷ୍ୟ ଗୁରୁଙ୍କ ଚରଣ ପଦ୍ମରେ ପ୍ରାର୍ଥନା କରିଛନ୍ତି, 'ଭୋ ବ୍ରୂହୀତ୍ୟୁକ୍ତା ତ ଉପନିଷଦ ବ୍ରାହ୍ମୀଂ ବା', ଅର୍ଥାତ୍ - ହେ ଗୁରୁଦେବ, ରହସ୍ୟମୟ ଉପନିଷଦ ବିଦ୍ୟା, 'ବ୍ରାହ୍ମୀମ୍' - ବ୍ରହ୍ମ ବିଷୟକ କରନ୍ତୁ ଉପଦେଶ !

ସୁକେଶା ଭାରଦ୍ୱାଜଙ୍କୁ ପିପ୍‌ପଳାଦ ଦେଇଛନ୍ତି ଉପଦେଶ, 'ଇହୈବାନ୍ତଃ ଶରୀରେ ସୋମ୍ୟ ସ ପୁରୁଷୋ ଯସ୍ମିନ୍ନେତାଃ ଷୋଡ଼ଶ କଳାଃ ପ୍ରଭବନ୍ତୀତି, (ପ୍ରଶ୍ନୋପନିଷଦ୍, ୬ଷ୍ଠ ପ୍ରଶ୍ନ, ୨)' ଅର୍ଥାତ୍, ହେ ପ୍ରିୟ ସୁକେଶା ! ଯେଉଁ ପରମେଶ୍ୱର ଷୋହଳ କଳା ସମୁଦାୟ ସଂପୂର୍ଣ୍ଣ ଜଗତ୍ ରୂପ, ତାଙ୍କ ଠାରୁ ବିରାଟ ଶରୀର ହୋଇଛି ଉତ୍ପନ୍ନ, ସେହି ପରମ ପୁରୁଷ ଆମ ଏଇ ଶରୀର ଭିତରେ ବିରାଜମାନ ଅଛନ୍ତି,

ତାଙ୍କୁ ଖୋଜିବା ପାଇଁ ଅନ୍ୟତ୍ର ଯିବା ଦରକାର ନାହିଁ 'ବ୍ରହ୍ମ କଣିକା' ରେ କବି ହରିହର ମିଶ୍ର ତାହାଙ୍କୁ ଖୋଜିବାକୁ ସଂସାରର ଶ୍ରେଷ୍ଠ ଗ୍ରନ୍ଥ ବେଦ ଗୁମ୍ଫା ଭିତରକୁ କରିଛନ୍ତି ଅନୁପ୍ରବେଶ! ତାଙ୍କର ପ୍ରଥମ ଦ୍ୱାରରେ ବିଦ୍ୟମାନ ମହାମଂତ୍ର ଓଁ ଏବଂ ତତ୍ ପଶ୍ଚାତ୍ ମହାଦେବୀ ଗାୟତ୍ରୀ ହୁଅନ୍ତି ଦୃଶ୍ୟ!

ମାଣ୍ଡୁକ୍ୟ କହନ୍ତି, 'ଅୟମାତ୍ମାଧକ୍ଷରମୋଙ୍କାରୋଽଧିମାତ୍ରଂ, ଅର୍ଥାତ୍ ଏହି ପରମାତ୍ମା ପ୍ରଣବର ଅଧିକାରରେ ବର୍ଣ୍ଣିତ ହେବା କାରଣରୁ (ଅଧିମାତ୍ରମ୍) ତିନିମାତ୍ରାଯୁକ୍ତ ଏବଂ ତାହା ଅ, ଉ ଓ ମ! ଓଁ ଆତ୍ମାଙ୍କ ନାମ ଏବଂ ପରମାତ୍ମାଙ୍କ ନାମ। ସିଏ 'ରସୟିତା ମନ୍ତା' (ପ୍ରଶ୍ନୋପନିଷଦ), ସ୍ୱାଦ ବା ରସ ପ୍ରଦାନକାରୀ ଏବଂ ମନନ ତାଙ୍କୁ କରାଯାଏ, (ମନ୍ତା)! ମନନରୁ ମିଳେ ରସ।'

'ନବମୁଣ୍ଡୀ' ପ୍ରବନ୍ଧରେ ଯୋଗୀରାଜ ଗୋପୀନାଥ କବିରାଜ କହନ୍ତି, 'ଯିସେ ବ୍ରହ୍ମ କହାଜାତା ହେି, ଓ୍ୱହି ମହାପ୍ରକାଶ ହେି।' ଏହି ମହାପ୍ରକାଶର ଯେଉଁଠି ଲୀଳା ହେଉଛି ତାହା ହୃଦୟ! ପ୍ରାପ୍ତ ହେବା ଅଟେ ସ୍ୱାଦ! ସ୍ୱାଦ ଆନଂଦ ଏବଂ ଆନଂଦ ଗୁଣାତୀତ ଅବସ୍ଥା। ଜୀବର ବ୍ରହ୍ମ ସହିତ ଅଭେଦ (as one with Brahma), ସେହି ଅଭେଦ ଉପଲବ୍ଧି ଜ୍ଞାନ ଅଟେ 'ବ୍ରହ୍ମବିଦ୍ୟା'। ଯେତେବେଳେ ଜୀବ ଓ ପରମବ୍ରହ୍ମ ମିଶି ଯାଇ ଏକ ହୋଇଯା'ନ୍ତି କିମ୍ୱା ରାଧାକୃଷ୍ଣ ମିଳିତ ହୋଇ ଏକ ହୋଇଯାନ୍ତି, ସେହି ଏକ ହେବା ବା ଅଦ୍ୱୈତ ଉପଲବ୍ଧି ଜିନିଷଟିର ନାମ 'ରସ'। 'ରସୋ ବୈ ସଃ', ଅଖଣ୍ଡ ବ୍ରହ୍ମଙ୍କ ଏଠାରେ ରସ ରୂପ! ଅସୀମ ବ୍ରହ୍ମ ଭିତରେ ଥାଏ ଆନଂଦ। ବ୍ରହ୍ମ ସ୍ୱୟଂ ଆନଂଦ ସ୍ୱରୂପ, 'ରସବ୍ରହ୍ମ ସାଧନା' ପ୍ରକରଣରେ ଗୋପୀନାଥ କବିରାଜ କରିଛନ୍ତି ଉଲ୍ଲେଖ! ବ୍ରହ୍ମଙ୍କ ଆନଂଦ ସ୍ୱରୂପରେ ରହିଛି ଅନନ୍ତ ବୈଚିତ୍ର୍ୟ। ତାଙ୍କର ସେ ଆନଂଦ ନିତ୍ୟ ନବ, ନିତି ନବ ଏବଂ ନିରନ୍ତର ନବ-ନବ ଆସ୍ୱାଦନ! ତାହାରି ଗୋଟିଏ କଣିକା କବି ହରିହର ମିଶ୍ରଙ୍କ ପ୍ରାଣକୁ କରିଛି ମଂତ୍ର ମୁଗ୍ଧ ପୁଲକିତ! ଯାହାର ପ୍ରତିଫଳନ 'ବ୍ରହ୍ମକଣିକା' ଅଲୌକିକ ସ୍ୱାଦ ତତ୍ତ୍ୱ।

ବ୍ରହ୍ମ କଣିକାଙ୍କ ଦୁଇ ପ୍ରକାର ଲୀଳା, ଆକୁଂଚନ ଓ ପ୍ରସାରଣ। ତାଙ୍କ ଚାରିପଟ ମାୟାର ଆଚ୍ଛାଦନ, ମଝିରେ ଏକ ରସ ବ୍ରହ୍ମ, କଣିକାଏ, କେବଳ ଏକ ବିଂଦୁ (mere dot) ବୋଲି ବ୍ୟକ୍ତ କରିଛନ୍ତି ମହା ମହୋପାଧ୍ୟାୟ ଗୋପୀନାଥ କବିରାଜ। ତାଙ୍କ ପ୍ରସାରଣ ଏତେ ବିରାଟ ଏତେ ବିଶାଳ ଯେ ଅନନ୍ତ କୋଟି ବ୍ରହ୍ମାଣ୍ଡ, ମାତ୍ର ଗୋଟିଏ କଣିକାରେ ବ୍ରହ୍ମଙ୍କ ବିସ୍ତାର! ସେହିଭଳି ସଂକୋଚନ, ବିଂଦୁ ବା କଣିକାର ଅସ୍ତିତ୍ୱ ହୋଇଯାଏ ଶୂନ୍ୟ! ଶୂନ୍ୟ ବ୍ରହ୍ମ ନିରାକାର ବ୍ରହ୍ମ ଏବଂ

ସାକାର ବ୍ରହ୍ମ ଶୂନ୍ୟ ବ୍ରହ୍ମଙ୍କ ରୂପତତ୍ତ୍ୱ । ସ୍ୱରୂପ ଓ ଅରୂପବ୍ରହ୍ମ କଣିକାଙ୍କ ନାଦ ରୂପ 'ଗାୟତ୍ରୀ' ଏବଂ 'ଗାୟତ୍ରୀ' ବି ତାଙ୍କ ମଂତ୍ର ରୂପ !

ବେଦାନ୍ତ 'ପ୍ରଶ୍ନୋପନିଷଦ୍' ପ୍ରଥମ ପ୍ରଶ୍ନ, ୩ରେ କୁହାଯାଇଛି ଭୂଲୋକର ଐଶ୍ୱର୍ଯ୍ୟ ଅବଲୋକନ କରି ସାଧକ ପରମେଶ୍ୱରଙ୍କ ଭୂଃ, ଭୁର୍ବଃ ଓ ସ୍ୱଃ ରୂପକୁ ଓଁକାର ମାଧ୍ୟମରେ କରେ ଉପାସନା । ମୃତ୍ୟୁ ପରେ ଶୀଘ୍ର ସେ ପୃଥିବୀକୁ ଫେରି ସେହି ଐଶ୍ୱର୍ଯ୍ୟ ହୁଏ ପ୍ରାପ୍ତ । ଓଁକାର ତ୍ରିମାତ୍ରାରୁ ପ୍ରଥମ ମାତ୍ରା ଋଗ୍‌ବେଦ ସ୍ୱରୂପା ! ତାହାର ପୃଥିବୀ ଲୋକ ସହିତ ସମ୍ବନ୍ଧ । ଏହାର ଚିନ୍ତନରେ ଋଗ୍‌ବେଦର ଋଚାମାନ ପୁନଃ ସାଧକ ଶରୀରରେ ପୁନଃ ଅନୁପ୍ରବେଶ କରିଯାନ୍ତି । ସେହି ନବୀନ ମନୁଷ୍ୟ ଜନ୍ମରେ ତପ, ବ୍ରହ୍ମଚର୍ଯ୍ୟ ଓ ଶ୍ରଦ୍ଧାରେ ସମ୍ପନ୍ନ ଉତ୍ତମ ଆଚରଣଯୁକ୍ତ ଶ୍ରେଷ୍ଠ ମାନବ ହୋଇ ଉପଭୋଗ କରେ ଅତିଶୟ ଐଶ୍ୱର୍ଯ୍ୟ । ମୃତ୍ୟୁପରେ ସିଏ ନୀଚ ଯୋନିକୁ ନଆସି ଶୁଭକର୍ମ କରିବାରେ ହୋଇଥାଏ ସମର୍ଥ । ନାନା ପ୍ରକାର ସୁଖ କରିଥାଏ ଭୋଗ ।

ଆଧୁନିକ କାବ୍ୟିକ ଶୈଳୀରେ କବି ହରିହର ମିଶ୍ର ଏହି ତତ୍ତ୍ୱର କରିଛନ୍ତି ପ୍ରତିଷ୍ଠା,

ତପସ୍ୟାକର ଐଶ୍ୱର୍ଯ୍ୟର ବର୍ଣ୍ଣିଳ ଦୀପ୍ତିରେ
ସବୁରିକୁ ଆଲୋକିତ କରେ ଯାହା ଦିବ୍ୟ ମହିମାରେ
ଆମର ଅଚ୍ଛେଦ୍ୟ ଆତ୍ମା ଯୋଗ କ୍ଷମ ହେଉ
ତାକୁ ଯୋଚି ରଖିବାରେ
ଆଲୋକିତ ତାର ବିସ୍ତରଣେ (ପୃଷ୍ଠା ୫)

ଆଲୋକିତ କରେ, 'ଆଦିତ୍ୟ ବର୍ଣ୍ଣମ୍', ଦିବ୍ୟ ମହିମା । 'ଆଧ୍ୟାତ୍ମ୍ୟମୁଚ୍ୟତେ', ଅଚ୍ଛେଦ୍ୟ ଆତ୍ମା, 'ନୈନଂ ଛିଂଦତି ଶସ୍ତ୍ରାଣି', ପୁନଶ୍ଚ 'ଅଛେଦ୍ୟୋ' (ଗୀତା ୨/୨୪)! ଗୋଟିଏ ଶାସ୍ତ୍ରୀୟ ଓ ଆଧ୍ୟାତ୍ମିକ ପରିବେଶ ତିଆରି କରିଛି କାବ୍ୟ ପୃଷ୍ଠାରେ କବିତା । କବିତା ବହନ କରିଛି ତାହାର ଆତ୍ମିକରେ ଉଚ୍ଚାଙ୍ଗ ଆଧ୍ୟାତ୍ମ ବିଦ୍ୟା । 'ବ୍ରହ୍ମ କଣିକା' ଶବ୍ଦ ମଂଦିର ମୁଖଶାଳା ମହାମନ୍ତ୍ର ଗାୟତ୍ରୀରେ ବିଶୋଭିତ । ଗାୟତ୍ରୀ ବେଦମାତା, ଗାୟତ୍ରୀ ବୁଦ୍ଧିର ଅଧିଷ୍ଠାତୀ ଦେବୀ ଏବଂ ବିଶ୍ୱର ଶ୍ରେଷ୍ଠତମ ପ୍ରାର୍ଥନା । ଓଁ ସହିତ ଗାୟତ୍ରୀ ଅନାଦିକାଳର ମଂତ୍ର । ଗୀତାରେ କୁହାଯାଇଛି, 'ଗାୟତ୍ରୀ ଛଂଦ ସାମହମ୍', ଛଂଦମାନଙ୍କ ମଧ୍ୟରେ ମୁଁ ଗାୟତ୍ରୀ । ଅଥର୍ବବେଦରେ ସାଧକ ଋଷି ପ୍ରାର୍ଥନା କରିଛନ୍ତି, 'ସ୍ତୁତା ମାୟା ବରଦା ବେଦମାତା ପ୍ରଚୋଦୟନ୍ତାଂ

ପାବମାନୀ ଦ୍ୱିଜନାମ । ଆୟୁଃ, ପ୍ରାଣଂ,ପ୍ରଜାଂ, ପଶୁଂ, କୀର୍ତ୍ତି, ଦ୍ରବିଣଂ, ବ୍ରହ୍ମବର୍ଚସଂ, ମହ୍ୟଂ ଦତ୍ତ୍ୱା ବ୍ରଜତ ବ୍ରହ୍ମଲୋକମ୍' (୧୯/୭୧/୧)! 'ଇଚ୍ଛା କି କରିବା ଆମେ/ ଯିବା ଲାଗି ସର୍ବୋଚ୍ଚ ଶୃଂଗରେ', ସେହି ସର୍ବୋଚ୍ଚ ଶୃଙ୍ଗ ବ୍ରହ୍ମଲୋକ । ଆରମ୍ଭ ପଂକ୍ତି - 'ତପସ୍ୟା କର ଐଶ୍ୱର୍ଯ୍ୟର!' 'ଆବ୍ରହ୍ମ ଭୁବନାଲ୍ଲୋକାଃ', ବ୍ରହ୍ମଲୋକ ପର୍ଯ୍ୟନ୍ତ, 'ସଂସିଦ୍ଧି ପରମାଂ ଗତାଃ!' ଜୀବ ଯିବା ପାଇଁ ଲାଭ କରେ ସିଦ୍ଧି । କଠୋପନିଷଦରେ ଯମ ଦେବତା ନଚିକେତାଙ୍କୁ ଯାଚିଛନ୍ତି ଐଶ୍ୱର୍ଯ୍ୟ, 'ବିତ୍ତଂ ଚିରଜୀବିକାଂ' 'ମହାଭୂମୌ' ଏବଂ 'କାମାନାଂ ତ୍ୱା କାମଭାଜଂ କରୋମି', ଭୋଗମାନଙ୍କୁ ସଂପୂର୍ଣ୍ଣ ଭୋଗ କରିବାକୁ ସମର୍ଥ କରିଦେଉଛି! ଯେଉଁ ଭୋଗ ମର୍ତ୍ତ୍ୟଲୋକରେ ଦୁର୍ଲ୍ଲଭ, 'ସ୍ୱଚ୍ଛଂଦତଃ ପ୍ରାର୍ଥୟସ୍ୱ!' 'ଇମା ରାମାଃ ସରଥାଃ. ଅଲଭ୍ୟା ଏଇ ରୂପସୀ ଅପ୍‌ସରା, ରଥ ଓ ଅଶ୍ୱ ନିଅ, 'ପରିଚାରୟସ୍ୱ', ଅର୍ଥାତ୍ ନିଜର ସେବା କରାଅ, କିଂତୁ ପଚାର ନାହିଁ, 'ମରଣଂ ମା ଅନୁପ୍ରାକ୍ଷୀ!' ମୃତ୍ୟୁ ପରେ ଆତ୍ମାର ହୋଇଥାଏ କ'ଣ! (କଠୋପନିଷଦ୍, ପ୍ରଥମ ବଲ୍ଲୀ, ମଂତ୍ର ୨୪-୨୫) । 'ବ୍ରହ୍ମ କଣିକା' ଆଦ୍ୟ କବିତା ଅଭୀପ୍ସାର ବାର୍ତ୍ତା କରିଛି ବହନ ଏବଂ ଆଙ୍ଗିକରେ ଆସ୍ପୃହାର ଐଶ୍ୱର୍ଯ୍ୟ ଜାଜ୍ୱଲ୍ୟମାନ ହୋଇଥିବାବେଳେ ଆସିଛି ନିର୍ଦ୍ଦେଶ, 'ତପସ୍ୟା କର!' ଈଶ୍ୱରଙ୍କ ପାଇଁ କରୁଥିବା କାର୍ଯ୍ୟ 'ତପସ୍ୟା' । ଅନ୍ୟ ସମସ୍ତ ବାହ୍ୟ କର୍ମ ବା ସାଂସାରିକ କର୍ମ ଅଟେ ବିଷୟ । ଦ୍ୱିତୀୟ କବିତା କର୍ମତତ୍ତ୍ୱ ଉପରେ ଆଧାରିତ, 'କର୍ମରେ ଲିପ୍ତ ଥାଇ ପରିଣାମ କଥା / ମୋଟେ ଭାବ ନାହିଁ।' 'କର୍ମଣ୍ୟେ ବାଧିକାରସ୍ତେ, ମା ଫଳେଷୁ କଦାଚନ', (ଗୀତା) । 'ଈଶ୍ୱରଙ୍କ ହାତକୁ ଫେରାଇ ଦିଅ ସେ/ ଫଳାଫଳର ତାଲିକା', ଏଠି ଆସିଛି ସମର୍ପଣ ଚେତନା । 'ଯୋଗସ୍ଥଃ କୁରୁ କର୍ମାଣି', ବ୍ରହ୍ମଙ୍କୁ ସମର୍ପିତ କର୍ମ, 'ସର୍ବ ପାପ ବିଶୁଦ୍ଧାତ୍ମା ଯାତି ବ୍ରହ୍ମ ସନାତନମ୍!' ନିଜେ କର୍ତ୍ତା ନୁହେଁ କିମ୍ବା ନିଜର କର୍ମ ନୁହେଁ, ନିର୍ଲିପ୍ତ କର୍ମ କରିଯାଅ!' ପୁନଶ୍ଚ - କାର୍ଯ୍ୟର ଅଭିଳାଷ ନ ହେଉ କାର୍ଯ୍ୟର ଲକ୍ଷ୍ୟ କିମ୍ବା ତାକୁ / ନପାଇବାର ନୈରାଶ୍ୟ', ସ୍ଥିତଧୀ ମୁନି ଅଟନ୍ତି, ସେମାନେ 'ବିଗତ ସ୍ପୃହଃ' ।

ଆଚାର୍ଯ୍ୟ ଶଙ୍କର ଉଲ୍ଲେଖ କରିଛନ୍ତି -

ବିଷୟାଣାମାନୁକୂଲ୍ୟେ ସୁଖୀ ଦୁଃଖୀ ବିପର୍ଯ୍ୟୟେ ।

ସୁଖଂ ଦୁଃଖଂ ଚ ତଦ୍ଧର୍ମଃ ସଦାନନ୍ଦସ୍ୟ ନାତ୍ମନଃ । (ବିବେକ ଚୂଡ଼ାମଣି, ୧୦୭)

ଅର୍ଥାତ୍ - ବିଷୟମାନଙ୍କ ଅନୁକୂଳତାରେ ସୁଖୀ ଓ ପ୍ରତିକୂଳତାରେ ହୁଏ ଦୁଃଖୀ । ସୁଖ ଓ ଦୁଃଖ ଏହା ଏଇ ଅହଂକାରର ଧର୍ମ, ଆତ୍ମା ନିତ୍ୟାନଂଦ ସ୍ୱରୂପ ।

କବି ଲେଖିଛନ୍ତି, 'ପ୍ରକୃତ ରାସ୍ତା ଛାଡ଼ି ଦେଇପାର', ପ୍ରକୃତ ରାସ୍ତା ଜ୍ଞାନପଥ ! 'ବ୍ରହ୍ମାତ୍ମୈକତ୍ୱ ବିଜ୍ଞାନଂ ସତ୍ୟଗଜ୍ଞାନଂ. ଶ୍ରୁତି ମତ । ବ୍ରହ୍ମ ଓ ଆତ୍ମାର ଏକତା ଜ୍ଞାନ ହିଁ ସତ୍ୟଜ୍ଞାନ ବା ପ୍ରକୃତ ରାସ୍ତା ! 'ଅସତ୍ ପଦାର୍ଥନୁଭବେ ନ କିଂଚିନ୍ନ ହ୍ୟସ୍ତି ତୃପ୍ତିର୍ନ ଚ ଦୁଃଖହାନିଃ', ଅର୍ଥାତ୍ – ଅସତ୍ ପଦାର୍ଥମାନଙ୍କ ଅନୁଭବରେ ନା କିଛି ତୃପ୍ତି ହୁଏ ପ୍ରାପ୍ତି ଏବଂ ନା' ଦୁଃଖର ହୁଏ ବିନାଶ ! ବୃତ୍ତିର ପ୍ରବୃତ୍ତିରେ ଦିବ୍ୟ ଶୃଙ୍ଖଳାରେ ବନ୍ଧା ସମ୍ଭ୍ରମ ଚର୍ଯ୍ୟା ! ସମ୍ଭ୍ରମ ଚର୍ଯ୍ୟାର ଏକ ଚମତ୍କାର ଉଦାହରଣ ଉପସ୍ଥାପନ କରିଛନ୍ତି ଜୀବଜନ୍ତୁ ପ୍ରସଙ୍ଗରେ ଆଚାର୍ଯ୍ୟ ଶଙ୍କର ।

ଅତ୍ୟନ୍ତ କାମୁକସ୍ୟାପି ବୃତ୍ତିଃ କୁଣ୍ଠିତ ମାତରି ।

ତଥୈଂବ ବ୍ରହ୍ମଣି ଜ୍ଞାତେ ପୂର୍ଣ୍ଣାଂଦେ ମନୀଷିଣଃ । (ବିବେକ ଚୂଡ଼ାମଣି, ୪୪୫)

ଅର୍ଥାତ – ଯେପରି ଅତ୍ୟନ୍ତ କାମୁକ ପୁରୁଷର କାମବୃତ୍ତି ମାତାକୁ ଦେଖି କୁଣ୍ଠିତ ହୋଇ ଯାଇଥାଏ, ସେହି ପ୍ରକାର ପୂର୍ଣ୍ଣାନନ୍ଦ ସ୍ୱରୂପ ବ୍ରହ୍ମଙ୍କୁ ଜାଣି ନେବାଦ୍ୱାରା ବିଦ୍ୱାନଙ୍କ ସଂସାରରେ ଆଉ ସଂଲଗ୍ନ ରହେ ନାହିଁ ପ୍ରବୃତ୍ତି ! 'କର୍ମ ନିରୂପଣ କରେ ମଣିଷକୁ / ଦୂଷିତ କରେନା/ କର୍ମ ହିଁ ସଂଲଗ୍ନ ଥାଏ/ ମଣିଷ ରହେନା', (ବ୍ରହ୍ମ କଣିକା, ପୃଷ୍ଠା ୬)

ଶ୍ରୀ ଅରବିନ୍ଦ ତାଙ୍କ କାବ୍ୟିକ ଭାଷାରେ ବ୍ୟକ୍ତ କରିଛନ୍ତି, ଜୀବନ an unremembered tale its beginning lost, its motive plot concealed. A once living strong has prepared and made our present fate, child of the past energies: (Savitri, book-1, canto 2)! ଜୀବ ଜୀବନ ବୟସ କେତେ ? ସୃଷ୍ଟିର ବୟସ ଯେତିକି ? ଜୀବ ତା' କର୍ମାନୁସାରେ ଅଲଗା ଅଲଗା ଦେହର ପୋଷାକ ପରିଧାନ କରୁଛି ! 'କର୍ମ ନିରୂପଣ କରେ ମଣିଷକୁ', ମାନବୀୟ କର୍ମ ବା ଯାହା ମାନବୋଚିତ କର୍ମ ! ମାନବକୁ ଦୂଷିତ କରେ ଅମାନବୀୟ କର୍ମ, ଅସାମାଜିକ କର୍ମ ଏବଂ ପଶୁ କର୍ମ ! ମାଂସ ସହିତ ଚର୍ମ ବନ୍ଧା ଯାଇଥିବାପରି ଦେହ କର୍ମଦ୍ୱାରା ବନ୍ଧା ଯାଇଛି । ମଣିଷ କାଳର କଳାପଟାରୁ ଲିଭିଯିବ କିଂତୁ ତା' କର୍ମ ଲିଭି ଯିବ ନାହିଁ । ତା' କର୍ମ ତା' ପ୍ରାରବ୍ଧ, ତଦନୁଯାୟୀ ସେ ଗର୍ଭସ୍ଥ ହେବ । କର୍ମ ଫଳ ସହିତ ଜୀବଜନ୍ମ ବା ଦେହ ଜନ୍ମ ସଂଲଗ୍ନ । କିଂତୁ ତା' ସହିତ ସଂପର୍କ ନଥାଏ ଆତ୍ମାର ! ପ୍ରାରବ୍ଧ ବିଚାରରେ ବ୍ୟକ୍ତ କରିଛନ୍ତି ଆଚାର୍ଯ୍ୟ ଶଙ୍କର –

କର୍ମଣା ନିର୍ମିତୋ ଦେହଃ ପ୍ରାରବ୍ଧ ତସ୍ୟ କଲ୍ପ୍ୟତାମ୍ ।

ନାନାଦେରାତ୍ମନୋ ଯୁକ୍ତଂ ନୈବାତ୍ମା କର୍ମ ନିର୍ମିତଃ ।

ଅର୍ଥାତ୍ ଦେହ କର୍ମଦ୍ୱାରା ତିଆରି ହୋଇଛି । ଅତଃ ପ୍ରାରବ୍ଧ ମଧ୍ୟ ତାହାକୁ ବୁଝିବା ଦରକାର, ଅନାଦି ଆତ୍ମାର ପ୍ରାରବ୍ଧ ସ୍ୱୀକାର ଠିକ୍ ନୁହେଁ, ଯେଣୁ ଆତ୍ମା କର୍ମଦ୍ୱାରା ତିଆରି ହୋଇନଥାଏ । ଆତ୍ମା 'ବ୍ରହ୍ମ କଣିକା', 'ଅଜୋ ନିତ୍ୟ ଇତି ବୂତେ! ସିଏ ଦିବ୍ୟ (Divine) ଶୃଙ୍ଖଳାରେ ବଂଧା, 'ଅଜରମମରମସ୍ତାଭାସ' ବସ୍ତୁ ଶାଶ୍ୱତଂ ଶାନ୍ତମେକମ୍...'! ହୃଦୟରେ ସମାଧି ଅବସ୍ଥାରେ ଅନୁଭବ କରନ୍ତି ତାଙ୍କୁ ସାଧୁ । 'ହୃଦି କଳାୟତି ବିଦ୍ୱାନ ବ୍ରହ୍ମ ପୂର୍ଣ୍ଣଂ ସମାଧୌ ।' ସେହି 'ବ୍ରହ୍ମକଣିକା'ଙ୍କୁ ପୂର୍ଣ୍ଣ ସମାଧିସ୍ଥ ସନ୍ଥ ହୃଦୟରେ କଳ୍ପନା କରନ୍ତି ତାଙ୍କ ଉପସ୍ଥିତି ।

'କର୍ମାନୁରଂଜିତ ଜୀବନ ସଂଧ୍ୟା' ଆଗକୁ ବ୍ୟକ୍ତ କରିଛନ୍ତି ମାନ୍ୟବର ମିଶ୍ର, ତାଙ୍କ ସୃଷ୍ଟିର ଦୃଷ୍ଟିରେ ଜୀବନ ଏକ ଚିରନ୍ତନ ସଂଧ୍ୟା! ମଣିଷ ରାତ୍ରୀ (ମୃତ୍ୟୁ) ଆଡ଼କୁ କରୁଛି ଯାତ୍ରା! ଝାଉଁଳିବା ପାଇଁ ଜୀବନ ଫୁଲ ଫୁଟିଚି? କାହିଁକି ଆତ୍ମା ଦେହର ପୋଷାକଟିଏ ଏତେ ଜାକଜମକରେ ପିନ୍ଧୁଚି? ଏହି ଦିବ୍ୟ ଶୃଙ୍ଖଳାର ନିୟମ! ତମର ଡ଼ାହାଣ ହାତ କର୍ମ କରିଯାଉଛି ଓ ବାମ ହାତ ତା'ର ସମସ୍ତ ଉଦ୍ୟମର ସାଫଲ୍ୟ ଏବଂ ବିଜୟୋଲ୍ଲାସରେ ପରିପୂର୍ଣ୍ଣ ହୋଇ ରହିଛି (ବ୍ରହ୍ମ କଣିକା, ୩) । ଦକ୍ଷିଣ ହସ୍ତ ଠାରୁ ବାମ ହସ୍ତ ଅଲଗା କିଂତୁ ଦୁହେଁ ଗୋଟିଏ ଦେହର ଦୁଇଟି ଅଙ୍ଗ । ଦୁହିଁଙ୍କ ଆକୃତି ଏକ ପ୍ରକାର କିଂତୁ ଦୁହିଁଙ୍କ କର୍ମ ଭିନ୍ନ, ମାତ୍ର ଦୁହିଁଙ୍କ ଭୋଗ ସମାନ! ଯେମିତି -

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ।
ସମାନଂ ବୃକ୍ଷଂ ପରିଷସ୍ୱଜାତେ ।

'ସଯୁଜା' ଅର୍ଥାତ୍ ଏକାଠି ରହୁଥିବା, 'ସଖାୟା' ପରସ୍ପର ସଖାଭାବ ରଖିଥିବା, 'ଦ୍ୱା' ଅର୍ଥାତ୍ ଦୁଇ 'ସୁପର୍ଣ୍ଣା' (ପକ୍ଷୀ), ଜୀବାତ୍ମା ଓ ପରମାତ୍ମା! ଡ଼ାହାଣ ହାତ ଜୀବ ସମସ୍ତ କର୍ମ କରୁଥିଲେ ବି ବାମହସ୍ତ ତା' ଉଦ୍ୟମର ସାଫଲ୍ୟ ଓ ବିଜୟୋଲ୍ଲାସ କରୁଛି ଭୋଗ! ଏହାର କାରଣ - 'ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ ମାୟିନଂ ତୁ ମହେଶ୍ୱରମ୍' (ଶ୍ୱେତାଶ୍ୱତରୋପନିଷଦ, ୪/୧୦) । ମାୟା ଭଗବତୀ ପ୍ରକୃତି, ପରମ ଲୀଳାମୟୀ ଏବଂ ମାୟାପତି ମହେଶ୍ୱର! ଉତ୍ତମ ଫଳାଫଳ ପ୍ରାପ୍ତି ତାଙ୍କର କୃପା । କବି କହୁଛନ୍ତି ତମର ସମଗ୍ର ସତ୍ତା ଉତ୍ତମ ଫଳାଫଳରେ ଭରି ଯାଇପାରେ, ପ୍ରାଚୁର୍ଯ୍ୟ ନିଅ ଏବଂ ପର୍ଯ୍ୟାପ୍ତ ନିଅ!

ପୃଷ୍ଠା ଉର୍ଦ୍ଧ୍ୱରେ ରହିଛି ବୈଦିକ ମଂତ୍ରର ରଶ୍ମି, ନିମ୍ନରେ ପ୍ରାକୃତିକ ଭାଷାରେ କବିତାଟିଏ ଉଜ୍ଜ୍ୱଳି ଉଠିଛି । କବିତା ମଂତ୍ରର ନୁହେଁ ଭାଷାନ୍ତର କିଂବା ଭାବାନ୍ତର ବା ମର୍ମାନୁବାଦ! ବରଂ ମଂତ୍ରଟି ପ୍ରେରଣାର ଉତ୍ସ, ଆଦି ଜ୍ୟୋତି । ଜ୍ୟୋତିରୁ

ଜ୍ୟୋତି ପ୍ରତିଫଳିତ ହୋଇଛି । ତେଣୁ କବିତା ଚନ୍ଦ୍ରାତପପରି ସିଗ୍ଧ, ସୁନ୍ଦର ଓ ସୁବୋଧ୍ୟ ଲାଗୁଛି । ଗୋଟିଏ ଅଭୀପ୍ସାର ଉତ୍ତରଣ ଯେମିତି ଅନୁଭବ ହେଉଛି ! ଦେଖନ୍ତୁ ଏହି ପଂକ୍ତି – 'ସୁକର୍ମ ହିଁ ଦେବତାଙ୍କ ମିତ୍ର / ଈଶ୍ୱର ବି କରିଥାନ୍ତି ସାଫଲ୍ୟ ମଣ୍ଡିତ x x / ଈଶ୍ୱରଙ୍କ ସାହାଯ୍ୟ ନିଶ୍ଚିତ' (ବ୍ରହ୍ମକଣିକା, ୫) !

ଆଗକୁ ରହିଛି ଅସହାୟ ମଣିଷର ପ୍ରାର୍ଥନା, 'କଣିକାଏ ଐଶ୍ୱର୍ଯ୍ୟ/ କରୁଣାକର ହେ ଈଶ୍ୱର / x x ଗତିଶୀଳ ହେଉ ଆମ ଅଭିବ୍ୟକ୍ତି ?' ଭାଷା ମଧୁମୟ ହୋଇ ଉଠୁ । ବିବେକବନ୍ତ ଓ ଦାୟିତ୍ୱବୋଧ ସଂପନ୍ନ କବି ଜଣେ ଆଉ କି ପ୍ରାର୍ଥନା କରିବେ ? କିଂତୁ ଏହି ରଚନାର ବୀଜ ଋଗ୍‌ବେଦ ପଞ୍ଚମ ମଣ୍ଡଳ ମଂତ୍ର କବି ହରିହର ମିଶ୍ର କରିଛନ୍ତି ଉଦ୍ଧୃତ (ବ୍ରହ୍ମ କଣିକା, ପୃଷ୍ଠା ୧୧) ।

ସୃଷ୍ଟି ହିଁ ଈଶ୍ୱର ସେବା
ତମେ ସେହି ସ୍ରଷ୍ଟାର ବର ପୁତ୍ର
x x
ତମର ସୃଜନୀ ପାଇଁ
ଈଶ୍ୱରଙ୍କ ସମସ୍ତ ଶକ୍ତି ବରାଦ
ଅଥଚ ଅବ୍ୟବହୃତ ଶକ୍ତି ବରବାଦ୍ (ବ୍ରହ୍ମ କଣିକା, ୮)

ଦେହର ଅଜ୍ଞତା ଉଲ୍ଲେଖ କରିଛନ୍ତି ଶ୍ରୀଅରବିନ୍ଦ, A body that knew not its own soul within, (ସାବିତ୍ରୀ , ବୁକ୍ ଟୁ କେଣ୍ଟୋ ଫୋର୍), ପୁନଶ୍ଚ, Life had for them no aim save nature's joy/And the stimulus and delight of outer thing's ଯେଉଁଠି Mind looked on Nature with unknowing eyes; ସେଠି ଈଶ୍ୱରଙ୍କ ସମସ୍ତ ଶକ୍ତି ବରାଦ ହୋଇଛି 'ତମର' ସୃଜନୀ ପାଇଁ !!

'ବରପୁତ୍ର' ଯେମିତି 'A word Self born upon creation's hights' ପୁନଶ୍ଚ ଶ୍ରୀଅରବିନ୍ଦ ଦାର୍ଶନିକ ଭାଷାରେ 'Sows the idea's significance in form;' ଯେଉଁ ବୀଜ ଭିତରୁ ଜନ୍ମ ହୋଇ ପରିପୁଷ୍ଟ ହୋଇଛି ସମୟ ! ସେହି ସମୟର ଗୋଟିଏ ନୂତନ ଯାତ୍ରାର ନାମ ସୃଷ୍ଟି ! ସୃଷ୍ଟି ହିଁ ସ୍ରଷ୍ଟାର ସେବା, ସୃଷ୍ଟି ହିଁ ସ୍ରଷ୍ଟାର ଇଚ୍ଛା ଏବଂ ସ୍ରଷ୍ଟାର ସଂକଳ୍ପ ! ଅସୀମ ସମୟ ଗୋଟିଏ ଶବ୍ଦର ଆଙ୍ଗିକ ଭିତରେ ଅନନ୍ତ କାଳ ବ୍ୟାପି ଆଲୋକିତ, ତାହା କଣିକାଏ ବ୍ରହ୍ମ, ସ୍ରଷ୍ଟାର ଆତ୍ମବୀର୍ଯ୍ୟ । ବିସ୍ମୟକର ଅଜ୍ଞାତକୁ ସ୍ୱୀକୃତି ଦିଏ ଅସୀମ ସୃଜନୀ, ତାହାର ବରବାଦ କାହିଁ ? ଗୋଟିଏ ତୀକ୍ଷ୍ଣ ଆଶଙ୍କାର ଜମା ହୋଇ ରହିଛି କଳ୍ପନା । ଉର୍ଦ୍ଧ୍ୱରେ ତା'

ଅମୃତର ଉଦ୍‌ଭାସ ଏବଂ ତଳେ ତା' ଦିବ୍ୟ ବିସ୍ମୟ । 'ଉଦ୍ୟାନଂ ତେ ପୁରୁଷ...', ତାଙ୍କ ଅବତରଣ ଓ ଦିବ୍ୟ ବୁଦ୍ଧିର ଆଶୀର୍ବାଦ !

ଆତ୍ମା ତ ସତ୍ୟ, ସତ୍ୟରେ ପ୍ରକାଶିତ ହୁଏ ଯେଉଁ ସତ୍ୟ, ତାହା ପରମ ସତ୍ୟ ! 'ତୁମେ' ତାହା ! 'ଏହି ଉଚ୍ଚତା ଆରୋହଣରେ / ତମେ କି ଦୁର୍ବଳ କ୍ଳାନ୍ତ' ପଂକ୍ତିର ତୁମେ ଶାଶ୍ୱତ ଦୁଃଖାଳୟ ନିବାସୀ କ୍ଷର ପୁରୁଷ ! 'ଆତ୍ମାରେ ପ୍ରକାଶିତ ହେଉଥରେ ସେହି ସତ୍ୟ', କେବଳ ଅଖଣ୍ଡ ଚିନ୍ମାତ୍ରମ୍ !' 'ବ୍ରହ୍ମ ସତ୍ ଅଦ୍ୱିତୀୟମ୍' (ବ୍ରହ୍ମ ନିରୂପଣ, ଶ୍ରୀଶଙ୍କରଚାର୍ଯ୍ୟ) । ସେ ସତ୍ୟ 'ମନୋବାଚାମଗୋଚରମ୍' ! ଅପ୍ରମେୟ, ଅନାଦି-ଅନ୍ତରହିତ, ପରିପୂର୍ଣ୍ଣ ଓ ତେଜୋମୟ ମହାନ୍ ! ମାନବ ଅମୃତର ପୁତ୍ର, ତେଣୁ ସିଏ ଈଶ୍ୱରଙ୍କ ପୁତ୍ର ! ତାହା ସତ୍ତ୍ୱେ ତାକୁ ଖୋଜିବାକୁ ପଡ଼େ ତା' 'ନିଜ ରାସ୍ତା', (ବ୍ରହ୍ମ କଣିକା, ୮) । ତାକୁ ଆହ୍ୱାନ ଦିଆଯାଇଛି, 'ଜୀବନର ନିରୋଳା ପଥରେ/ପ୍ରକାଶ କରିଯାଅ ପୌରୁଷର ସାମର୍ଥ୍ୟ, ସୃଜନଶୀଳତା/ଅପାର୍ଥୀବ ଆଲୋକ ଝରିଆସୁ...!' ଅପାର୍ଥୀବ ଆଲୋକ ସୃଜିବ ପାର୍ଥୀବ ନବକଳେବର ? ଦିବ୍ୟ କରୁଣାର ରଥ ଆସିବ ? ଅପ୍ରତିହତ କରୁଣା ଦିବ୍ୟ ଆସ୍ପୃହାର ଦିଏ ଉତ୍ତର ? ନିମ୍ନରୁ ଆବାହନ ଉର୍ଦ୍ଧ୍ୱରୁ ଅବତରଣ ହୀନଙ୍କୁ କରାଏ ସ୍ପଂଦିତ । ନିମ୍ନର ଶକ୍ତି କୁଣ୍ଡଳିନୀ ଏବଂ ଉର୍ଦ୍ଧ୍ୱର ସ୍ପଂଦିତ ଶକ୍ତି ଶିବ ! ଶକ୍ତିଙ୍କ ସ୍ପର୍ଶରେ ଶିବ ଶକ୍ତିମାନ ହେଲେ ଆଙ୍କିଯା'ନ୍ତି ପଦଚିହ୍ନ ! 'ଭୌତିକ ଓ ଆଧାତ୍ମିକ/ଏହା ହିଁ ତ ଐଶ୍ୱର୍ଯ୍ୟ ତମରି !' ସାହାସ ଓ ଉତ୍ସାହର ତୁମେ ପାର ହୁଅ 'ବୈତରଣୀ' !

'ବୈତରଣୀ' ଭୌତିକ ଓ ଆଧାତ୍ମିକ ନଦୀ ! କାବ୍ୟ ଚେତନାରେ ଭୂଗୋଳ ନହୋଇ ହୋଇଛି ସଂଦିଗ୍ଧ ପ୍ରତୀକ ଏବଂ ପ୍ରତୀକଟି ଗୋଟିଏ ଶକ୍ତ ଓ ସ୍ୱଚ୍ଛ ମିଥ୍ ମଧ୍ୟ ! ଅନୁଭବର ନାଂଦନିକତାକୁ ଏଠି ଗୋଟିଏ ଶବ୍ଦରେ ନିୟଂତ୍ରଣକରି ଉପଲବ୍ଧି କରାଇଛନ୍ତି କବି, ତାହା 'ବୈତରଣୀ' ! ପ୍ରାର୍ଥନାର ଶିଖାଟିଏ ଉର୍ଦ୍ଧ୍ୱକୁ ଉଠିଛି, ନଷ୍ଟଗାମୀ ମଣିଷକୁ... ହତାଶ ବିଷର୍ଣ୍ଣ ମଣିଷକୁ ଫେରାଇ ଆଣ, କର୍ତ୍ତବ୍ୟ ଚ୍ୟୁତ ମଣିଷକୁ ଫେରାଇ ଆଣ, ଫେରାଇ ଆଣ ପାପର ପ୍ରଚୋଦନାରୁ ଠିକ୍ ସିଧା ରାସ୍ତାକୁ !

କବିତାର କାମ 'ଟୁ ଟିଚ୍', ଶିକ୍ଷା ଦେବ ଏବଂ 'ଟୁ ଡ଼ିଲାଇଟ୍' ଆନଂଦ ପ୍ରଦାନ କରିବ । ଗୋଟିଏ ମହା ସମୁଦ୍ରରେ ନିସ୍ତରଙ୍ଗ ଆନଂଦ ସୃଷ୍ଟି କରୁଛି କବି ହରିହର ମିଶ୍ରଙ୍କ ପଂକ୍ତିମାଳା ! ସେ ଆନଂଦ ଅନ୍ତର୍ଚେତନାର, ନୁହେଁ ଇଂଦ୍ରିୟମାନଙ୍କ ମିଥ୍ୟା କୋଳାହଳ ! ଅଭୀପ୍ସା ଶିଖାର ସ୍ପଂଦନକୁ ଉପଲବ୍ଧି କରିବା ସାମର୍ଥ୍ୟ ରଖେ ନାହିଁ ଦୈହିକ ମାଂସ । ମାଂସର ଉଦ୍ଦୀପନା 'ଆନଂଦ' ନୁହେଁ, ନୁହେଁ ଚିନ୍ମୟ ପୁଲକ । ତାହା ଇନ୍ଦ୍ରିୟ ଅଶ୍ୱଙ୍କ ହ୍ରେଷା ରବ ।

ଚିନ୍ମୟ ଓଁକାରର ବୀକ୍ଷକ ଓ ବ୍ୟାଖ୍ୟାକାର କବି ହରିହର । ଅଚିନ୍ତ୍ୟ ଓ ଅସୀମ ଓ ଅପ୍ରମେୟଙ୍କ ଚିତ୍ର-ଚରିତ୍ରାଙ୍କନରେ ତାଙ୍କ କବିତାର ପଂକ୍ତି ଆନଂଦମୟ । ତାଙ୍କ ଶବ୍ଦ ଜ୍ୱଳନ୍ତ ଓ ଜୀବନ୍ତ । ତାଙ୍କ ଶବ୍ଦ କବିତା ନୁହେଁ । ଜଣେ ଶବ୍ଦ ସାଧକର ସିଦ୍ଧିର ପ୍ରାପ୍ତ ଫଳ ।

ଆଧୁନିକ ମାନବ ମନର ସୀମିତ ଦୃଷ୍ଟି ଅଙ୍କନ କରିଛନ୍ତି ଶ୍ରୀଅରବିନ୍ଦ, ସିଏ ଭାବେ

Existence as an accident in Time
Illusion or phenomenon or break
The paradox of a creative thought
which moves between unreal opposites
(savitri, Book Two - Canto Five)

ମାନବ ଜ୍ଞାନ ଦାରିଦ୍ର୍ୟ ତା' ପ୍ରାଣଠାରୁ ଯେମିତି ଏଠି ନେଉଛି ପ୍ରତିଶୋଧ ! ଚୈତନ୍ୟ ଭିତ୍ତି ଉପରେ ସଂସାରକୁ ଓ ଜୀବନକୁ ନଦେଖି ଅଜ୍ଞାନର ସ୍ୱାଦକୁ ନେଇ ସିଏ ଅନୁଭବ କରୁଛି -

We seen to live in a fiction of our thoughts
Pieced from sensation's fanciful traveller's tale.

(Savitri, Sri Aurobindo)

ଅହଂକାରର ଇମେଜ୍ ଅଜ୍ଞାନତାର ସ୍ୱପ୍ନରେ ହେଉଛି ଖର୍ବୀ ! ଶିଖର ପାଇଁ କ୍ଷୁଧା ଓ ଆକାଂକ୍ଷା ସୃଷ୍ଟି କରୁଛି ତାହାର ବିଶାଳ ପ୍ରତିମା ! ମାନବ ବିସ୍ମୃତ Life's secret sense is written within; ତମେ ଅମୃତର ସନ୍ତାନ/ସମସ୍ତ ଜୀବନ ଏକ ସମର୍ପଣ; ଲେଖିଛନ୍ତି ହରିହର ମିଶ୍ର । ଗନ୍ଧବତୀ ପୁଷ୍ପର ମଧୁ ପୀୟୂଷ ମନୁଷ୍ୟ, ତା' ଆତ୍ମା ସମର୍ପିତ । ଶ୍ରୀଅରବିନ୍ଦଙ୍କ କାବ୍ୟିକ ଭାଷାରେ ମନୁଷ୍ୟ 'Translation of God's pure original text', ପରମ ପବିତ୍ର ବିସ୍ମୟ । 'A frame of ethics knobbed with scriptural rules'! ଗୋଟିଏ ନୈତିକ ଚୌକାଠ ଉପର ଗୋଲାକୃତି ସାରା ପବିତ୍ର ନିୟମମାନ ଖୋଦେଇ ହୋଇ ଖଂଜା ଯାଇଛି !

କସ୍ୟ ସ୍ୱିଦ୍ ଧନମ୍ ? ଏହି ଧନ କାହାର ? 'ଈଶା ବାସ୍ୟମିଦଂ ସର୍ବଂ...' ସମସ୍ତ ଜଗତ, ସମସ୍ତ ଧନ ଓ ସମସ୍ତ ଐଶ୍ୱର୍ଯ୍ୟ ଈଶ୍ୱରଙ୍କର, 'ମା ଗୃଧଃ, ଲୋଭ କର ନାହିଁ ! ଏହି ତତ୍ତ୍ୱକୁ କାବ୍ୟିକ ନୈଶ୍ୱବ୍ଦ୍ୟ ଭିତରେ କବି ହରିହର ଉତରିଛନ୍ତି

ନିମ୍ନ ଭାବେ- 'ପରଧନରେ ନିର୍ଲୋଭ ହୁଅ/ଈଶ୍ୱରଙ୍କ ଗୌରବ ଭିତରେ/ଅଧିକୃତ ସ୍ଥାୟୀ କ୍ଷଣସ୍ଥାୟୀ/ ଗୌରବମୟ ସବୁ କିଛି

ଯାହା ସେ ଦିଅନ୍ତି/ତାକୁ ଉପଭୋଗ କର... ।'

ଗୋଟିଏ ଖଣ୍ଡାଧାର ଉପରେ ହରିହର ମିଶ୍ର ଚାଳିତ କରିଛନ୍ତି ତାଙ୍କ କଲମ ! ମହାନ୍ ଚେତନାରୁ ନିସୃତ ପବିତ୍ର ଝଙ୍କାର ତାଙ୍କ ଭାଷାର ଐଶ୍ୱର୍ଯ୍ୟରେ ହୋଇଛି ପରିଣତ ।' ସିଏ ରଖି ନାହାନ୍ତି ରୂପାନ୍ତର କିଂବା ଭାଷାନ୍ତରର ପ୍ରଶ୍ନ । ଭାରତର ପ୍ରାଚୀନତମ ପୁରୁଷ ପୁରୁଷ ଧରି ଜୀବନ୍ତ ଅକ୍ଷୁର୍ଣ୍ଣ ସାରସ୍ୱତ ଆଙ୍ଗିକ ଗୋଟିଏ ନବ ପ୍ରାଜ୍ଞିକ ଦୃଷ୍ଟିରେ କବିତାର ଆଧୁନିକ କଳେବରରେ ହୋଇଛି ଉପସ୍ଥିତ । ଏହା ଯେମିତି କବିତା ସେମିତି ନିରୋଳା ପ୍ରାର୍ଥନା, 'ତମର ସଦୟ ଉପସ୍ଥିତି/ସହଯୋଗ କାମନା ହିଁ କରେ'! ପୁନଶ୍ଚ - ତୁମେ ହିଁ ସକଳ ଜ୍ଞାନ/ ଆଲୋକର ମୂଳ ଉପାଦାନ / ମାନବିକ ପ୍ରତିଭାର /ଯେ ସମସ୍ତ ପରିଣତି ! 'ମହୋ ଅର୍ଣ୍ଣଃ ସରସ୍ୱତୀ !' ପ୍ରଜ୍ଞାର ଚରମ ରୂପାୟନ ମୂର୍ତ୍ତି !

ଚାରୋଟି ଯାକ ବେଦର ବହୁଳ ଆଦୃତ ବଛାବଛା ମଂତ୍ର ପଂକ୍ତି ସମ୍ମୁଖରେ ରଖି ଉଚ୍ଚ ଆଦର୍ଶରେ ଉନ୍ନୀତ ମହିମାଙ୍କ ବୋଧ ଉଦୟ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କରାଯାଇଛି ଏକାଠି । ନିଶ୍ଚିତ ଗୁଣାତ୍ମକ ଦୃଷ୍ଟିରୁ ଉଦ୍ୟମଟି ଆଧୁନିକ ଓ ପବିତ୍ର । ଶବ୍ଦ ବଗିଚାରେ ତୁଳସୀ ବୃକ୍ଷର ମାର୍ଜିନ୍‌ମାନ ଟଣା ଯିବା ସହିତ ବୈଦିକ ପୁଷ୍ପମୟ କରାଯାଇଛି । ଆର୍ଯ୍ୟ ପ୍ରଜ୍ଞାର ଉତ୍କର୍ଷକୁ ଗୋଟିଏ ଶୈଳୀର ନବୀନ ବୃତ୍ତିରେ ଉତ୍ତୀର୍ଣ୍ଣ କରାଯାଇଛି । ଋକ୍‌ବେଦ ଦଶମ ମଣ୍ଡଳ ଏକଶତ ଏକାନବେ ମଂତ୍ର ଅନ୍ତର୍ଗତ ସାମ୍ୟବାଦୀ ଚେତନା ସହିତ ଅଥର୍ବ ବେଦୀୟ ରାଷ୍ଟ୍ରୀୟ ବିକାଶ ଓ ଦେଶପ୍ରେମ ତଥା ଋଗ୍‌ବେଦୀୟ ପରିବାର ସଂଗଠନ ଏବଂ ସଂପର୍କ - ସାମାଜିକ ସବୁଜ ସୂତ୍ର ବଳିଷ୍ଠ ସମାଜ ଗଠନ ଅନୁଚିନ୍ତା କବିତା ପଂକ୍ତିରେ ଆତ୍ମତତ୍ତ୍ୱ ରୂପେ ସଜ୍ଜିତ । ସମ୍ମୁଖକୁ ଅଣାଯାଇପାରେ ନିମ୍ନ ଦୃଷ୍ଟାନ୍ତ କେତୋଟି,

୧. ହେ ମୋର ପୁତ୍ରକାମୀ ଯୌବନ

ବିବାହ ସୂତ୍ରରେ ତମେ ବାନ୍ଧି ରଖିଛ

ଦିବ୍ୟ ଏକ ରୂପସୀକୁ

X X

ସେ ତୁମ ବୀର୍ଯ୍ୟ କାମନା କରେ

୨. ତମେ ଅଙ୍ଗେ ଲିଭାଅ ସୁଖ ଆଉ ଦୁଃଖକୁ ଏକାଠି

ସତେ ଯେମିତି ସାହାଯ୍ୟକାରୀ ବନ୍ଧୁ ଦୁଇ

ତମେ ନିମଜ୍ଜିତ ହୁଅ ପ୍ରୀତିରେ...

୩ . ସ୍ୱାମୀ ସ୍ତ୍ରୀ ପ୍ରତ୍ୟେକ ପରିପୂରକ ପ୍ରତ୍ୟେକର

ସ୍ୱାମୀ ହିଁ ସଂଗୀତ ତା'ର ପ୍ରିୟାର ଛନ୍ଦରେ

ସ୍ୱାମୀ ହିଁ ଆକାଶ ତା'ର ପ୍ରିୟା ହିଁ ଧରଣୀ

କବିତା କଳ୍ପନାର ଇନ୍ଦ୍ରଜାଲ ନୁହେଁ, କବିତା ଶବ୍ଦକଳା, ପବିତ୍ର ସଂପର୍କର ଆକାଂକ୍ଷା ଓ ଦୀକ୍ଷା । ଜଣେ ଅନ୍ୟ ଜଣକ ପାଇଁ କରୁଛି କାମନା, ଏ ପାର୍ଥୀବ ସତ୍ତା ତ୍ୟାଗ କରିବା ପୂର୍ବରୁ ତମ ଆତ୍ମା ଥରେ ପୂର୍ଣ୍ଣତା ଲାଭ କରୁ । (ପୃଷ୍ଠା ୭୪)

ଅଥର୍ବବେଦର ମୂଳ ଧ୍ୱନି 'ମା ଭ୍ରାତା ଭ୍ରାତରମ୍', 'ପାରସ୍ପରିକ ପ୍ରୀତି / ପାରସ୍ପରିକ ଶକ୍ତି', ଏବେ ଆଉ ଦେଖା ଯାଉନାହିଁ !

କାହାକୁ ପଚରା ନାହିଁ କି ଉଚରା ନାହିଁ, ଭାଇ ପିତା ସମ୍ପତ୍ତି ଭାଗଠୁ ଅଧିକ ମାରିନେବା ପାଇଁ ଠିଆ ହେଲାଣି କଚେରୀରେ ! ଚାରି ଦଉଡ଼ି କଟା ଓକିଲ ଏମିତି କେଶ୍ ପାଇଁ ଆଁ କରି ଅନାଇ ରହିଛନ୍ତି ବାର୍ ବାରଣ୍ଡା ଟେବୁଲ୍ ଉପରେ ପିଚା ରଖି ! ନ୍ୟାୟ ତ ଅନ୍ଧୁଣୀ, ଗୋରୀ ପକ୍ଷୀ, ଗୋରା ସରକାର କଳାକନାରେ ତା' ନୀଳରଙ୍ଗ ଆଖି ଦୁଇଟିକୁ ବାନ୍ଧି ଦେଇଛି !

କେବେ ଦିନେ ଥିଲା 'ସ୍ୱସା ଭଦ୍ରୟା' ! ସଂସ୍କୃତିର ତାହା ଆଦିକାଳ । ଏବେ ଏହା ଅପସଂସ୍କୃତିର ମଧ୍ୟାହ୍ନ, ସବୁ ବଦଳିଛି, ପିତା ବଦଳିଛି ଏବଂ ପୁତ୍ର ବି ବଦଳିଛି ! କିଂତୁ ଆର୍ଯ୍ୟ ସାହିତ୍ୟ ତାହାର ଆଚାରରେ ବଦଳି ନାହିଁ ! ଅନୁବ୍ରତଃ ପିତୁଃ ପୁତ୍ରୋ,... ମଧୁମତୀ ବାଚଂ ବଦତୁ । ହରିହର ମିଶ୍ର କହନ୍ତି – 'ପୁଅ ନିଶ୍ଚୟ ମାନିବ / ପିତାମାତାଙ୍କ ଚିନ୍ତାର ହେବ ସମଭାବାପନ୍ନ / ଓ ସେହିଭଳି ହେବ ଆଚରଣ ।' କୁଟୁମ୍ବ ସମସ୍ତ ଏକାଠି ହୋଇ 'ଆଳାପ କରନ୍ତୁ ସେମାନେ, ଧୀର ଏବଂ ମଧୁର ବାକ୍ୟରେ ।'

ସାହିତ୍ୟ, ହିତ ସହିତ; ଏହି ଦିବ୍ୟଚିନ୍ତା ହରିହର ମିଶ୍ରଙ୍କ 'ବ୍ରହ୍ମକଣିକା' ଏବଂ ତାହାର ବାର୍ତ୍ତା ସମାଜ ଭାଙ୍ଗି ନ ପଡୁ, ମନୁଷ୍ୟ ଫୁଟି କାକୁଡ଼ିପରି ପାଚି ଅନ୍ଧକାର ଗର୍ଭରେ ଖସି ନପଡୁ, ଈଶ୍ୱରଙ୍କ ଖୁସିର ସୃଷ୍ଟି ମାନବ ଜୀବନ ପୂର୍ଣ୍ଣତାର ସମୁଦ୍ରରେ ହେଉ ଝଲମଲ । ପ୍ରକୃତିର ପ୍ରତିଟି ଇଚ୍ଛାରେ ଖୁସି ଥାଉ ମାନବ । ପ୍ରକୃତିର ରୂପ ତା' ପାଇଁ ହେଉ ଦିବ୍ୟ ଅଦୃଶ୍ୟ ଗୌରବ । ମଧୁ ବାତା ଋତାୟତେ, ମଧୁଗନ୍ଧା ପୃଥିବୀ ହେଉ ସୁକଲ୍ୟାଣୀ ।

ସତ୍ୟବାହୀ ଦିବ୍ୟ ଶବ୍ଦ ଶକ୍ତିର ଅନୁଶାସନରେ ଅନାମର ଗୋପନ କଥା କରିଛି ଉଚ୍ଚାରିତ । ଶବ୍ଦ ମୂର୍ତ୍ତିମନ୍ତ ହୋଇଛି । ରହସ୍ୟମୟ ନୀରବତା ଶବ୍ଦର ହୃଦରେ ହିଲ୍ଲୋଳିତ । ଅଶ୍ରୁତ ଦିବ୍ୟ ମୂର୍ଚ୍ଛନା ଶ୍ରୁତିରେ କେମିତି ଢ଼ାଳେ ମାଧୁର୍ଯ୍ୟ, ତାହା ଆଲୋକିତ କରିଛି ରିଚାର ଅକ୍ଷର । କବିତା କରିଛି ତାହାର ଆବାହନ, 'ଈଶ୍ୱର ଆସନ୍ତୁ ଏବଂ ନିବସନ୍ତୁ / x x ଏ ଦେହ ହେଉ ଏକ ମନ୍ଦିର ତାଙ୍କର' ! ଏହି ଏକ ମାତ୍ର ମୃତ୍ୟୁକୁ ଜିତିବାର ବାଟ ? ସୌନ୍ଦର୍ଯ୍ୟ ଈଶ୍ୱରଙ୍କ ଛଦ୍ମବେଶ, (ବ୍ରହ୍ମ କଣିକା - ୮୮), ହୃଦୟର ନିଭୃତ କକ୍ଷରେ ଶିଶୁଭଳି କାନ୍ଦି କବି କରିଛନ୍ତି 'ଈଶ୍ୱରଙ୍କ ଅଭିଷେକ', (ବ୍ରହ୍ମ କଣିକା -୯୧) । ଏହାଠାରୁ ବଳି ଅଛି କିଛି ଶ୍ରେଷ୍ଠ କୃତ୍ୟ ! ! କାବ୍ୟିକତାର ସନ୍ଥ ଜଣେ କେମିତି ଆଉ କରିବେ ତାଙ୍କ ଶବ୍ଦ ଯଜ୍ଞ, ଉପାସନାର ପର୍ବ !

ଈଶା ବାସ୍ୟମିଦଂ ସର୍ବଂ ଯତ୍‌କିଂଚ ଜଗତ୍ୟାଂ ଜଗତ

ତେନ ତ୍ୟକ୍ତେନ ଭୁଂଜୀଥା ମା ଗୃଧଃ କସ୍ୟ ସ୍ୱିଦ୍ଧନମ୍ ।

ଏହାର ଅର୍ଥ ବେଦମୂର୍ତ୍ତି ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ ଉଲ୍ଲେଖ କରିଛନ୍ତି, ଏହି ଜଗତରେ ପରମାତ୍ମାଙ୍କୁ ସଦୈବ ସର୍ବତ୍ର ଉପସ୍ଥିତି ହୃଦୟଙ୍ଗମ କରି କିଛି ବି ଧନ ଇଚ୍ଛା ନକର, କିଂତୁ ସେତିକିରେ ନିର୍ବାହ କର, ଯେତିକି ସିଏ ନ୍ୟାୟାନୁକୂଳ ତୁମ ପାଇଁ ସ୍ଥିର କରିଛନ୍ତି, (ଋଗ୍‌ବେଦ, ଭୂମିକା ପୃଷ୍ଠା ୨୭)

ହରି କୃଷ୍ଣଦାସ ଗୋୟନ୍ଦକା ଏହି ମଂତ୍ରର ବ୍ୟାଖ୍ୟା କରିଛନ୍ତି, ଜଗତ୍ୟାମ୍ = ଅଖିଳ ବ୍ରହ୍ମାଣ୍ଡରେ; ଯତ୍ କିଂ = ଯାହା କିଛି ବି; ଜଗତ୍ = ଜଡ଼ ଚେତନ ସ୍ୱରୂପ ଜଗତ ରହିଛି; ଇଦମ୍ = ଏହା; ସର୍ବମ୍ = ସମସ୍ତ; ଈଶା = ଈଶ୍ୱରଙ୍କ ଠାରୁ; ବାସ୍ୟମ୍ = ବ୍ୟାପ୍ତ ହୋଇଅଛି; ତେନ = ସେହିଙ୍କୁ ସାଥିରେ ରଖି; ତ୍ୟକ୍ତେନ = ତ୍ୟାଗ ପୂର୍ବକ; ଭୁଂଜୀଥାଃ = (ଏହାକୁ ଭୋଗ କରୁଥାଅ); ମା ଗୃଧଃ = (ଏଥିରେ) ଆସକ୍ତ ହୁଅ ନାହିଁ; (କାରଣ) ଧନମ୍ = ଧନ - ଭୋଗ୍ୟ ପଦାର୍ଥ; କସ୍ୟ ସ୍ୱିତ୍ = କାହାର ଅଟେ ଅର୍ଥାତ୍ କାହାର ବି ନୁହେଁ ।

ଏହି ମଂତ୍ର ଉଦ୍ଧୃତି ନିମ୍ନରେ ହରିହର ମିଶ୍ରଙ୍କ କବିତା -

ପର ଧନରେ ନିର୍ଲୋଭ ହୁଅ

ଈଶ୍ୱରଙ୍କ ଗୌରବ ଭିତରେ

ଅଧିକୃତ ସ୍ଥାୟୀ କ୍ଷଣସ୍ଥାୟୀ

ଗୌରବମୟ ସବୁ କିଛି

ଯାହା ସେ ଦିଅନ୍ତି
ତାକୁ ଉପଭୋଗ କର
ଅନ୍ୟର ଅଧିକାର ଭିତରେ
ଥାପ ନାହିଁ ମନ ବା ହୃଦୟର
ସମଷ୍ଟି ଭିତରେ
ଏକ ପରମାଣୁ ମାତ୍ର
ଏଇ ବିଶ୍ୱ !

ଡ଼ାଭିଡ୍ ଡ୍ୟାଚେସ୍ ଲେଖିଛନ୍ତି... The poet language as a method of discovery. 'ବିଶ୍ୱ'ର ଆବିଷ୍କାର ଉଦ୍ଦେଶ୍ୟରେ ଭାଷାର ବ୍ୟବହାର କରିଛନ୍ତି ହରିହର ମିଶ୍ର । ଅଡ଼େନ୍ ଲେଖିଛନ୍ତି, କବିତାର ଦୁଇଟି ତତ୍ତ୍ୱ (squares and oblongs ପ୍ରବନ୍ଧ) Poetry as a magical means for inducing desirable emotions and repelling undesirable emotions, ଅଭିଳଷିତ ଆବେଗ ଦ୍ୱାରା କବିତା ଘଟା ଯାଇଅଛି, 'Ingenious game'ଶବ୍ଦରେ ଏଠାରେ ଖେଳା ଯାଇଅଛି । ହରିହର ମିଶ୍ର ଶବ୍ଦ ଦ୍ୱାରା ଚିନ୍ତାଭିଭୂତ (Primarily haunted) । ସମଷ୍ଟି ଭିତରେ ଏକମାତ୍ର ପରମାଣୁ ବା 'ବ୍ରହ୍ମ କଣିକା' ଏଇ ବିଶ୍ୱ ଅବଗତ କରାଇଛି ତାଙ୍କ କବିତାର ଆଙ୍ଗିକ । ଏହି ଦୃଷ୍ଟିରୁ ତାଙ୍କ poetry is a form of cognition ମନେ ହୁଏ ଯଥାର୍ଥ, ସିଏ କହୁଥିବା 'ଅନୁସୃଜନ' ସମାନ ଭାବେ ଗ୍ରହଣ କରିନାହିଁ ପୋଜିସନ୍ ।

ଆଇ ହାଭ୍ ଇଂପୋର୍ଟାଣ୍ଟ ଥିଙ୍ଗ୍ସ ଟୁ ସେ, ନୁହେଁ କବିତା ସର୍ଜନା ପାଇଁ ଯଥାର୍ଥ ଉପାଦାନ । ପଂକ୍ତିରେ ମାଳ ହୋଇ ଝୁଲୁଥିବା ଶବ୍ଦମାନ କହୁଛନ୍ତି କ'ଣ, ତାହା କବିତାରେ ଗୁରୁତ୍ୱପୂର୍ଣ୍ଣ । ଟେକ୍‌ନିକଟିକୁ ଅଡ଼େନ୍ ଉଚ୍ଚାରଣ କରିଛନ୍ତି, How can i know what i think till I see what I say?

ଦୃଷ୍ଟିରେ Poetry is a special way of drawing attention to things ଏବଂ ଦ୍ୱିତୀୟ କଥା, ସିଏ ସଜେଷ୍ଟ କରିଛନ୍ତି, 'ମେଟାଫିଜିକାଲ୍ ପୋଏଟ୍ରୀ' ଅଟେ 'ଦି ହାଇଷ୍ଟେ ଫର୍ମ୍ ଅଫ୍ ପୋଏଟ୍ରୀ' । ଏହି ଦୃଷ୍ଟିରୁ 'ବ୍ରହ୍ମ କଣିକା' ପୋଏଟ୍ରୀ ଇଜ୍ ଟୁ ।

'Defence of Poesie' ରେ ସାର୍ ସିଡ଼ନୀ କବିତାକୁ ହସ୍ତାନ୍ତର କରିଛନ୍ତି ଅଧିକାର, 'ଲିଡ଼ିଂ ମେନ୍ ଟୁ ଦି ଗୁଡ୍ ଲାଇଫ୍'! ... to lead men to the

good life was function of all worthy human activities, କବିତା ତା' ସୀମାରେ ସୁନ୍ଦର ସଂପାଦିତ କରିଛି । କବିତାର ଏହା ଏକ ବୃହତ୍ତର କ୍ଷେତ୍ର ଦୃଷ୍ଟିରୁ 'ବ୍ରହ୍ମ କଣିକା'ରେ ପ୍ରଶସ୍ତତର ଆକ୍ଟିଭିଟୀ ହୋଇ ତାହାର ମୂଲ୍ୟ ସଂପାଦିତ କରିଛି । କବିତାଗୁଡ଼ିକର ଭିଯୁଜୁଆଲ୍ ସେପ୍ ଯେଉଁ ଉପାଦାନମାନ ବିତରଣ କରୁଛି ତାହା ଯେତିକି ମେଟାଫିଜିକାଲ ସେତିକି ସୋସିଆଲ୍ ହ୍ୟୁମାନ୍ ଆକ୍ଟିଭିଟୀ । କବିତା ତାହାର ଭାବ ଦୃଷ୍ଟିରୁ ଶୁଦ୍ଧ କଳ୍ପନା ନ ହୋଇ ବହନ କରିଛି ଅଧିକ ଗୁରୁତ୍ୱପୂର୍ଣ୍ଣ ଭାବେ ବୈଦିକ ଆଧ୍ୟାତ୍ମିକବାଦ ଓ ସାମାଜିକବାଦ । 'ପୋଏଟ୍ରୀ ଇଟ୍‌ସେଲ୍ଫ ଫିଲୋସୋଫୀ, 'ବ୍ରହ୍ମ କଣିକା' ତାହାର ମୂଲ୍ୟବୋଧ ପ୍ରତିପାଦିତ କରିଛି ।'



# ଦିଷ୍ଟି: ସୌନ୍ଦର୍ଯ୍ୟ ଚେତନାର ଶବ୍ଦବାଦୀ ଆକୃତି

କବିତା ମୁହୂର୍ତ୍ତର ମୂର୍ତ୍ତି, ମୁହୂର୍ତ୍ତକର ଅନୁଭୂତି । ଅନୁଭବଟି ଗଢ଼ି ଦେଉଛି, ତାହା ଲାବଣ୍ୟମୟୀ କବିତା । ମୁହୂର୍ତ୍ତ ଚିର ବର୍ତ୍ତମାନ ଏବଂ ଭାବ ରସରେ ଭବକୁ ଭୋଗ କରୁଥିବା କବି ମଣିଷ ଜଣକ ଭାବୁକ । ଲୁହକୁ ହସରେ, ଲବଣ ସମୁଦ୍ରକୁ କ୍ଷୀର ସମୁଦ୍ରରେ ବଦଳାଉ ଥାଏ ତାଙ୍କ ଭାବ ଓ ଭାବନାର ମୁହୂର୍ତ୍ତ । ଚୈତ୍ରର ଚୌହଦୀରେ ନିଆଁ ବର୍ଷୁଚି ସୂର୍ଯ୍ୟ, ଅଥଚ ଭାବୁକ କବିଙ୍କ ସ୍ୱପ୍ନରେ ଫୁଟୁଚି ସୁବର୍ଣ୍ଣ କଦମ୍ବ !

୨୦୧୫, କବି ହରିହର ମିଶ୍ରଙ୍କ ପ୍ରକାଶ ପାଇଛି ଖଣ୍ଡିଏ କାବ୍ୟିକ ସ୍ୱାକ୍ଷର 'ଦିଷ୍ଟି' । ଶେଷ କବିତାଟି 'ଦିଷ୍ଟି' ଭାବେ ନାମିତ । 'ଦିଷ୍ଟି' ଗୋଟିଏ ଭବିଷ୍ୟତରେ ସମ୍ଭାବନା ଭାବେ କବିତାଟିରେ ପ୍ରତୀକିତ (କବିଙ୍କ ପାଦଟୀକା, ପୃଷ୍ଠା ୧୪୦) । 'ଦିଷ୍ଟି' ଅର୍ଥ ଆନଂଦ, ହର୍ଷ, ଭାଗ୍ୟ ଓ ଉପଦେଶ ସେହି ପାଦଟୀକା କରିଛି ସୂଚିତ । 'ଆନଂଦ' ଓ 'ହର୍ଷ' ଶବ୍ଦ ଦୁଇଟି, ପାଖାପାଖି ଗୋଟିଏ ଭାବ ।

ଜଣେ କବି କବିତା ଲେଖିଥାନ୍ତି କାହିଁକି ? ନିଜର ଆନଂଦ ପାଇଁ ଜଣେ ରଚିଥା'ନ୍ତି କବିତା । ସେହି ଅଶବ୍ଦମୟ ଆନଂଦ ହିଁ ଆମ ଶାସ୍ତ୍ରୀୟ ଈଶ୍ୱର ! ଅଶବ୍ଦମୟଙ୍କ ଶବ୍ଦମୟ ଅବତରଣ ହିଁ ଅଟେ ତାହାଙ୍କ ଅଭୀପ୍ସା । ତାହା ମାୟାର ଆଙ୍ଗିକରେ ସତ୍ୟଙ୍କ ଶିବମୟ ଉପସ୍ଥାପନା । ବୈଚିତ୍ର୍ୟର ଚିତ୍ରମୟ ଉପାସନା ! ହରିହର ମିଶ୍ରଙ୍କ ପ୍ରଥମ କବିତା – ସୁଷମା 'ଅନ୍ତର୍ଯ୍ୟାମୀ' । 'ମୁଁ ଭାବିଲି କ'ଣ

ଦୋଦ ଚିହ୍ନା ହେଲେ କି ପ୍ରଭୁ / ଧୀରେଧୀରେ ହସିଦେଲେ', ଏହି ପ୍ରଭୁ ଜଣକ କିଏ ? ସିଏ 'ଅନ୍ତର୍ଯ୍ୟାମୀ' ! ଚିର ଚିନ୍ମୟ ଆନଂଦ । ଆନଂଦ ଆଦି ତତ୍ତ୍ୱ । ଅରୂପ ଚିନ୍ମୟଙ୍କ ସଂକଳ୍ପ ଆନଂଦ -କଳାରେ ବଦଳେ । କଳା ତାହାର ଆନଂଦ ରୂପ ଲୀଳା ବା ଅଭିବ୍ୟକ୍ତି ଲୀଳାରେ କରେ କଳନ !

ମୋ କାଠ ମୁହଁକୁ
ପରସ୍ତ ପରସ୍ତ ବନକ ଲଗା ମୁହଁକୁ
ଏବେ ମିଳେଇ ଦେଖି
ଯାହା ତୋ ଭିତରେ
ବାହାରେ.... (ଅନ୍ତର୍ଯ୍ୟାମୀ / ହରିହର ମିଶ୍ର)

ଈଶ୍ୱରଙ୍କ ସଂଳାପ, ମଣିଷକୁ କଥା କହୁଛନ୍ତି ତାହାର ସ୍ରଷ୍ଟା ଏବଂ ଚିହ୍ନି ପାରିଲେ ବି ଅକିଂଚନକୁ, ତେଣୁ ହସି ଦେଲେ ? ଭାବକୁ ନିକଟ ମହାସତ୍ତାଙ୍କ ଅନୁଭବ !

ସେହି ମୁହୂର୍ତ୍ତଟେ ଦର୍ଶନ ପାଇଁ
ମୁଁ ଜନ୍ମ ଜନ୍ମାନ୍ତର ଅପେକ୍ଷା କଲେ ବି
ଦାରୁ ବିଗ୍ରହରୁ ପାଇବି ନାହିଁ....

ତେବେ କେଉଁଠୁ ଆସିଲା ଏହି ଜୀବନ୍ତ ଦର୍ଶନ ଅଭିବ୍ୟକ୍ତି ? ଗୋଟିଏ ମୁହୂର୍ତ୍ତର ଅନୁଭବରୁ ଗଢ଼ି ହୋଇଗଲା 'ଜୀବନ୍ତ ମୋ ବଡ଼ବଡୁଆ' ! ନିଜର ଉପଲବ୍ଧି ଅନୁଭବରେ ମିଶି ଗଲା ! ଯାହା ଗଢ଼ି ହୋଇଗଲା ତାହା 'ଅନ୍ତର୍ଯ୍ୟାମୀ' ! ତାହା ଆଲୁଅର ହସ, ଶବ୍ଦର ଆର୍ଟ, ଦିଷ୍ଟିର ନିତ୍ୟ ଅସ୍ତିତ୍ୱ ପରବର୍ତ୍ତୀ ଶବ୍ଦଚିତ୍ର 'ହୈମୟନ୍ତୀ' ମହାପ୍ରକୃତି, ସିଏ 'ରୁଦ୍ର ସୁନ୍ଦରୀ' । 'ଅପରୂପା' ଗୋଟିଏ ଦୃଶ୍ୟ କବିଙ୍କ ଭିତରେ ପ୍ରଚ୍ଛନ୍ନ; 'ତମ ପାଖରେ ଥିଲା/ପ୍ରଚୁର ଭଲ ପାଇବାର ଏକ ରୂପେଲି ହ୍ରଦ/ଓ ପାଖେ ଥିଲା ମୋ ଭଲ ପାଇବାର/ଧାରାସ୍ରାବୀ ସୁନେଲି ଝରଣା', ସକାଳପରି ସବୁ ସ୍ୱଚ୍ଛ ଅନୁଭବ ହେବାବେଳେ ଦିଶିଥିଲା ଏହାର ନେପଥ୍ୟ ! 'ଏ ସବୁ ଆଗରୁ ଥିଲା ନିର୍ଦ୍ଧାରିତ', ପ୍ରାରବ୍ଧ ସୂତ୍ର ଗ୍ରଥିତଂ ଶରୀରମ୍ ।

ପଣ୍ଡିତ ଅରୁଣ ଶର୍ମା, ତାଙ୍କ ସଂଦର୍ଭ 'କାରଣ ପାତ୍ର' (ପୃଷ୍ଠା ୧୮୯) କରିଛନ୍ତି ଉଲ୍ଲେଖ -ପୂର୍ବ ଜନ୍ମୋଂ ମେ କିୟେ ଗୟେ ଆପ୍‌ନେ କର୍ମୋକେ କାରଣ ହୀ ବର୍ତ୍ତମାନ ମେଂ ଜନ୍ମ ମେଂ ହମ୍ ଏକ ଦୁସରେ କେ ନିକଟ ଆତେ ହୈ । ୟହ ଆକର୍ଷଣ ଔର୍ ନିକଟତା ବାସ୍ତବ ମେଂ ପୂର୍ବ ଜନ୍ମୋଂ କା ପରିଣାମ ହୈ । ଇସମେଂ

ସେ କୁଛ୍ କେ ହମ୍ ଋଣୀ ହୋତେ ହୈ ଔର୍ କୁଛ୍ ହମାରେ ଋଣୀ ହୋତେ ହୈ । ଏସବୁ ଥିଲା ଆଗରୁ ନିର୍ଦ୍ଧାରିତ, କବି ହରିହର ମିଶ୍ରଙ୍କ ବକ୍ତବ୍ୟକୁ ଯୋଗାଚାର୍ଯ୍ୟ ଅରୁଣ ଶର୍ମାଙ୍କ ବାକ୍ୟ ଦିଏ ସାମର୍ଥ୍ୟ; ପୂର୍ବ ଜନ୍ମୋଂ ମେଂ କିୟେ ଗୟେ ଆପ୍‌ନେ କର୍ମୋଂ କେ ଫଲ ସ୍ୱରୂପ ହୀ ଏକ ଦୁସ୍‌ରେ କେ ପ୍ରତି ଆକର୍ଷିତ ହୋତେ ହୈ ।

'ମୁଁ ଉର୍ଦ୍ଧ୍ୱକୁ ଉଠିଛି' ପାଷାଣର ଲୁହ ମୁଁ, 'ନିଭୃତରେ ମିଠାମିଠା ଅଶ୍ରୁ ବିନିମୟ କରେ' - ତିନୋଟି ଚିତ୍ର ଏବଂ ତିନୋଟି ବିଚ୍ଛିନ୍ନ ଭାବ ଚେତନା ଗୋଟିଏ ଐକ୍ୟ ତାନରେ ସମୃଦ୍ଧ । 'Supernal beauty ପ୍ରତି ଏକ ଉଚ୍ଚ ମାନବୀୟ ଅସ୍ପୃହା କବିତାର ନୀତିରେ ଖୋଜି ଦେଲେ ମିଳୁଛି । ଅଶ୍ରୁ ସ୍ୱାଦ ଦୃଷ୍ଟିରୁ ନୁହେଁ ମିଠାମିଠା, ଏବଂ ମିଠାମିଠା ସେତିକିବେଳେ ହୁଏ ହୈମୟନ୍ତୀ ଛାଇର ସ୍ପର୍ଶ ଯେତେବେଳେ ଆତ୍ମଦେହ ବା କାରଣ ଦେହ ପାଏ ।

ପସଂଦତମ ଶବ୍ଦାବଳୀରେ ଅଳଙ୍କୃତ ଅନୁଭୂତି, ତୃତୀୟ କବିତା 'ଚୈତ୍ରରଥ', ଜୁଏଲ୍‌ସ ଲାଇକ୍ ସାର୍ପନେସ୍ ଅଫ୍ ଇମାଜେରୀ ଏଣ୍ଡ୍ ଚିସେଲ୍‌ଡ଼ ମେଟାଫର୍ ! ଯେତେବେଳେ ଦଗ୍ଧ ପ୍ରାଣ ଅତି ମ୍ରିୟମାଣ, ବସନ୍ତର ଦ୍ୱିତୀୟ ଭାଗ ଚୈତ୍ର ରଥଟିଏପରି ହୋଇଛି ଅନୁଭବ । ରଥ ଅର୍ଥ ଉତ୍କଳୀୟଙ୍କ ଚେତନାରେ ଶ୍ରୀଜଗନ୍ନାଥଙ୍କ ରଥ । ଗଜପତି ମହାରାଜାଙ୍କ ସମାର୍ଜନୀ ସେବା ଚୈତ୍ରରଥରେ ମଧ୍ୟ ବ୍ୟବସ୍ଥିତ । ଚୈତ୍ର ବସନ୍ତ ଋତୁ ଏବଂ ବିଭୂତି ଦୃଷ୍ଟିରୁ 'ଋତୁନାଂ କୁସୁମାଙ୍କରଃ' ନିଜେ ପୁରୁଷୋତ୍ତମ ! ଇମାଜେରୀର ସାର୍ପନେସ୍ ଏବଂ ଲକ୍ଷ୍ୟ କରନ୍ତୁ: ବିଂଦୁ ବିଂଦୁ କାକର.. / ଚଂଦନର ପାଣି ଛିଂଚି ଫେରିଗଲା ପରେ / ଚଇତ୍ର ପବନ ଯାଏ ଖରକି ଖରକି / ତା'ର ସୁନା ଖଡ଼ିକାରେ / ମାଣିକ ମୁକୁଟ ବନ୍ଧି ନାଚୁ ଥାଏ ଋତୁରାଜ / ସ୍ତୂପସ୍ତୂପ ପଳିତ ପତ୍ରରେ / ଅଭିନବ ଛେରା ପହଁରାର ଏହି ଅଲଗା ପର୍ବରେ । ଚୈତ୍ରରଥ ଏଠି କିନ୍ତୁ ସୂର୍ଯ୍ୟରଥ ଯେଉଁ ଯାତ୍ରା କୋଣାର୍କରେ ଦିନେ ହେଉଥିଲା ।

ବସନ୍ତ ଉତ୍ସବ ଯେମିତି ସେ ଉତ୍ସବ ! 'ଚଇତ୍ର ପବନ' ମଳୟ, ତାହାର କି ଦିବ୍ୟ ସେବା ! 'ପ୍ରତିଟି ଋତୁର ମାଳା କଣ୍ଠ ଲଗ୍ନ' ମୈତ୍ରୀର ଜ୍ୟୋତି ପ୍ରସାରିତ କରିଛି ସହସ୍ର ବାହୁ, ମିତ୍ର ରଥ ହୋଇଛି ସଜ ! ବସନ୍ତର ବ୍ୟବସ୍ଥାରେ ପରିବେଶର ନୂଆ ଚିତ୍ର ଆଙ୍କିଛନ୍ତି କବି ଶ୍ରୀଯୁକ୍ତ ହରିହର ମିଶ୍ର । ସମୟର ଯାତ୍ରାପଥ ଅନ୍ତହୀନ ଅଥଚ ଏବେ ରଙ୍ଗୀନ୍ ଧୂଳି ଉଡ଼େ ! ପକ୍ଷୀମାନେ ଟାଣୁଛନ୍ତି କିରଣ ଡ଼ୋର, ସୃଷ୍ଟି ହେଉଛି କଂକ୍ରିଟ ଶବ୍ଦରେ ଅଙ୍କନ କରିଥିଲେ – 'ଧକ୍‌କା ଖାଇ କୁକୁଡ଼ାର ଦେହେ', 'ଭାଙ୍ଗି କେତେ ମହୁର ସୋରେଇ' ! ହରିହର ମିଶ୍ର ମେଟାଫିଜିକାଲ୍ କବି,

ଆଧ୍ୟାତ୍ମିକବାଦୀ, ସିଏ ଶୁଣିଛନ୍ତି ପରଭୃତର ପଞ୍ଚମତାନ ଏବଂ ଦେଖିଛନ୍ତି 'ମାୟାରଶ୍ମି', 'ଜାଲରେ ହରିଣ ନଦିଏ ଧରା'!! ଦଉଡ଼ନି ବଡ଼ ଖରା, ଚୈତ୍ରର ଖରା ।

'ହରିଣ'ର ଅର୍ଥ କ'ଣ, କାହାକୁ କରାଯାଇଛି ଇଙ୍ଗିତ? ହରିଣ ଏକ ମେଟାଫିଜିକାଲ୍ ସିମ୍ବଲ! ସିମ୍ବଲିଜିମ୍‌ର ତିନୋଟି ଅଂଶ, The romantic ironic, the primordial ଗୋଟିଏ, ଯାହା ଏହି 'ହରିଣ' ମନେ ହୁଏ । ଦ୍ୱିତୀୟ - the mystical - appear life - charged ଏବଂ ତୃତୀୟ syncopated!

ସଂକେତ (ସିମ୍ବଲ) ଅଧିଗ୍ରହଣ କରିଛି ସାଂକେତିକ ସାଂଦ୍ରତା । 'ଚୈତ୍ର ରଥ' ଧାରଣାଟି ଗୋଟିଏ ସୁନ୍ଦର Archetype, ଏହି ଷ୍ଟ୍ରକ୍‌ଚର୍ ଗଠନକୁ ପ୍ରଦାନ କରିଛି ବିସ୍ତୃତି ।

ପରବର୍ତ୍ତୀ ଶବ୍ଦ-ସୁଷମାର ଶୀର୍ଷକ 'ପରିବର୍ତ୍ତନ ।' ଏହା ମନେ ପକାଏ ପ୍ରସିଦ୍ଧ ଔପନ୍ୟାସିକ ଓ ସମୀକ୍ଷକ ଇ.ଏମ୍. ଫରଷ୍ଟେରଙ୍କ ଗୋଟିଏ କୈଫିୟତକୁ.... I think one of the reasons why I stopped writing novels is that the social aspect of the world changed so much; I had been accustomed to write about the old-fashioned world with its homes and family life and its comparative peace. All that went, and though I can think about the new world i can not put it into fiction.

(ଦି ପିଲିକାନ୍ ମାଇଡ୍ ଟୁ ଇଂଲିଶ୍ ଲିଟିରେଚର, ସପ୍ତମ ଖଣ୍ଡ, ଦି ମଡ୍ରେର୍ଣ୍ଣ ଏଜ୍, ପୃଷ୍ଠା ୧୪, ୧୯୭୦ ରିପ୍ରିଣ୍ଟ, ଆନ୍ତର୍ଜାତିକ ସଂସ୍କରଣ) ।

ବୋହୂ ଏଇଲେ ଝର୍କା ଖୋଲି ବସିଥିବ
ଆପାର୍ଟମେଣ୍ଟର ଚତୁର୍ଥ ମହଲାରେ
ମେରୁନ୍ ନେକ୍‌ଟାଇ ପିନ୍ଧି ବୁବୁନା ଆସିବ

x x x

ଇଣ୍ଡିଗୋ କଲର୍ ରିବନ୍ ପିନ୍ଧି
ଝିଅ ଓହ୍ଲେଇବ ହଳଦିଆ ବସ୍‌ରୁ
ବୋହୂ ରାସ୍ତାର ବୁଲାଣି ଯାଏ ଁଯାଇଥିବ
ଶିକୁଳି ବନ୍ଧା କୁକୁର ଟାଣି ନେଉଥିବ

ତଳ ମହଲାର ଡ଼େଙ୍ଗା ବୁଢ଼ାକୁ ଚାକୁଣ୍ଡା ବଣକୁ

x x x

ପୁଅ ବୋହୂ ଯାଇଥିଲେ ଆଣ୍ଡାମାନ ଯେ
ଅକ୍ସିଜେନ୍ ପିନ୍ଧି
ମାଛ ଦେଖୁଥିଲେ କେତେ ରଙ୍ଗର
ପୁଅ ହଜେଇ ଦେଲା କି ପକେଟରୁ ଦାମିକା ମୋବାଇଲ୍

x x x

ଜାଣିବ ସଂପର୍କ ହଜିଗଲା
ନୂଆ ସିମ୍ ପଡ଼ିଲା ପର୍ଯ୍ୟନ୍ତ

ହରିହର ମିଶ୍ରଙ୍କ ଏହା ପରିବର୍ତ୍ତନର ଦୃଶ୍ୟ ! କବିତା ନୂଆ ଶାଢ଼ୀଟିଏପରି ବଦଳି ନାହିଁ, ବଦଳିଛି ସମକାଳ ଜୀବନ ଶୈଳୀ । ଅନ୍ୟ କେହି ତାକୁ ଏତେ ଅନ୍ତରଙ୍ଗ ଭାବେ ନିରେଖି ନାହିଁ ! ଗୋଟେ ପଟେ ପୋରୁହାଁ ଅଷ୍ଟମୀ, ବାଲି ତୃତୀୟା ଓ ସାବିତ୍ରୀ ତ ଅନ୍ୟ ପଟେ "ଛିଆଲୋ ବଡ଼ିଜ୍ ଚଡ଼ି ଗୋଟାଏ ଡ୍ରେସ୍" ! ଗୋଟେ ପଟେ ବୁଧେଇ ଓଷା ନିଷ୍ଠା ତ ଅନ୍ୟ ପଟେ ଦିଲ୍ଲୀରେ ବ୍ରେକ୍‌ଫାଷ୍ଟ୍ ଭୁବନେଶ୍ୱରରେ ଲଞ୍ଚ୍, କିଙ୍ଗଫିସର୍ (ପ୍ଲେନ୍)ରେ ଦୁଇଟା ଫୁଟି ଶହେ ଟଙ୍କା ! ନିୟୁ ସୋସିଆଲ ଏଥିକ୍ସ ପପୁଲାର୍ କଲ୍‌ଚରରେ ସୃଷ୍ଟି କରିଛି ପ୍ରୋବ୍ଲେମ୍ସ ? ବରଂ କବି ଇକୋନୋମିକ୍ ଏବଂ ସୋସିଆଲ ଚେଂଜକୁ ବାଧ୍ୟ ମଣିଷ ଜଣେ ଗ୍ରହଣ କରୁଥିବା ବେଳେ ତାଙ୍କ ସ୍ମୃତିରେ ଗଣେଶ, ସରସ୍ୱତୀ, ଗଜଲକ୍ଷ୍ମୀ ପୂଜା ଏବଂ କାର୍ତ୍ତିକ ମାସର ବ୍ରତ ଖାଁ ଖାଁ କରୁଛି ! ଏହିଭଳି ଏକ ପରବିର୍ତ୍ତିତ ପରିବେଶକୁ କବିତାଠୁ ବିମୁକ୍ତ ଓ ବିଚ୍ୟୁତ କରିପାରିନାହାନ୍ତି କବି ହରିହର ମିଶ୍ର । ଅଥଚ ଔପନ୍ୟାସିକ ଫର୍‌ଷ୍ଟର୍ କହିଲେ ଏହି ପରିବର୍ତ୍ତନ ସହିତ ନିଜକୁ ମୁଁ ଖାପ ଖୁଆଇ ପାରୁନାହିଁ, ନୂଆ ଦୁନିଆ ଚିତ୍ର ମୁଁ ମୋ ଉପନ୍ୟାସରେ ଆଙ୍କି ପାରିବି ନାହିଁ, ତେଣୁ ମୁଁ ଆଉ ଲେଖୁ ନାହିଁ ।

'ଦି ସୋସିଆଲ ଏଣ୍ଡ୍ ଇଣ୍ଟେଲେକ୍‌ଚୁଆଲ୍ ବ୍ୟାକ୍ ଗ୍ରାଉଣ୍ଡ୍'ରେ ପ୍ରଫେସର୍ ଜି.ଏଚ.ବ୍ୟାନ୍ ଟୋକ୍ ଲେଖିଛନ୍ତି, ବିଂଶ ଶତକର ମୋରାଲ୍ କନ୍‌ଫ୍ୟୁଜନ୍ ସାମାଜିକ ପରିବର୍ତ୍ତନ ଭିତରେ ବେକ କାଢ଼ି ଲେଖକଙ୍କ କଳ୍ପନା ଭିତରେ ଭର୍ତ୍ତି କରିଛି ସଂଦେହ ! ସମ୍ମୁଖ ଓ ନେପଥ୍ୟ ମଧ୍ୟରେ ସୃଷ୍ଟି କରିଛି ଅନ୍ତର୍ଦ୍ୱଂଦ୍ୱ ।

ସମ୍ମୁଖ- 'ହିମାଚଳ ପ୍ରଦେଶର ଡ୍ରେସ୍ ପିନ୍ଧିଥିଲା / ମୋ ଗେଲବସରୀ ବୋହୂ', କିଂବା ସାଇବାଣୀ ହେବାବେଳେ ବ୍ୟାକ୍ ଗ୍ରାଉଣ୍ଡ୍- 'ଗଣେଶ ସରସ୍ୱତୀ

ଗଜଲକ୍ଷ୍ମୀ ବିଶ୍ୱକର୍ମା / କାର୍ତ୍ତିକ ତ ଅଛି' କିମ୍ବା 'ଷଠୀପୂଜାରେ ଝିଙ୍ଗି ବାଡ଼ିଆ ଖାଇ' ବା ଶେଷ ରଇବାର ଖୁଦୁରୁକୁଣୀ..' । କବି ନୈତିକ ସଂଶୟାକୁଳ ପରିସ୍ଥିତି ଭିତରେ ଚକଟି ହୋଇଯାଉଥିବାବେଳେ ସୋସିଆଲ୍ ମୁଭ୍‌ମେଣ୍ଟ ଠାରୁ ନିଜକୁ ଅଲଗା ଓ ଏକେଲା କରିଛନ୍ତି ଅନୁଭବ । Urbanization ଜୀବନର ମଲାଟ ହେବାବେଳେ ପାରମ୍ପରିକ ପାରିବାରିକ ଶାନ୍ତି ଜୀବନର ଭିତର ଫର୍ଦ୍ଦରେ ସବୁବେଳେ ଖୋଜୁଛି ସମକାଳ ମାନବ ଚେତନା । ରୁରାଲ୍ ୱେ ଅଫ୍ ଲାଇଫ୍‌ର ଡ଼ିକ୍ଲିନ୍ କବି ଚେତନାକୁ ଉଦ୍ଦୀପିତ କରିରଖିଛି । ପରିବର୍ତ୍ତନ ସିଏ ସ୍ୱୀକାର କରିଛି ଅଥଚ ଦେଇପାରୁନାହିଁ ନୈତିକ ସ୍ୱୀକୃତି, ଏମିତି ଗୋଟିଏ ଅନ୍ତର୍ଦ୍ୱଂଦ୍ୱ 'ପରିବର୍ତ୍ତନ' କବିତାରେ ସୁନ୍ଦର ଭାବେ ଫୁଟି ଉଠିଛି । ସମକାଳ କବି ଅନ୍ୟ କେହି ଏତେ ସୁନ୍ଦର ଅର୍ନ୍ତଦ୍ୱଂଦ୍ୱଟିଏ ପାଠକଙ୍କ ଦୃଷ୍ଟିର ଫର୍ଦ୍ଦକୁ ଆଣିଥିବାପରି ମନେହୁଏ ନାହିଁ । ଅବିଚ୍ଛେଦ୍ୟ ମାନବର ଅବସ୍ଥା ନିଖୁଣ ଚିତ୍ରମାନଙ୍କରେ ଉପସ୍ଥାପିତ ଓ ବିତରିତ ।

'ଆହତ ଚନ୍ଦ୍ରମା' ବିଜ୍ଞାନର ଜୟ ଯାତ୍ରା ଏବଂ ଫିଜିକ୍ସର ପ୍ରଶାସନ; ମାନବ ମାନସିକତା ଓ ଭାବାବେଗରେ ପ୍ରଚଣ୍ଡ ବିସ୍ଫୋରଣ କାବ୍ୟିକତାର ସୁକୋମଳ ପାଖୁଡ଼ାରେ ସୃଷ୍ଟି କରିଛି ବ୍ୟାପକ ସଂକ୍ରମଣ । ନିରୀହ କବି ଚେତନା ପାଦେ ଅତୀତର ପରମ୍ପରାକୁ ଅବଲୋକନ କରୁଥିବା ବେଳେ ବର୍ତ୍ତମାନର ପାଦ ତଳକୁ ଥରେ କରୁଛି ଅବଲୋକନ । 'ଜହ୍ନକୁ ନ ପାଇ ଛଟପଟ ମନ' ! କବିତାରେ କବି ବହନ କରିଛନ୍ତି ଏଠାରେ ନିଜ ଯୁଗ ଦାୟିତ୍ୱ ! ମୁଭମେଣ୍ଟ, ମାଇଁଣ୍ଡ ଏବଂ ଫ୍ରେଜ ତିନୋଟି ଯାକ ସିଂପାଥେଟିକାଲୀ ହୋଇଛି ସ୍ପଂଦିତ । ବିଜ୍ଞାନ ଫିଲିଂରେ ଯେଉଁ ବାସ୍ତବିକତାକୁ ସମ୍ମୁଖୀନ କରାଇଛି ତାହାର ପରିଣାମ ମଣିଷର ସାମାଜିକ ଜୀବନରେ ହୋଇଛି ପରିଦୃଷ୍ଟ । 'ଆହତ ଚନ୍ଦ୍ରମା' ଏହାର ପ୍ରାମାଣିକ ପ୍ରେକ୍ଷାପଟ । ଚନ୍ଦ୍ରମା ସୌନ୍ଦର୍ଯ୍ୟ ସଂଦର୍ଶନରୁ ଆବେଗିକ ବାସ୍ତବତା ମାନବ ଉପଲବ୍ଧିରେ ବିଖଣ୍ଡିତ ଓ ଭାଗଭାଗ ! କୁମାର ପୁନେଇଁର ହୃଦୟରୁ ସଫା ହୋଇଯାଇଥିଲା । ଆଗକୁ ଯେତେବେଳେ ଜଣା ପଡ଼ିଲା ନାସାର ଦୁଇଟି ବୋମାରେ ଚନ୍ଦ୍ରରେ କ୍ଷତ, ତହିଁରୁ ଝରୁଛି କ'ଣ କେହି ଜାଣି ନାହାନ୍ତି ! କିଂତୁ ସତ୍ୟ-ବୋମା ପଡ଼ି ଶଶାଙ୍କ କୋଳରେ / ବହକାଳ ଠେକୁଆଟି ମରିଗଲା', ଠେକୁଆ' ମଣିଷର ସାଇତା ଭାବାବେଗ ଓ ବିଶ୍ୱାସ ! ଏକଦମ୍ ସ୍ୱଚ୍ଛ ଗୋଟିଏ ସିମ୍ବଲ ।

'ଅନୁଶୋଚନା ରିଚି ପାଇଁ' ଅତି ବାସ୍ତବବାଦୀ ଶୈଳୀରେ କବିତାଟି ଗଢ଼ି ଉଠିଛି । କବିତା କହୁଛି 'The immediate present', ଏଥିରେ ନାହିଁ ପୂର୍ଣ୍ଣତା, କେବଳ ଆଧୁନିକ ବଂଚିବା ଶୈଳୀର ବାସ୍ତବତା ଲାଭ କରିଛି କଳାତ୍ମକତା । ଏଥିରେ ଏକ୍ସପିରିଏନ୍ସର ପ୍ରବୃତ୍ତି ଯେମିତି ଏକ transaction,

ବାସ୍ତବତା ଓ ବର୍ତ୍ତମାନ ମଧ୍ୟରେ ଗୋଟିଏ ସବ୍‌ଜେକ୍ଟିଭ୍ ଚେହେରା କବିତା । ପରବର୍ତ୍ତୀ କବିତା 'ଆରୋହୀ' ଗୋଟିଏ ପିଓର ପୋଏଟ୍ରୀ, ଫିଜିକାଲ୍ ପୋଏଟ୍ରୀରେ ବଦଳି ଆସୁଥିବା ବେଳେ ମେଟାଫିଜିକାଲ୍ ହୋଇଯାଇଛି । କଳା ଧଳା ଦୁଇଟି ଶ୍ୱାନ ଦୁଇଟି ଯମଦୂତ ପୁଣି ସେମାନେ 'କଳହ ରତ ଶ୍ୱାନ ଏ ଦିନ ଏ ରାତି' ! ବେଦରେ ମଧ୍ୟ ଗୋଟିଏ ଏକ ସ୍ଫଟିକ ଶକ୍ତ ଓ ସ୍ୱଚ୍ଛ ସିମ୍ବଲ । 'ମହାଭାରତ'ରେ ଶ୍ୱାନ ସ୍ୱୟଂ ଧର୍ମ ! ଦୁଇଟି ଶ୍ୱାନଙ୍କୁ ନେଇ କବି ହରିହର ମିଶ୍ରଙ୍କ 'ଆରୋହୀ' ଏକ ଅନବଦ୍ୟ ଅନୁପମ ଚିତ୍ରଣ । କବିତା ସଂପୂର୍ଣ୍ଣ ଅବରୋଧ ହୋଇଗଲେ ଉତ୍କଣ୍ଠା ହୋଇଯାଏ ମ୍ଳାନ । ଭାବ ଓ ରସର ଆକର୍ଷଣ ହରାଇ ବସେ ତାହାର ହୃଦୟ ଜିଣା ସ୍ମିତ ଏବଂ ସୌନ୍ଦର୍ଯ୍ୟର ଅକୁହା କଟାକ୍ଷ ।

କବି ହରିହର ମିଶ୍ର ପ୍ରକୃତିପ୍ରେମୀ ଏବଂ ଜଣେ ପ୍ରକୃତି କବି । ୱାର୍ଡ୍‌ସୱାର୍ଥଙ୍କ ପରେ ବା ଗଙ୍ଗାଧର ମେହେରଙ୍କ ପରେ ପ୍ରକୃତିକୁ ଏତେ ନିଠେଇ ଓ ଅନ୍ତରଙ୍ଗ ଭାବେ କେବଳ ସେହି ଦେଖିଛନ୍ତି । ଦେଖନ୍ତୁ ତାଙ୍କ ଏହି ଉପଲବ୍ଧି:

ଆକାଶ ପାଲଟି ଯାଏ
ଶ୍ୟାମଳ
ଶୁଆ ପରଭଳି କିଛି କାଳ
ସତେ ଅବା ସେ ଆକାଶ
ସୂର୍ଯ୍ୟ ଝଲମଲ ଏକ ନିସ୍ତରଙ୍ଗ ହ୍ରଦ (ଅଚାନକ ଶ୍ୟାମଳ ଆକାଶ)

ପ୍ରକୃତି ପୃଥିବୀକୁ ସେତେ ସୁଖ ଦାୟକ ଓ ସୌନ୍ଦର୍ଯ୍ୟମୟ କରି ଖଂଜି ନାହିଁ, ଯେତେ ସ୍ୱର୍ଣ୍ଣିମ କରି ପ୍ରଦାନ କରିଛନ୍ତି କବି, କବିତାରେ ଚିତ୍ରକୁ ଭୋଗ କରି ବ୍ୟକ୍ତ କରିଛନ୍ତି ସିଡ୍‌ନୀ । ସିଏ ଆରିଷ୍ଟଟଲ୍‌ଙ୍କ ସ୍ମରଣ କରି ପ୍ରକାଶ କରିଛନ୍ତି, Poesy, is an art of imitation, ଆରିଷ୍ଟଟଲଙ୍କ ଗ୍ରୀକ୍ ଶବ୍ଦ 'mimesis' ପ୍ରକୃତିର ନକଲ । ଯାହା କବି ହରିହର ମିଶ୍ରଙ୍କ କବିତାରେ ଉତ୍କୀର୍ଣ୍ଣ । କବିତା ଏକ ଉପସ୍ଥାପନ metaphorically ଏବଂ ଏକ speaking picture! ଏଠାରେ ହରିହର ମିଶ୍ର ଦୁଇଟି କଥା ଚିତ୍ର ବର୍ଣ୍ଣନାତ୍ମକ ଶୈଳୀରେ କରିଛନ୍ତି ଉପସ୍ଥାପିତ ।

୧. ଶୁଆ ପରଭଳି ଶ୍ୟାମଳ ଆକାଶ

ଏବଂ ୨. ଗୋଟିଏ ନିସ୍ତରଙ୍ଗ ହ୍ରଦରେ ସୂର୍ଯ୍ୟ ଝଲମଲ ହେଉଛି ।

ସିଡ୍‌ନୀ ଏହି ବ୍ୟାଖ୍ୟାର ପାରାଗ୍ରାଫ୍‌ରେ କବିତାର ଉଦ୍ଦେଶ୍ୟ ବା ଆଭିମୁଖ୍ୟ ପ୍ରତିପାଦନ କରିଥିଲେ, To teach and delight, ଏହା ଥିଲା ତାହାଙ୍କ ସମକାଳ

ଆଭିମୁଖ୍ୟ । ମାତ୍ର ସମକାଳ ଗଦ୍ୟର ମହାଯୁଗ । ବିଜ୍ଞାନ ବୈଷୟିକତା ସାହିତ୍ୟକୁ ବୁଢ଼ା ଅକର୍ମଣ୍ୟ କରି ଦେବାକୁ ବସିଥିବାବେଳେ କବିତା କୁଆଁର ପୂନେଇ ସଂଧ୍ୟାର ଜହ୍ନି ଫୁଲ ! କବିତା ଈଶ୍ୱରଙ୍କ ଉଚ୍ଚା ଚର୍ଚ୍ଚ, ତା ଧ୍ୱନିରେ କେବଳ ପ୍ରଶାନ୍ତି ଓ ଆଶ୍ୱାସନା ! ପ୍ରକୋଷ୍ଠ ଭିତରେ ପବନରେ ପହଁଗୁଛି ପୀଡ଼ିତ ଆତ୍ମାର ଆକୁଳ ପ୍ରାର୍ଥନା । ଜ୍ୱଳନ୍ତ ମହମବତୀର ଶିଖାପରି ଅନ୍ଧକାରରେ ଆଂଦୋଳିତ ମଣିଷର ଅସ୍ତିତ୍ୱ । କବିତା ସେହି ଅସ୍ତିତ୍ୱର ଚିତ୍ର ! ନୁହେଁ ତା'ର ମୀମାଂସା, କିଂବା ମୀମାଂସା ପାଇଁ ଶିକ୍ଷା ବା ସୁଖ ।

'ତମ ସତ୍ତା ଅପରୂପ ଅପୂର୍ବ ଅମୃତ' 'ଭୁଲାଇ ଦିଏ ମନକୁ ମୁହୂର୍ତ୍ତେ' 'ଶୂନ୍ୟ ବିହାର'ରେ ତମ ଚିତ୍ର । 'ତମେ' 'ଅନଶ୍ୱର ଅଣାକ୍ଷର ଆହେ ଅଣାକାର', ତମକୁ ସୀମାଟିଏ କରିଛି ସମ୍ବୋଧନ ! କଳ୍ପନାରେ ଏବଂ ପ୍ରତ୍ୟେକଟି କଳାରେ 'ତମେ' ମୂର୍ତ୍ତିମନ୍ତ !

ଗୋଟିଏ ପ୍ରଫେଟିକ୍ ଇଲିମେଣ୍ଟ୍ ଏଥିରେ ରହିଛି, ଇଲିୟଟ୍, ସୋଲେଝେନିତ୍‌ସେ ବା ବ୍ରଡସ୍କିଙ୍କ ପରି କବି ପ୍ରତ୍ୟାବର୍ତ୍ତନ କରିଛନ୍ତି ଆଧ୍ୟାତ୍ମିକ ରହସ୍ୟ ଭିତରକୁ ! ସେମାନେ ଫେରିଥିଲେ ଖ୍ରୀଷ୍ଟିୟାନିଟିକୁ, କିଂତୁ ଚର୍ଚ୍ଚର ଅସହମତ ଭିତରେ ସୃଷ୍ଟିର ନୂଆ କାଳକୁ । ମଣିଷ ସମାଜପରି ସେମାନଙ୍କ ବିଷୟ କିଂତୁ ଥିଲା ପ୍ରାଚୀନ । ସେମାନଙ୍କ ପାଖରେ ଗୋଟିଏ ବିଷୟ ଥିଲା Evil ଏବଂ ସୋଲଝେନିତସେ ପ୍ରଶ୍ନ କରିଥିଲେ, tell us why evil exists? ଏହାର ବିପରୀତ ଦୃଷ୍ଟି ଏବଂ ବିପରୀତ ଅନୁଭବ 'ଶୂନ୍ୟ ବିହାର'ରେ ହଂସଟିଏ ହୋଇ ଖେଳୁଛି କବିତାର ହ୍ରଦରେ । ଆସ୍ତିକତା ଓ ଆଧ୍ୟାତ୍ମିକତାର ପରିଧି ଭିତରେ ଘଟିଛି 'ଜୀବନ ଲୀଳା' । 'ମୁଁ ତୁମକୁ ଯେତେବେଳେ ସୃଷ୍ଟିକରେ/ଅପାର୍ଥୀବ ମନେ କରେ ମୋ ନିଜକୁ ।' ଚିହ୍ନି ହୋଇଯାଏ 'ତମେଟିକୁ' ! 'ତମେ ସ୍ୱୟଂ ବିଶ୍ୱ କର୍ତ୍ତା !! ଏସ୍‌ଥେଟିକ୍ସ ଅଫ୍ ମଡ଼େର୍ଣ୍ଣଟୀରେ ଏଭଳି କଳ୍ପନା ଗୋଟିଏ କେହି ଜଣେ ପାଶ୍ଚାତ୍ୟ ଶବ୍ଦ ଶିଳ୍ପୀ ସେମାନଙ୍କ ଚେତନାରୁ ଖୋଜି ପାଇନାହାନ୍ତି । ସମକାଳ ଇଂପ୍ରେସିଜିମ୍‌ରେ ହରିହର ମିଶ୍ରଙ୍କ ଧାଡ଼ିଟିର ମୂଲ୍ୟ ମେଜିକ୍‌କାଲ୍ ! ଗୋଟିଏ ନବ କଳାତ୍ମକ ଆନ୍ଦୋଳନର ସୂତ୍ରପାତ କରିଛି । ତାଙ୍କ 'ଶୂନ୍ୟ', 'ପୂର୍ଣ୍ଣ' ଗୋଟିଏ ପକ୍ଷରେ ହେବାବେଳେ ଅନ୍ୟ ପକ୍ଷରେ ଅଂଶ, 'ଜଗତରେ ଆଚ୍ଛନ୍ନ' ! 'ବଂଚି ରହେ ଅଶରୀରୀ/ ଦୁକୁଦୁକି ଆଲୁଅରେ ଅନ୍ଧାରରେ', ସିଏ ଶୂନ୍ୟ ଅନିର୍ବାଣ । ଆଗକୁ କୁହାଯାଇଛି, 'ଆମେ ସବୁ ପରିବ୍ୟାପ୍ତ ତମ କରୁଣାର' (କବି ପ୍ରଜାପତି) । 'ତମେ' ଆଜି ହୋଇଯାଇଛି–

ତମେ ହିଁ ପ୍ରକୃତି ଆଉ ତମେ ହିଁ ପୁରୁଷ
ତମେ ହିଁ କାରଣ ତମ ସୃଷ୍ଟି ପ୍ରକ୍ରିୟାର
ତମେ ହିଁ ଆକାର ଆମ ସକାମ ଭକ୍ତିର
ତମେ ହିଁ ନିରାକାର ସତ୍ତା ନିଷ୍କାମ ପ୍ରାଣର

'ଦିଷ୍ଟି' ପ୍ରତିଶ୍ରୁତି ସମ୍ପନ୍ନ ଓ ଗୁରୁତ୍ୱପୂର୍ଣ୍ଣ ଏକ ଆଧ୍ୟାତ୍ମିକ ଉତ୍ତରଣର ଶକ୍ତ ଓ ସୂକ୍ଷ୍ମ ଉଚ୍ଚାରଣ ।

ପ୍ଲାଟୋ ଶବ୍ଦ ଶିଳ୍ପ ବିଚାରରେ ସ୍ୱୀକାର କରିଥିଲେ ଜଣେ ଅନ୍ୱେଷିତ ଖୋଜି ପାଇବ, The body of this work, though the inside and strength were philosophy, the skin, as it were, and beauty dep-ended most poetry. କବିତାର ଆଙ୍ଗିକ, ଆତ୍ମିକ ଓ ସାମର୍ଥ୍ୟରେ ଭର୍ତ୍ତି ଦର୍ଶନ । ଯାହା ଦୃଷ୍ଟି ବା ଦିଷ୍ଟିର କାର୍ଯ୍ୟ । କବିତା ସୌନ୍ଦର୍ଯ୍ୟ ଉପରେ ନିର୍ଭରଶୀଳ ଏବଂ ସାବଲୀଳ ଶବ୍ଦମାନଙ୍କ ପଂକ୍ତିର ବିହାର ହରିହର ମିଶ୍ରଙ୍କ କବିତାର ଚର୍ମ । 'ସପତ୍ନୀ' ଆରମ୍ଭରେ ସମକାଳର ଅନୁଭୂତି:-

ଜଣେ କ୍ରେଡ଼ିଟ କାର୍ଡ଼ ଧରି କାର୍‌ରେ ବୁଲେ
କଦବା କେଉଁ ବାନ୍ଧବୀଙ୍କ ଘରେ
ଡ଼ିନର୍‌କୁ ଯିବା ପାଇଁ ଗିଫ୍ଟ କିଣେ
ସମକାଳର ଅନୈତିକ ଓ ନୈତିକ ଜୀବନର ଅନ୍ତର୍ଦୃଷ୍ଟି
ବଢ଼େଇ ଦିଏ
ଆଶ୍ରୟ ଦାତାଙ୍କ ଥଣ୍ଡା ହାତକୁ
ଏପରି ବି ହୁଏ
ନିଜର ଅନିଚ୍ଛା ସତ୍ତ୍ୱେ ପତିବ୍ରତା
ପତି ଧର୍ଷିତା ହୁଏ

ଆଧୁନିକ ଜୀବନ ଦର୍ଶନ ଓ ଯୌନ ଦର୍ଶନର ବିଭକ୍ତ ସତ୍ତା ଚିରା ଜୀବନକୁ କରିଛି ଗୋଟାଳିଆ । ଯେଉଁଠି ବିଙ୍ଗ୍ ଏଣ୍ଡ୍ ଥିଙ୍ଗ୍ ବଦଳୁଛି । ବଦଳିବା ଅର୍ଥ ସଂପର୍କର ପରିବର୍ତ୍ତନ । ଯେଉଁ ପରିବର୍ତ୍ତନର ଭୂମିରୁ ଆଧୁନିକ ସଂସ୍କୃତି ଓ ସଭ୍ୟତାର ଜନ୍ମ । ଏଠି ଜୀବନ ଦେଖାଯାଉଛି ଯେମିତି 'The sea's edge is neither sand nor water'! ଏଠି କବିତା କ୍ରିଟିସିଜିମ୍ ଅଫ୍ ଲାଇଫ୍ ନୁହେଁ, ପ୍ରୋଫେଟିକ୍

ଇଲିମେଣ୍ଟ୍ ଅଫ୍ ରାଇଟିଂ ! ଜୀବନପରି କବିତା, କବିତା ବୃନ୍ତରେ ଝୁଲୁଥିବା ପୁଷ୍ପଟିଏ କିଂବା ଆକାଶ ତଳେ ଖଣ୍ଡେ ଭାସମାନ ମେଘଖଣ୍ଡ ! କଳା ପାଇଁ ସଂଯୋଜିତ କଳା ! ଅଭିବ୍ୟକ୍ତିର ବାଲାନ୍ସ ରଖିଛି ଜୀବନ, ସାମାଜିକତା ଓ ସଭ୍ୟତା ଜନିତ ପରିବର୍ତ୍ତିତ ପରିବେଶ । କବିଙ୍କ କାବ୍ୟିକତାର ସ୍ୱରରୁ ସ୍ପଷ୍ଟ ଶୁଣାଯାଉଛି ଯାହା ତାଙ୍କୁ ଅସହ୍ୟ ଲାଗୁଛି ତାହାକୁ ସିଏ କବିତା କରିଦେଇଛନ୍ତି । ଦି' ଗୁଲାଗ ଆର୍କିପିଲାଗୋ' ଆଲୋଚନାରେ ଲେଖିଛନ୍ତି ସମୀକ୍ଷକ ପାଜ୍, Solzhenitsyn tells us what is happening, what is happening to us, what is violating us. କ'ଣ ଅସୁବିଧା ଆମକୁ ଲାଗୁଛି, ନୂଆ ସମକାଳ ମାନବ ବ୍ୟବହାର ବା ଆଚରଣର ଇତିହାସ ! ତାକୁ ଚିରକାଳ ପାଇଁ କବିତାରେ କବି ହରିହର ମିଶ୍ର ଆଙ୍କି ଦେଇଛନ୍ତି ।

ଗୋଟିଏ ଆଧୁନିକ ରୋଗ 'Psychic Schism' ମାନବ କନ୍‌ସାଇନ୍ସକୁ ହୋଇଯାଇଥିବାବେଳେ ସିଏ ଚିହ୍ନି ପାରୁନାହିଁ ନିଜକୁ ! ଇତିହାସର ଉର୍ଦ୍ଧ୍ୱରେ ବଂଚିବାର ସାଲିସ୍ । ଗୋଟିଏ ନୈତିକ ସମାପ୍ତିର ଆରମ୍ଭରେ ସମାଜ ଏବେ ଆଧୁନିକ ଏବଂ ଜୀବନ ସାଂସ୍କୃତିକ, ଏହାରି ବାର୍ତ୍ତା ସୂଚିତ କରିଛି 'ସପନ୍ନୀ' ର ଚିତ୍ର ।

'ଦିଷ୍ଟି'ରେ ମୋଟ ଛପନଟି ସୌନ୍ଦର୍ଯ୍ୟ ଚେତନା ଶବ୍ଦବାଦୀ ଆକୃତି ଅଭିଷିକ୍ତ । କଳ୍ପନାର ସିଂହାସନରେ ଅଧିଷ୍ଠିତ ସମକାଳ ଯୁଗଚେତନାର ନୀଳ ପରିଚ୍ଛଦ । 'ଦିଷ୍ଟି'ର ସମସ୍ତ ସମ୍ପଦ ପରିପକ୍ୱ, କବିଙ୍କ ପରିପକ୍ୱ ଅନୁଭୂତିର ପରିଣାମ । ବାଁ ଡ଼ାହାଣ ଯେଉଁ ପଟକୁ ଦୃଷ୍ଟି ଦେଲେ ବାମାଙ୍ଗୀର ଗୀତା, କୋରାନ୍ ଓ ଲାଲ କିତାବ । ବଡ଼ ଅଭିମାନୀ ଚେହେରା, ମାଦଳ ଦିଅଁ ମୂକ ଓ ବଧୀର କିଂତୁ ଲମ୍ବିଛି ତା' ଆନଂଦ ବଜାର ।

ପୁଣି ଅନ୍ୟ ପକ୍ଷରେ ଆନଂଦ କ'ଣ, ଅନ୍ନ କ'ଣ ଓ ପ୍ରାଣ କ'ଣ ? ଟ୍ରେଡ୍ ଟାୱାର ଧ୍ୱଂସ ପରେ ବୃହତ୍ତମ ଆର୍ଥିକ ଶକ୍ତି ଦୃଷ୍ଟିରେ ସଂସ୍କୃତିର ସଂଜ୍ଞାରେ ତ୍ରୟ 'ଟି'ର ପ୍ରାଧାନ୍ୟ ! ଟେରରିଜିମ୍, ଟେକ୍‌ନୋଲୋଜୀ ଓ ଟେଲିଫୋନ୍ ପ୍ରତ୍ୟେକ ପରିବାର କ୍ଷୁଦ୍ରାତିକ୍ଷୁଦ୍ର ପରିସରରେ 'ପୋଷା ବିଲେଇ କାମୁଡ଼ି ଧରନ୍ତି ଲୁହା ଦଣ୍ଡ' !

ଅର୍ଥଠାରୁ ଉର୍ଦ୍ଧ୍ୱରେ କିଛି ବ୍ରତ, ମୁକ୍ତି ବା ଭୁକ୍ତି ! କ୍ଷମତା ଓ ଅର୍ଥ ସଂସ୍କୃତିର ଡ଼ାକଘରକୁ ବଦଳାଇ ଦେଇଛି ! ଏଇ 'ଦିଷ୍ଟି' ତାହାର 'ଉତ୍ସବ' ସଂଜ୍ଞାଟିକୁ ସାର୍ଥକ କରିଛି ।

ବୈବସ୍ୱତ ମନୁଙ୍କ ପୁତ୍ର 'ଦିଷ୍ଟ'। 'ଦିଷ୍ଟି' ଏକ ସଂସ୍କୃତ ବିଶେଷ୍ୟ ପଦ। ସମୟ, କାଳ ଓ ଅଦୃଷ୍ଟ ଅର୍ଥରେ ଏହାର ବ୍ୟବହାର ଘଟିଛି। ଯେତେବେଳେ ଏହା ହୋଇଯାଏ 'ଦିଷ୍ଟି', ବ୍ୟବହାରରେ ଏହାର ଆଭିଧାନିକ ଅର୍ଥ ବଦଳି ଯାଇଛି! ହର୍ଷ, ଆନଂଦ, କଥନ, ଭାଗ୍ୟ, ଉପଦେଶ ଓ ଉତ୍ସବ ଆଦି ଅନେକ ଭାବ 'ଦିଷ୍ଟି' ଶବ୍ଦ କରେ ପ୍ରଦାନ। କବିତା 'ବିନ୍‌ଦାସ', ସିଏ ଅର୍ଥର ସହବାସରୁ ବିମୁକ୍ତ ଏକ ଶାବ୍ଦିକ କଣ୍ଟେନର! କୋଶକୋଶ ବ୍ୟାପି କଇଁଫୁଲର ନଈ, ଗୋଟିଏ ନୂଆ ଖୁସି ଓ ନୂତନ ରୋମାଂଚ, ତାକୁ 'ଦିଷ୍ଟି'ରେ ବାଢ଼ିଛନ୍ତି ହରିହର ମିଶ୍ର। ବାରଯାତ୍ରାରୁ ବାର ଶ୍ରାଦ୍ଧ ଯାଏଁ/ଥାଏ ଆଲୁଅର ହସ! ପ୍ରତିଟି ଅଙ୍କରେ ଅଙ୍କ ଓ ଆତଙ୍କ, 'ଦିଷ୍ଟି ଥାଏ ମିଳନ ଓ ବିରହର ଅବ୍ୟକ୍ତ ଆନନ୍ଦ / ଦିଷ୍ଟି ଥାଏ! ଥାଏ ଭବିଷ୍ୟତର ଶୁଭକାମନା!

ଡ଼ବ୍ଲୁ.ବି. ଇଏଟସ୍ ଲେଖିଛନ୍ତି, That some new day may breed the best! 'ଆସନ୍ନ ବିଷୟ ସୂଚାଉଥିବା କାର୍ଯ୍ୟ' କବିତାରେ ଇଲିୟଟ ବି ତାଙ୍କ ପ୍ରତୀକାତ୍ମକ ଶୈଳୀରେ ବ୍ୟକ୍ତ କରିଛନ୍ତି - Wipe your hand across your mouth, and laugh;

The world revolve like ancient women
Gathering fuel in vacant lots.

ଅନ୍ ଦି ଫାର୍ମ କବିତା ସମାପ୍ତିରେ R.S Thomas ଲେଖିଛନ୍ତି

Her pale face was the lantern
By which they read in life's dark book
The shrill sentence: God is Love

ଥୋମାସଙ୍କ 'ଲାଣ୍ଟୋର୍ଣ୍ଣ' ପରି ହରିହର ମିଶ୍ରଙ୍କ 'ଆଲୋକର ହସ' ଏବଂ ନାହିଁ 'ସ୍ରିଲ୍' ପରି ଗୋଟିଏ ପ୍ରତୀକ! 'ଦିଷ୍ଟି' ଥାଏ / ରକ୍ତ ମାଂସ ଥାଏ କି ନଥାଏ/ ଥାଏ ତା'ର ମିଠାମିଠା ଅବୋଧ କଥା କେଇ ପଦ! 'ମିଠା ମିଠା' ମଧୁରେଣ ସମାପୟେତ୍', 'ଦିଷ୍ଟି'ର ନାଂଦନିକ ଯାତ୍ରା।



## ବାକ୍‌ଚିତ୍ର 'ଇନ୍ଦ୍ରାଣୀ': ସୋସିଆଲ ସିଂବଲିଜିମ୍‌ରେ ବଦଳିଥିବା ଏକ ମିଥ୍

'ସେ ଆସିଥିଲେ ଇନ୍ଦ୍ରାଣୀ ବାର୍ତ୍ତା ନେଇ', ସେ... ? ତୃତୀୟ ପୁରୁଷ ଏକ ବଚନ, ପ୍ରଥମ ପୁରୁଷ ଏକ ବଚନ ପାଖକୁ ? ନା, 'ସେ' ଓ 'ମୁଁ' ମଧ୍ୟରେ ନାହିଁ ଦ୍ୱୈତ ସତ୍ତା, ଯଦିଓ ଦୁଇଟି ଶବ୍ଦର ଦୃଶ୍ୟ ଯେମିତି ଭାଗବତ ! ଆଗକୁ ଦେଖିବାକୁ ମିଳିଛି କାବ୍ୟପୁରୁଷର ଅଦ୍ୱୈତ ରୂପ, 'ମୁଁ ଥିଲି ଇନ୍ଦ୍ରାଣୀର ବାର୍ତ୍ତାବହ', 'ଇନ୍ଦ୍ରାଣୀ' କାବ୍ୟ ଗ୍ରନ୍ଥର ସପ୍ତଦଶ ଚିତ୍ର ।

ଇନ୍ଦ୍ରାଣୀ କିଏ ? 'ଇନ୍ଦ୍ରାଣୀ' ଗୋଟିଏ ମିଥ୍ । ମିଥ୍ କ'ଣ ? Myths are public dreams they are vehicles of communication between the conscious and unconscious, just dreams are. ଡ଼. ଭଗବାନ ଜୟସିଂହ କହନ୍ତି, .. ନିଜସ୍ୱ ଗଭୀର ଅନ୍ତର୍ଦୃଷ୍ଟି ମାଧ୍ୟମରେ ପୌରାଣିକ କଥାବସ୍ତୁକୁ ଅନୁଭୂତିର ନିବିଡ଼ତା ଓ ପ୍ରକାଶ ରୀତିର ମୌଳିକତା ଦ୍ୱାରା ପ୍ରକାଶ କରି ମିଥ୍ ପ୍ରୟୋଗକୁ କରାଯାଏ ଜୀବନ୍ତ ଓ ନିବିଡ଼ । (ଝଙ୍କାର ୩୪ଶ ବର୍ଷ, ଷଷ୍ଠ ସଂଖ୍ୟା) । କବି ହରିହର ମିଶ୍ରଙ୍କ ଏକବିଂଶ ଶତକ ପ୍ରଥମ ଦଶଂଧିପର ପ୍ରଣୀତ 'ଇନ୍ଦ୍ରାଣୀ' ଏକ ନିବିଡ଼ ଓ ଜୀବନ୍ତ କାବ୍ୟ ।

ଇନ୍ଦ୍ରାଣୀ: ଏକ ଅସଂପୂର୍ଣ୍ଣ ଅନୁଭବ'ରେ କବି ପ୍ରକାଶ କରିଛନ୍ତି ଖେଦ, ଏକ ବ୍ୟକ୍ତି ସତ୍ତା ନୁହେଁ, ଏକ ସୌନ୍ଦର୍ଯ୍ୟ ଚେତନା! ପ୍ରେମମୟୀ ସତ୍ତା ଏବଂ ଏକ ମାତୃଚେତନା ମଧ୍ୟ! ପ୍ରାରମ୍ଭରେ ଦେବୀ ପୁରାଣରୁ ଇନ୍ଦ୍ରାଣୀ ଉଦ୍ଧୃତ ସେ ଏକ ପରମା ଶକ୍ତି, ସର୍ବ ଭୂତେଷୁ ଅବସ୍ଥିତାଃ। ଶ୍ରୀ ଶ୍ରୀ ଚଣ୍ଡୀରେ ମଧ୍ୟ ବର୍ଣ୍ଣିତ, ବିଦ୍ୟାଃ ସମସ୍ତା ସ୍ତବ ଦେବ! ଭେଦାଃ ସ୍ତ୍ରୀୟଃ ସମସ୍ତାଃ ସକଳାଃ ଜଗତ୍ସୁ। ତ୍ୱୟୈୟା ପୂରିତମମ୍ବୟୈତତ୍, କା ତେ ସ୍ତୁତିଃ ସ୍ତବ୍ୟପରା ପରୋକ୍ତିଃ। ଅର୍ଥାତ୍ - ହେ ଦେବୀ, ତୁମେ ନିଖିଳ ବିଦ୍ୟା ସ୍ୱରୂପିଣୀ, ଜଗତର ସମୁଦାୟ ସ୍ତ୍ରୀଗଣ ତୁମରି ହିଁ ଅଂଶଭୂତା, ତୁମେ ଜନନୀ ରୂପରେ ସାରା ସଂସାର ପରିବ୍ୟାପ୍ତ, ତୁମର କରିବି କି ପ୍ରକାର ସ୍ତବ, ତୁମେ ସ୍ତବର ଅତୀତ, ଅବକ୍ଷୟୀ ଏକ ମାତ୍ର ଶ୍ରେଷ୍ଠ ପଦାର୍ଥ! ତେଣୁ କବିଙ୍କ ଅଂସପୂର୍ଣ୍ଣ ଅନୁଭବ ଯଥାର୍ଥ ନିଶ୍ଚୟ। ପୁନଶ୍ଚ - ଇନ୍ଦ୍ରାଣୀ ସ୍ତ୍ରୀଜାତିର ପ୍ରତିନିଧି, ସ୍ତ୍ରୀ ଦେହରେ ଅବସ୍ଥାନ କରେ ଷୋହଳ କଳା। ସେମାନେ ହେଲେ - ଶ୍ରଦ୍ଧା, ପ୍ରୀତି, ରତି, ଧୃତି, କୀର୍ତ୍ତି, ମନୋଭବା, ବିମଳା, ମେଦିନୀ, ଘୋରା,ମଦନୋତ୍ପାଦିନୀ, ମଦା, ମୋହିନୀ, ବୀପାଳ, ବଶକରୀ, ରଂଜନୀ ଓ ମଦନା। ଶବ୍ଦପରି ନାରୀଟି ବି ମୋହିନୀ ଏବଂ ସିଏ ପ୍ରକୃତି।

ଯଥା ଇନ୍ଦ୍ରସ୍ୟ ଇନ୍ଦ୍ରାଣୀ, ଇନ୍ଦ୍ରାଣୀ ଶଚୀ ସ୍ୱର୍ଗର ରାଣୀ! ଅନନ୍ତ ଯୌବନା ଯୁବତୀ ରୂପସୀ; ସ୍ୱର୍ଗର ଶ୍ରେଷ୍ଠ ସୁନ୍ଦରୀ ଅପ୍ସରୀମାନେ ତା' କିଙ୍କରୀ। ଯୋଡ଼ା ଆଷାଢ଼ ପଡ଼ିଲେ ନବ କଳେବର ହୁଅନ୍ତି ଚତୁର୍ଦ୍ଧା ମୂର୍ତ୍ତି। ଶ୍ରୀଜଗନ୍ନାଥ ବଦଳନ୍ତି କିଂତୁ ଲକ୍ଷ୍ମୀ ବଦଳି ନଥାନ୍ତି। ଠିକ୍ ଏହିପରି ସ୍ୱର୍ଗ ରାଜ୍ୟର ଅଧିଶ୍ୱର ଇନ୍ଦ୍ର ବଦଳନ୍ତି କିଂତୁ ଶଚୀ ବଦଳନ୍ତି ନାହିଁ। ସେହି ଗୋଟିଏ ଶଚୀ ଇନ୍ଦ୍ରାଣୀ ହୋଇ ସ୍ୱର୍ଗ ଶାସନ କରିଥାନ୍ତି।

ଋଗ୍‌ବେଦ ଦଶମ ମଣ୍ଡଳ ଇନ୍ଦ୍ରାଣୀସୂକ୍ତ, ଋଷି ଶଚୀ ପୋଲୋମୀ ଏବଂ ଦେବତା ଶଚୀ ପୋଲମୀ, ଛନ୍ଦ ଅନୁଷ୍ଟୁପ, ଅଭିବ୍ୟକ୍ତ - ସମଜଂଗମିମା ଅହଂ ସପତ୍ନୀରଭିଭୂବରୀ। ଯଥାହମସ୍ୟ ବୀରସ୍ୟ ବିରାଜାନି ଜନସ୍ୱ ଚ। ଅର୍ଥାତ୍ - ମୁଁ ସପତ୍ନୀମାନଙ୍କ ଉପରେ ବିଜୟ ଲାଭକରି ସେମାନଙ୍କୁ ହରାଇଛି। ମୁଁ ନିଜ ପ୍ରଭାବରେ ବୀରଇନ୍ଦ୍ର ଉପରେ ବି କରୁଛି ଶାସନ ଏବଂ ସମସ୍ତ ବାନ୍ଧବଙ୍କୁ ମୋ ବଶରେ ରଖିଛି। ଏହା ପୂର୍ବ ମନ୍ତ୍ରରେ ବର୍ଣ୍ଣନା କରାଯାଇଛି, ଅଂସପନ୍ନା ସପନ୍ନଘ୍ନୀ ଜୟନ୍ତୀଭିଭୂବରୀ। ଆବୃକ୍ଷମନ୍ୟାସାଂ ବର୍ଚୋ ରାଧୋ ଧସ୍ଥେୟସାମିବ। ଅର୍ଥାତ୍ - ମୋ ଶତ୍ରୁ ବିଜୟ ପ୍ରାପ୍ତ କରେ ନାହିଁ। ମୁଁ ତାକୁ ହଟାଇ ଦେବାରେ ସମର୍ଥ। ମୋ ଶତ୍ରୁ ଜୀବିତ ରହିନଥାଏ, କାରଣ ମୁଁ ତାକୁ ପରାସ୍ତ କରିବାରେ ସମର୍ଥ। ମୋ ଶତ୍ରୁ ଜୀବିତ ରହେ ନାହିଁ, କାରଣ ତାକୁ ସମ୍ମୁଖକୁ ଆସିବା ମାତ୍ରେ ମାରି ଦେଇଥାଏ। ଯେମିତି ନିର୍ବଳ ପୁରୁଷ ଧନ ଅନ୍ୟ ବ୍ୟକ୍ତି ଛଡ଼େଇ ନିଏ, ସେମିତି ମୁଁ ଅନ୍ୟ

ସ୍ତ୍ରୀମାନଙ୍କ ଦର୍ପ ଚୂର୍ଣ୍ଣିତ କରିପକାଏ ।

ଏହାର ଉନ୍ମେଷ ବୟାନ ଶଚୀ ପୋଲମୀ ପ୍ରକାଶ କରିଛନ୍ତି, ସୂର୍ଯ୍ୟର ଉଦୟ ହେବା ହିଁ ମୋ ଭାଗ୍ୟର ଉଦୟ ହେବା । ମୋ ସମସ୍ତ ସପତ୍ନୀ ମୋ ଦ୍ୱାରା ପରାଭୂତ ହୋଇସାରିଛନ୍ତି । ମୁଁ ନିଜ ପତି ଦେବତାଙ୍କୁ ନିଜ ବଶ କରିସାରିଛି । ଦଶମ ମଣ୍ଡଳର ଭିନ୍ନ ଗୋଟିଏ ସୂକ୍ତ, ଋଷି ବୃଷାକପିରେନ୍ଦ୍ର ଇନ୍ଦ୍ରାଣୀନ୍ଦ୍ରଶ୍ଚ । 'ପଂକ୍ତି' ଛଂଦରେ ଅଭିବ୍ୟକ୍ତ, ନ ମତ୍ ସ୍ତ୍ରୀ ସୁଭସଉରା ନ ସୁୟାଶୁତରା ଭୁବତ୍ । ନ ମତ ପ୍ରତିଚ୍ୟବୀୟସୀ ନ ସକ୍‌ଥ୍ୟୁଦ୍ୟମୀୟସୀ ବିଶ୍ୱ ସ୍ମାଦିନ୍ଦ୍ର ଉତ୍ତରଃ । ଅର୍ଥାତ୍ - କୌଣସି ଅନ୍ୟ ନାରୀ ଅଧିକ ସୌଭାଗ୍ୟବତୀ ଓ ପୁତ୍ରବତୀ ନାହିଁ ମୋପରି ! ମୋ ଠୁ ଅଧିକ ଅନ୍ୟ କେହି ସ୍ତ୍ରୀ ନିଜ ସ୍ୱାମୀଙ୍କୁ ସୁଖ ଦେବାରେ ହେବ ନାହିଁ ସମର୍ଥ । ସେହି ସୂକ୍ତର ଏକାଦଶ ମନ୍ତ୍ରରେ କୁହାଯାଇଛି, ଇନ୍ଦ୍ରାଣୀମାସୁ ନାରିଷୁ ସୁଭଗାମହମଶ୍ରବମ୍ । ନହ୍ୟସ୍ୟା ଅପରଂ ଚନ ଜରସା ମରତେ ପତିବିଶ୍ୱସ୍ମାଦିନ୍ଦ୍ର ଉତ୍ତରଃ । ଅର୍ଥାତ୍ - ଇନ୍ଦ୍ରାଣୀଙ୍କୁ ମୁଁ ଅଧିକ ସୌଭାଗ୍ୟବତୀ ଭାବିଛି, କାରଣ - ଏହାର ପତି ଅନ୍ୟ ମରଣଶୀଳ ପୁରୁଷପରି ପ୍ରାପ୍ତ ହୁଏ ନାହିଁ ମୃତ୍ୟୁ । ଇନ୍ଦ୍ର ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ।

ଋଗ୍‌ବେଦ ଇନ୍ଦ୍ରାଣୀର ଜନ୍ମପୀଠ । ଋଗ୍‌ବେଦ ଇନ୍ଦ୍ରାଣୀର ଯୌବନ ଓ ଜୀବନବେଦୀ । ସୋମ ଓ ଐଶ୍ୱର୍ଯ୍ୟରୁ ଯେଉଁ ଶକ୍ତି ପୁଂଜି ହୁଏ ଉଦ୍‌ଭବ ତାହା ଇନ୍ଦ୍ରାଣୀ ମୂର୍ତ୍ତି କଳ୍ପନାର ସମ୍ପଦ । ଇନ୍ଦ୍ରାଣୀ ତିରିଶଟି ଅନୁଭବର ଅବତାର କବିତାର ଆଙ୍ଗିକରେ ସର୍ଜନା କରିଛି ତାହାର ରୂପଲୋକ । ଗୋଟିଏ Illustrious language ରେ କବିତାର ପରୀ ତା' ଡ଼େଣା ଖୋଲି ଶବ୍ଦର ଆକାଶକୁ ଉଠି ଆସିଛି, the best language will be suited to best thought, 'କବାଟ ବଂଦ ଥିବା ସତ୍ତ୍ୱେ / ମୁଁ ଭିତରକୁ ଗଲି / ମୋ ଆକୃତିର ଛାଇଟିଏ ଥିଲା / ଶରୀର ନଥିଲା ।' ଏଇଟା ଦ୍ୱୈତର ଅସ୍ତିତ୍ୱ ? ଇଲିୟଟ ଲେଖିଛନ୍ତି, Between the motion / and the act / falls the shadow (The Hollow Man)! ଛାଇଟିଏ 'ମୋ' ଆକୃତିର ? 'ମୋ'ର ମାହାତ୍ମ୍ୟ ଓ ମୂଲ୍ୟ ରହିଛି, ପୁଣି ନାହିଁ, 'ପୁଅକୁ ଗେଲ କରିବାକୁ ହାତ ବଢ଼େଇଲି ଯେ / ତମ ନିଦମଣି ସବୁ ସଂସାରକୁ ଯାବୁଡ଼ି / ମତେ ମୁଣ୍ଡିଆ ମାରିବାକୁ ଭୁଲି ଗଲେ !'

ଆଗକୁ ଗୋଟିଏ ଚରିତ୍ରର ଚଉରାକୁ କରାଯାଇଛି ବର୍ଣ୍ଣନା, ଯେଉଁଠି ନାହିଁ କିଛି ଆଚ୍ଛାଦନର ଛଳନା ! ଗୋଟିଏ ପାଖୁଡ଼ାର ଉପତ୍ୟକାକୁ କେହିଜଣେ କବି ଆସୁଥିଲେ ଲେଖିବାକୁ ସୁଖ କବିତା, ଆଉ ଆସୁନାହାନ୍ତି, ଯେଉଁମାନେ ଆସୁଛନ୍ତି ରକ୍ତରେ ଗୋଳିଆ କରୁଛନ୍ତି ପାଣି ! ଦୂଷିତା ସିଏ ହୋଇ ଯାଉଛି ! ବ୍ୟଂଜନା

ଚାରୁତାରେ ଦୃଶ୍ୟର ଚଉଡ଼ାକୁ ହୁଏ ଦେଖି; 'ମୁଁ ଦି'ଟା ପାହାଡ଼ ମଝିରେ / ତାଙ୍କ ନିଷିଦ୍ଧ ଉପତ୍ୟକା ଘୂରି ଘୂରି ଆସିଲି ! / ଉପତ୍ୟକା କହିଲା, / ଆଜିକାଲି ସେ କବିତା ଲେଖିବାକୁ / ଏଠିକି ଆସୁନାହାନ୍ତି/ଆସୁଛନ୍ତି ଯେଉଁମାନେ / ରକ୍ତରେ ଗୋଳିଆ କରୁଛନ୍ତି ପାଣି !' ସ୍ୱର୍ଗ ଭୋଗ ପୁରୀ; ରମ୍ଭା, ଉର୍ବଶୀ ଓ ମେନକାଙ୍କପରି ଭୋଗ ପାଇଁ ଭର୍ତ୍ତି ବାରନାରୀ ! ଏମିତି ଗୋଟିଏ ଭୋଗବାଦୀ ଚିତ୍ର ଟପି ଯିବାପରେ ଏକ ନୂଆ ବିଭୂତିରେ କବିତା ଉତ୍କୀର୍ଣ୍ଣ, 'ଏବେ ତମେ ନିରାପଦ ଅଛ / ନୀଳଚକ୍ର ଛାଇ ତଳେ / ଆଗଭଳି ବୁଲିପାରୁ ନାହିଁ / ଉପର ମୁଣ୍ଡରୁ ତଳ ଦେଶ / .ତମ ପ୍ରିୟ ମହାନୀଦର ।' ଦୁଇଟି ପ୍ରତୀକ, ଗୋଟିଏ 'ତମେ' ଏବଂ ଅନ୍ୟଟି 'ମହାନଦୀ', 'ତମ ପ୍ରିୟ ମହାନଦୀ', ଦୁଇଟିକୁ ବୁଝିଗଲେ ଅଭିବ୍ୟକ୍ତି ଓ ଆବେଗର ଆକର୍ଷଣ ମାପି ହୋଇଯାନ୍ତି । ନଦୀ ଓ ନାରୀ ଏକ ପ୍ରକାର ସାଂସ୍କୃତିକ ଚିତ୍ର । ସେହିପରି 'ଦି'ଟା ପାହାଡ଼ ହୁଏତ ଦୁଇଟି ବକ୍ଷୋଜ କିଂବା ଜଘନ ଦୁଇଟି ଏବଂ 'ଉପତ୍ୟକା' ହୁଏତ ଗୋଟିଏ କୋଳ ! କବିତାରେ ଭାବନାମାନ ପ୍ରଥା ସମ୍ମତ ! ଗୋଟିଏ ଆକର୍ଷଣୀୟ ବାଗରେ ସୁସଙ୍ଗତ ହୋଇ ଘଟିଛି ରଚନା ପ୍ରକ୍ରିୟା । ଇଲିୟଟଙ୍କ 'ପ୍ରୁଫ୍ରକ'ର ବୁଢ଼ା ହୋଇଯିବା ପ୍ରତୀକ ପରି 'ତମେ'ର ଅସ୍ତିତ୍ୱ; ଅଥଚ ତା' ଭିତରୁ ଲିଭି ନାହିଁ ରୋମାଣ୍ଟିକ ଦୀପ୍ତି ! ଦେଖା ଯାଇପାରେ ଏଇ ପଂକ୍ତି କେତୋଟି-

ସମୁଦ୍ରର ଗୀତ ଶୁଣି ଶୋଇ ପଡୁଛ
ବିଦେଶରେ ଥିବା ତୁମ ପୁଅ ବୋହୂଙ୍କ ପଲଙ୍କରେ
ତମ ନିଦ ରାଣୀଙ୍କୁ ନେଇ
ତା' ଗହଳ ପାଶରେ ତୁମ ସ୍ୱପ୍ନର ଗୋଲାପଟି ରକ୍ତିମ ଦିଶୁଛି ।

ଆଧୁନିକ ସମୟର ଚିକ୍‌କଣ ପରମ ସୁଖ ଏଠି ହୋଇଚି ଏକାଠି ? ନା' ବଂଚୁଥିବା ଜୀବନର କ୍ରିଟିସିଜିମ୍ ଏହା, ଚିହ୍ନି ନ ହେଲେ ବି ଚିହ୍ନି ହୋଇଛି ମଣିଷର ଅନନ୍ୟୋପାୟ ସ୍ଥିତି । ଜୀବନରେ ପରିବ୍ୟାପ୍ତ ଗୋଟିଏ ନଭେଲ୍ ପରିସ୍ଥିତି ଯଥାଯଥ ଶବ୍ଦରେ ମାପି ହୋଇଯାଇଚି । ଏହି କବିତା ଦ୍ୱିତୀୟ ପର୍ବରେ ଆବିର୍ଭୂତ ହୁଅନ୍ତି ଇନ୍ଦ୍ରାଣୀ, 'ହସ୍‌ପିଟାଲର ବେଡ଼ରେ ଦେଖିଛି / ତମ ଚିତ୍ରନାରୀ ଇନ୍ଦ୍ରାଣୀର ହସ ।/ ହସରେ ତା'ର ପୂର୍ଣ୍ଣିମା... / ସେହି ହସରେ ଝଲମଲ ହୁଏ ସିଂହାସନ / ସେହି ହସର ପ୍ରଭା ମଣ୍ଡଳରେ ଦିଶନ୍ତି ଇନ୍ଦ୍ରାଣୀ ।'

ବିବିଧ ଭିୟୁଜୁଆଲ୍ ଇମାଜେରୀରେ ଦାନ୍ତେଙ୍କ ପରି ଏକ କଂକ୍ରିଟ ଓ ରିଅଲ ସ୍ୱର୍ଗ କବିତାର ଆଙ୍ଗିକରେ ଉଠାଇ ଆଣିନାହାନ୍ତି କବି ! ନିଷିଦ୍ଧ ବେଦନା କାହାର କଳା ଚରିତ୍ରରେ କରୁଛନ୍ତି ବିତରିତ ! 'ତମ ଛାତି ପକେଟରେ / ତାଙ୍କ ଛବି ରଖି / ଚିରିବ ଚିରିବ ହୋଇ ଏଠି ନିତି ଦେବସଭାରେ ପରୀକ୍ଷା ଦେଉଛନ୍ତି / ପୁରୁଷମାନେ

/ ଦେବୀ ହସୁଛନ୍ତି ହାତରେ ପାରିଜାତଟିଏ ଧରି । / ବାଁ ହାତରେ ଚରିତ୍ର ପଂଜିକା ଓଲଟେଇ ଯାଆନ୍ତି ପୁରୁଷମାନଙ୍କର !'

ପୁରୁଷ ଚରିତ୍ର ଓ ନାରୀ ଚରିତ୍ରର ଦ୍ୱନ୍ଦ୍ୱରେ ଚମକିଛି କବିତା । ଆଗକୁ ରହିଛି, 'ସେ ହିଁ ଶାଶ୍ୱତୀ ସତୀ ସରଗର ସଚୀ । ସେ ଯେ ଇନ୍ଦ୍ରାଣୀ ନିତ୍ୟ ପୁଷ୍ପବତୀ !' କବିତାରେ ଅର୍ଥବଂଦୀ ଶବ୍ଦର ମହତ୍ୱ ନଥାଏ । କବିତା ରୂପ କଥା କହେ । 'ପୁଷ୍ପବତୀ' ରଜସ୍ୱଳା ନୁହେଁ, ପୁଣି ନିତ୍ୟ ପୁଷ୍ପବତୀ ଭାବ ସାର୍ଥକ କରେ ସ୍ୱର୍ଗରେ ଦୈହିକ କାମ ବା ସହବାସ ନଥାଏ । ତେଣୁ ସେ ନିତ୍ୟପୁଷ୍ପବତୀ, ଯେଣୁ ପୁଷ୍ପବତୀ ସହିତ ଗ୍ରାହସ୍ଥ୍ୟ ଧର୍ମ ଅବିଧେୟ ।

ଅପରାହ୍ନ କୁଆରପରି ଏହି କବିତାର ତୃତୀୟ ପର୍ବ; 'ବାଟ ଛାଡ଼, ବୟସକୁ ତାଙ୍କର', ସେ ଇନ୍ଦ୍ରାଣୀ, କେତେ ଇନ୍ଦ୍ର ଗଲେଣି ସେ ସେମିତି ଅଛନ୍ତି ! ଯେମିତି ବାଂଗଲାଦେଶୀ ଲେଖିକା ତସଲିମା ନାସ୍ରିନ୍‌ଙ୍କ ରଚିତ ଜୀବନୀ - ଉପନ୍ୟାସ 'ଦ୍ୱିଖଣ୍ଡିତ'ର କାବ୍ୟରୂପ ! ପ୍ରତୀକଗୁଡ଼ିକ 'ଦ୍ୱିଖଣ୍ଡିତ' ଦିଗକୁ ଅଙ୍ଗୁଳି କରନ୍ତି ସୂଚିତ ? 'ଅପାରଗ କାପୁରୁଷ', 'ଇନ୍ଦ୍ରାଣୀଙ୍କ ଅସନ୍ତୋଷ', 'ଇନ୍ଦ୍ରଙ୍କୁ ମନା ନାହିଁ ସୋମରସ' ଏବଂ 'ସ୍ୱତନ୍ତ୍ର ସ୍ଥିତି ଏ ନାରୀର / ଖୁସୀ କରିବାକୁ' ପାଠକୀୟ ଧାରଣାକୁ ସଂଦିଗ୍ଧତାରେ ଚହଲାଇ ଥାଏ ! ଚମକାଇ ଥାଏ ଚେତନାକୁ ଓ ଅର୍ଥାନ୍ତର ଆଚରଣକୁ । କଳ୍ପନା, ସମାଜ ଓ ସ୍ୱପ୍ନ ଏକତ୍ର ମନ୍ଥି ହୋଇ ନବନୀତପରି ଚିକ୍‌କଣ ଆଙ୍ଗିକଟିଏ ଫର୍ଦ୍ଦର ପାତ୍ରରେ ବଢ଼ାଯାଇଛନ୍ତି । ଋଗ୍‌ବେଦରେ ଋଷି ପ୍ରଗାଥଃ ପଚାରିଛନ୍ତି, କ୍ୱ ସ୍ୟ ବୃଷଭୋ ଯୁବା ତୁୟିଗ୍ରୀବୋ ଅନାନତଃ, ଅର୍ଥାତ୍ ସେହି ସଦା ତରୁଣ, ବିଶାଳ ସ୍କନ୍ଧ ବୃଷ୍ଟିଦାତା ଇନ୍ଦ୍ର ଅଛନ୍ତି କେଉଁଠି ?

ଅଷ୍ଟମ ମଣ୍ଡଳ (୩୪ ସୂକ୍ତ) ଏହାର ଉତ୍ତର ପ୍ରଦାନ କରାଯାଇଛି, ଦିବୋ ଅମୁଷ୍ୟ ଶାସତୋ ଦିବଂ ଯଯ ଦିବାବସେ, ଅର୍ଥାତ୍ - ଇନ୍ଦ୍ର ସ୍ୱର୍ଗର ଶାସନ କରନ୍ତି । ହେ ଦୀପ୍ତ ହବିବାଲା ଇନ୍ଦ୍ର, ତୁମେ ସ୍ୱର୍ଗ ଲୋକକୁ  କର ପ୍ରସ୍ଥାନ । ପୁନଶ୍ଚ ସେ ଏତେ ସମ୍ପଦବନ୍ତ ଯେ ଆରୋହଣ କରନ୍ତି ସୁବର୍ଣ୍ଣ ରଥ ! ରଥୋ ହିରଣ୍ମୟ । (୮ମ ମଣ୍ଡଳ, ଅଧ୍ୟାୟ ୫, ସୂକ୍ତ ୩୩, ମଂତ୍ର ୪) । ସିଏ ଶଚୀ ପତି ବା ଇନ୍ଦ୍ରାଣୀଙ୍କ ସ୍ୱାମୀ, ଶଚୀପତେ ଭଦ୍ରା ଇନ୍ଦ୍ରସ୍ୟ ରାତୟଃ ।

'ତାଙ୍କ ଛବି ଚିରିବ ବୋଲି ଚିରିପାରୁନାହିଁ' କାବ୍ୟ ନାୟକ; ଏଣେ ନାୟିକା - ଇନ୍ଦ୍ରାଣୀଙ୍କ ଅସନ୍ତୋଷ / ପୁରୁଣାକୁ ଛାଡ଼ି ନୂଆ ଥୋଇବାର / ଅଭିଳାଷ ଓ ନିର୍ମମ ଆଦେଶ ! ପୁନଶ୍ଚ - ଖୁସି କରିବାକୁ ଯାକୁ / ପଉରୁଷ ବଳି ପଡ଼ିଥାନ୍ତି ।' ବେଦରେ ଇନ୍ଦ୍ରଙ୍କ ଚରିତ୍ରର ଦୁଇଟି ପାର୍ଶ୍ୱ ହୁଏ ଦୃଷ୍ଟିଗୋଚର ଯେମିତି ସୁଖ-ଦୁଃଖ ! ମାତ୍ର ଦୀପ ତଳେ ଥାଏ ଅନ୍ଧକାର, ଏହା ବସ୍ତୁବାଦ ।

ତ୍ୱଂ ହି ସତ୍ୟୋ ମଘବନ, ତୁମେ ସତ୍ୟ ରୂପ । ଇନ୍ଦ୍ର ମନ୍ତ୍ର ଦ୍ୱାରା ହୁଅନ୍ତି ପ୍ରକଟ (୮ମ ମଣ୍ଡଳ, ୧୦ମ ଅଧ୍ୟା, ୯୬ ସୂକ୍ତ, ୧୧ଶ ମନ୍ତ୍ର) । 'ମୋ ଆକୃତିର ଛାଇଟିଏ ଥିଲା / ଶରୀର ନ ଥିଲା ! ପୁଣି - ମିତ ମେଧା ଭିଗୁତିଭିଃ, ତୁମେ ଆମ ହିତକାରୀ ପାଖ ବନ୍ଧୁ ! ତମର ପରିବାର କାକୁସ୍ଥଭର ହୋଇ ଚାହିଁ ରହିଲେ ମତେ ମୁଣ୍ଡିଆ ମାରିବାକୁ ଭୁଲିଗଲେ ! ଇନ୍ଦ୍ର ଅଗ୍ନିରହିତ, ନିର୍ଧନ ଓ ଅବ୍ରହ୍ମଚାରୀ ନୁହନ୍ତି, ନ ପାପାସୋ ମନାମହେ ନାରାୟାସୋ ନ ଜଲ୍‌ହବଃ ! ଅର୍ଥାତ୍ - ଆମେ ଇନ୍ଦ୍ରଙ୍କୁ ଅଗ୍ନିରହିତ, ନିର୍ଧନ ଓ ଅବ୍ରହ୍ମଚାରୀ ମାନୁ ନାହୁଁ ! ମହାମହିମ୍ ବ୍ୟକ୍ତିତ୍ୱ ତାଙ୍କ ସକାରାନ୍ତକ ରୂପ ଏବଂ ନିରାକାରାନ୍ତକ ସିଏ ଅରୂପ, ସତ୍ୟ ଏକମାତ୍ର ! ତପ ଲଭ୍ୟ ଦ୍ୟୁତି ଓ ଆନଂଦ । କବିଙ୍କ ପ୍ରତୀକ ଓ ବ୍ୟଂଜନାରେ, 'ଇନ୍ଦ୍ରଙ୍କୁ ମନା ନାହିଁ ସୋମରସ ଅପ୍ସରା ଓ ରମ୍ଭା, ଉର୍ବଶୀର ଶୋଭା ସକଳ ନିରାପତା, ଐଶ୍ୱର୍ଯ୍ୟର ଭୋଗ ମନା ନାହିଁ, ଶାସକକୁ ଅସ୍ତ୍ରଶସ୍ତ୍ର / ଉଚ୍ଚୈଶ୍ରବା ଅବା ଐରାବତ !' ଏଇ ଇନ୍ଦ୍ର ଏବଂ ଇନ୍ଦ୍ରାଣୀ ଏହାଙ୍କ ରୂପସୀ ପତ୍ନୀ, ତାଙ୍କ ନାମ ଶଚୀ ! ଆଧୁନିକ ସବୁ ସ୍ତ୍ରୀ ଜଣେଜଣେ ଇନ୍ଦ୍ରାଣୀ, ଅନନ୍ୟୋପାୟା ହେଲେ ବି ଚଂଚଳ ମତୀ । କବି ବ୍ୟକ୍ତ କରିଛନ୍ତି, ଧନ୍ୟ ସଚୀ ମହାମାୟୀ / ହସୁଥାଅ ଚିରକାଳ, ହେଜୁଥାଅ ଐନ୍ଦୀ ସୁଖ/ ପତ୍ନୀତ୍ୱ ପ୍ରଲୋଭନ... ! ନାରୀର ଦ୍ୱୈତ ଚିତ୍ର ଏହା, ଯେଣୁ ସିଏ 'ଚିତ୍ରନାରୀ' ! ଚିତ୍ରପରି ନାରୀ ? ଋଗ୍‌ବେଦ ଅଷ୍ଟମ ମଣ୍ଡଳରେ ଇନ୍ଦ୍ରଙ୍କ କଥନ ତଥା ପରାମର୍ଶ -

ଇନ୍ଦ୍ରଶ୍ଚିଦ୍ ଘା ତଦ୍‌ବ୍ରବୀତ୍ ସ୍ତ୍ରୀୟା ଅଶାସ୍ୟଂ ମନଃ ।

ଅତୋ ଅହ କ୍ରତୁଂ ରଘୁମ୍ ।

ଅଧଃ ପଶ୍ୟସ୍ୱ ମୋପରି ସଂତରା ପାଦକୌ ହର

ମା ତେ କଶପ୍ଲକୀ ଦୃଶ୍ୟନ୍ ତସ୍ତ୍ରୀ ହି ବ୍ରହ୍ମା ବଭୂବିଥ ।

ଇନ୍ଦ୍ରଙ୍କ କଥନ ଥିଲା ଯେ ସ୍ତ୍ରୀ ମନ ଉପରେ ନିୟନ୍ତ୍ରଣ କରିବା ଦୁଷ୍କର

କାର୍ଯ୍ୟ ଅଟେ, କାରଣ - ସ୍ତ୍ରୀ ଚଞ୍ଚଳ ମନା ହୋଇଥାଏ । ଇନ୍ଦ୍ର କହିଲେ, ହେ ପ୍ରାୟୋଗୀ ! ତୁମେ ସ୍ତୋତ୍ରା ହେଲେ ବି ସ୍ତ୍ରୀ । ଅତଃ ନିଜ ପାଦମାନଙ୍କୁ ମିଳାଇ ରଖ, ତଳକୁ ମୁଖ କରି ଚାଲ । ତୁମର ଶ୍ରେଷ୍ଠ ପ୍ରାନ୍ତ ଓ କଟି ଠାରୁ ନିମ୍ନ ଭାଗକୁ କେହି ଦେଖି ନପାରୁ, ଏହିପରି ପରିଧାନ କର ବସ୍ତ୍ର । ସଭ୍ୟ ଆଚରଣର ଦୃଷ୍ଟି ସାମାଜିକ ଶୃଙ୍ଖଳା ପାଇଁ ଇନ୍ଦ୍ର କରିଛନ୍ତି ବ୍ୟକ୍ତ ।

ଇଲିୟଟଙ୍କ ଲଭ୍ ସଙ୍ଗ୍... ରେ ନାୟକ ପ୍ରୁଫ୍ରକ । ସେ ପ୍ରତ୍ୟକ୍ଷ ଭାବେ ତା' ସ୍ଥିତି ଓ ଅସ୍ତିତ୍ୱକୁ କରିଛି ଉଚ୍ଚାରିତ । ହରିହର ମିଶ୍ରଙ୍କ ନାୟିକା ଇନ୍ଦ୍ରାଣୀ ଏବଂ ସିଏ ଇନ୍ଦ୍ରଙ୍କ ପତ୍ନୀ । ଇନ୍ଦ୍ରାଣୀ କି ଇନ୍ଦ୍ର କେହି କବିତା ବୟାନ କରିନାହାନ୍ତି ! କବିତା

ମିଥ୍‌ର ସମକାଳ କରୁଛି ବୟାନ ଭିନ୍ନ ଜଣେ କାବ୍ୟ-ନାୟକ ! କାବ୍ୟ ନାୟକ 'ମୁଁ' ହେଲେ ସିଏ 'ମୋ ଆକୃତିର ଛାଇ' ! ଯିଏ ଅନ୍ତରଙ୍ଗ ଭାବେ ଇନ୍ଦ୍ରାଣୀର ପ୍ରାଇଭେଟ ଜୀବନ ସହିତ ପରିଚିତ !

ଏଠାରେ ମିଥ୍‌କୁ ମନ୍ଥନ କରିବା ସହିତ ସମକାଳିକତାକୁ ପ୍ରାଧାନ୍ୟ ଦେଇ ଆଜିର କବିତାରେ ଗୋଟିଏ ନୂଆ ରୂପ ଓ ସ୍ୱରର ପ୍ରଚଳନ କରାଇଛନ୍ତି କବି ଶ୍ରୀଯୁକ୍ତ ମିଶ୍ର । ରମାକାନ୍ତ ରଥଙ୍କ 'ଶ୍ରୀରାଧା'ରେ ନାହିଁ ମିଥ୍‌ର ମନ୍ଥନ । ମନୋସ୍ତତ୍ୱର ଫେଣ ଭିତରେ ଶ୍ରୀରାଧାଙ୍କ ଆଧୁନିକତା ଆକର୍ଷକ । କିଂତୁ ଇନ୍ଦ୍ରାଣୀ ସମକାଳିକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଶାସ୍ତ୍ରୀୟ ଲଳିତ ଚିତ୍ର । ତା' ବଂଚିବା ଶୈଳୀରେ ରହିଛି ବହୁ ଭାଙ୍ଗ ଯାତନା ଓ ଯୌନ ପୀଡ଼ା । ଯଦିଓ ଏ ସମସ୍ତକୁ ଆଚ୍ଛାଦିତ କରିଛି କାବ୍ୟିକ ସୁଷମା ।

କବିତାରେ ପ୍ରେମିକା ସତ୍ତାର ନାମ ଇନ୍ଦ୍ରାଣୀ, ପୁଣି ସେହି ସତ୍ତାର ଗୋଟିଏ ଅଲଗାଚିତ୍ର ଧଳା କୋଇଲି ବା ଏହାର ଏକ ଭିନ୍ନ ପାର୍ଶ୍ୱ । ଜୀବନ ସତ୍ତାର କରୁଣ ଓ ସୌନ୍ଦର୍ଯ୍ୟମୟ ପେଣ୍ଟିଂ । ଅସ୍ତିତ୍ୱବାଦ ସହିତ ଉଦ୍‌ଭଟବାଦକୁ ମିଶାଇ ଦିଆଯାଇଛି !

କବିତାରେ ନାୟିକାର ଉପସ୍ଥିତି ପ୍ରତ୍ୟକ୍ଷ ନୁହେଁ । ପ୍ରେମିକାର ଉପସ୍ଥିତି ସୂଚନାରେ ହୋଇଥାଏ ପ୍ରତୀକିତ । ଇଲିୟଟ ସୂଚନାଟିକୁ ଚିତ୍ର କରିଛନ୍ତି, Let us go then, you and I/ when the evening is spread out against the sky! ଏଠାରେ Let us go then, you and I/ when the evening is spread out against the sky! ଏଠାରେ you ଶବ୍ଦଟି ଯଥେଷ୍ଟ ! ଆଗକୁ ରହିଛି, I have known the arms already, known them all/arms that are braceleted and white and bare, ବ୍ରେସଲେଟ୍ ପିନ୍ଧି ସେ ଶ୍ୱେତ ଓ ନଗ୍ନ ବାହୁମାନଙ୍କୁ କାବ୍ୟ ନାୟକ ଜାଣିଛି ! ନୀଳାଚଳରେ ପାଖରେ କେହି ଜଣେ ଭାଗବତ ପଢ଼ିବାବେଳେ ଅଚାନକ ଦେଖାଦେଇଛି 'ଧଳାକୋଇଲି' ଏକ ସାତ୍ତ୍ୱିକ ରଙ୍ଗର ପକ୍ଷୀ ! ଲାଜାରସ୍‌ପରି ଗୋଟିଏ ମୃତ ପରିବେଷ୍ଟନି ଭିତରୁ ସିଏ ଜୀବିତ ଓ ବାହାରି ଆସୁଛି ! ଯେମିତି ସବୁଜ କବିଙ୍କ ସଫେଦ୍ ପରୀ ? ଇଲିୟଟ୍ ଭାବିଛନ୍ତି, ତାକୁ ସତ୍ୟ ବୋଲି କେମିତି ମୁଁ ଗ୍ରହଣ କରିବି ? ଏବଂ କେମିତି ମୁଁ ଆରମ୍ଭ କରିବା ଉଚିତ ?

ହରିହର ମିଶ୍ର ପ୍ରଶ୍ନ କି ସଂଦେହ ରଖି ନାହାନ୍ତି । ସିଏ ଅନୁଭବ କରିଛନ୍ତି Mermaid ଙ୍କ ଜଣକ ପାଇଁ ଅନ୍ୟ ଜଣକ ଗୀତ, ଯେମିତି ତାଙ୍କ ନିଜ ପାଇଁ । ସହସ୍ର ରାତ୍ରୀର ଶୁଭ୍ରତାକୁ ସଜାଇଛି ଇନ୍ଦ୍ରାଣୀ ! ସିଏ ମିଛ ଜହ୍ନ, କିଂତୁ ମିଠା କୋଇଲି । ନିସର୍ଗ ହିଁ ସ୍ୱର୍ଗ । ମାତ୍ର ବ୍ୟକ୍ତିଗତ ଜୀବନରେ ସିଏ ବ୍ୟକ୍ତିତ୍ୱଟିଏ 'ତମେ' ଏବଂ

ତା'ର ପଢ଼ାବହି ଗଣିତ, ଇତିହାସ, ଭୂଗୋଳ ଓ ବିଜ୍ଞାନ ସହିତ କାବ୍ୟ ନାୟକ ପରିଚିତ । ଇଲିୟଟ ନାୟକ ଯେମିତି ସ୍ୱୀକାର କରିଛି, And I have known the eyes already, known them all! କେବଳ ପରିଚିତ ନୁହେଁ, ପ୍ରବଳ ସଂପର୍କର ସ୍ମୃତି, ...the novels, after the tea cups, after the skirts that trail, 'ସ୍କାର୍ଟ' ବାହ୍ୟ ପୋଷାକକୁ ସୂଚିତ କରୁଥିବାବେଳେ ପୋଷାକ ତଳ ଶୁଭ୍ର ଦେହକୁ ମଧ୍ୟ ! ଇଲିୟଟ୍‌ଙ୍କ କାବ୍ୟ ନାୟକ କଫି ଚାମୁଚରେ ତା' ଆୟୁଷକୁ ମାପୁଥିଲା, ଅବଶିଷ୍ଟ କେଇ ଚାମୁଚ ଅଛି ଆଉ ! ତା' ସ୍ୱରର ଭୂମିରେ ଫଳଟିଏପରି ଖସି ପଡୁଥିଲା ମୃତ୍ୟୁ ! ଧଳା କୋଇଲିକୁ ଦେଖିବା ମାତ୍ରେ ହରିହର ମିଶ୍ରଙ୍କ ସାଲାଇନ୍‌ରେ ଥିବା ମୁମୂର୍ଷୁ ଯେମିତି ଦଣ୍ଡଟିଏ ପାଇଁ ଜୀବନର ଠିକଣା ପାଇଗଲା !

'ନୀଳ ଦୁର୍ବାଦଳ ଶ୍ୟାମ', ବିରାଟ ପୁରୁଷ ? ସାମ୍ନାରେ 'ତମେ ହସୁଥିଲେ' ! ପାଖରେ ସମୟ, ଆଷାଢ଼ର ପ୍ରଥମ ଦିନ ତ କେତେବେଳେ ଶରତ ପୂର୍ଣ୍ଣିମା ! ଯେଉଁଠୁ ଇନ୍ଦ୍ରାଣୀ ଆରମ୍ଭ କରିଥିଲା ତା' ହସିବା ! ଗୋଟିଏ ଅନୁଭବ ଓ ନବ ଜୀବନ୍ୟାସର ଠିକଣା, ଇଲିୟଟଙ୍କ ବ୍ୟବହୃତ ମିଥ୍ 'I am lazarus, come from the dead'! ମଳୟ ଓ ମହୁର ମୂର୍ଚ୍ଛନା ଅଟକାଇ ଦେଇଛି ପ୍ରାଣ ପୁରୁଷକୁ ମିଠା ସଂଜର ମାଛି ଅନ୍ଧକାରରେ ଦଣ୍ଡଟିଏ ? ବସନ୍ତ ବୟସ କୋକିଳ ଯୌବନର ପ୍ରତୀକ !

ମିଥ୍ ଯୌଥ ଅବଚେତନରୁ ସୃଷ୍ଟି, ମିଥ୍ ବସ୍ତୁସତ୍ତା ନେପଥ୍ୟରେ ଥିବା ସାର୍ବଜନୀନ ଭାବ ସତ୍ତାକୁ କରାଏ ଉଦ୍‌ଘାଟନ । ୧- ମିଥ୍ ପରମ୍ପରାର କରେ ସ୍ତୁତିଗାନ ଏବଂ ୨- ପୌରାଣିକ ଓ ଐତିହାସିକ ଦନ୍ତକଥା ଅନ୍ତରାଳର ରହସ୍ୟାଚ୍ଛନ୍ନ ମାନବିକ ସତ୍ୟକୁ କରେ ପ୍ରକଟନ । ମଣିଷ ଓ ତା' ସମାଜର ଅନ୍ତଃସ୍ୱରୂପକୁ କରିଥାଏ ପ୍ରକାଶିତ । 'ବେୟାର ଫୁଟ ଇନ୍ ଟୁ ରିଅଲିଟୀ'ରେ କବି ସୀତାକାନ୍ତ ମହାପାତ୍ର ଲେଖିଛନ୍ତି ଗୋଟିଏ ଦୃଷ୍ଟାନ୍ତ, 'ଏଲିଅଟ୍ ଯେତେବେଳେ ମିଥ୍‌କୁ ବ୍ୟବହାର କଲେ ସେମାନେ ଗୋଟିଏ ପୋଥିଗତ ବିଦ୍ୟାର ଆଶ୍ରୟ ନେଲେ, କାରଣ ସେଇ ସବୁ ମିଥ୍‌କୁ ସମାଜ ଭୁଲି ସାରିଲାଣି' । 'ଇନ୍ଦ୍ରାଣୀ' କୁ ଆମେ କେତେ ମନେ ରଖୁଛୁ ? ବରଂ ଇନ୍ଦ୍ର ଅହଲ୍ୟାକୁ ପତିତା କରିଥିବା ପର ଘର ପଶା ଅନେକ ଜାଣନ୍ତି । ମାତ୍ର ଇନ୍ଦ୍ରାଣୀର ପତ୍ନୀତ୍ୱପଣ କେବଳ ବୈଦିକ ବିବାହ ବେଳେ ପୁରୋଧା ସ୍ମରଣ କରାନ୍ତି । ଆଧୁନିକ ଜୀବନରେ ଏହି ମନ୍ତ୍ର ବିସ୍ମୃତ ହୋଇ ଆସୁଥିବାବେଳେ ଇନ୍ଦ୍ରାଣୀକୁ ନୂଆ ସମାଜ ଓ ନୂଆ ଜୀବନର ପ୍ରତୀକ କରି କବି ହରିହର ମିଶ୍ର ତାକୁ ଚିରୋଜ୍ଜ୍ୱଳ କରିଦେଇଛନ୍ତି ।

'ଇନ୍ଦ୍ରାଣୀ ନଗରୀରେ ଦିନେ' କବିତା ସାମ୍ନାକୁ ଆସେ ଯେତେବେଳେ ଦିଶିଯାଏ ସାଇନ୍ ବୋର୍ଡ଼ପରି ଗୋଟିଏ ମନୋରମ ଅନୁଭବ, 'ସ୍ୱର୍ଗ ଏକ ସୁନ୍ଦର ଅହଂକାର'! 'ଇନ୍ଦ୍ରାଣୀ ସେ ସ୍ୱପ୍ନର ରାଣୀ', ଆଗକୁ ତା' ଅସ୍ତିତ୍ୱର ନୂଆ ଚିତ୍ର, 'ତୁ ଭଗିନୀ, ଜାୟା ତୁ ଜନନୀ / ଶକ୍ତି ତୁ ବଜ୍ରର / ଶକ୍ତି ତୁ ବର୍ଷାର / ବିଜୁଳି କନ୍ୟା ତୁ । / ଆଉ ପ୍ରେମର, ହ୍ଲାଦିନୀ... / ତୁ ହିଁ ନାରୀ ଶକ୍ତି ଆଜି ତୋର ଆସିଛି ଜାଗୃତି ।' ବ୍ୟକ୍ତିଗତ ଚେତନା ସାମୂହିକ ଚେତନରେ ବଦଳିଛି ଏବଂ ଜଣର ଅସ୍ତିତ୍ୱ ଗଣଶକ୍ତିରେ ବଦଳିଛି । ରଚିତ ହୋଇଛି 'ଇନ୍ଦ୍ରଯାତ୍ରା' । ବ୍ୟକ୍ତିଗତ ଅହଂକାର ଓ ଲିଙ୍ଗଗତ ପୌରୁଷ କାବ୍ୟ ନାୟକର ବାହାରକୁ ଯେତେ ଦୁର୍ଦ୍ଧର୍ଷ ହେଲେ ବି ନାରୀ ପାଖରେ ଫମ୍ପା, ସିଏ ଅପୁରୁଷ । ଇଣ୍ଟିମେଣ୍ଟ ସେକ୍ସ ଷ୍ଟୋରୀ ମହା ଚରିତ୍ରମାନଙ୍କ: 'ପଦାଘାତ କରି ପାରୁ ହେ ଇନ୍ଦ୍ରାଣୀ / ଅପୁରୁଷ ବୋଲି! ଜଣେ ସ୍ରଷ୍ଟା ପୁରୁଷର ସୃଜନୀ ଶକ୍ତି ସୃଜନରେ ଏତେ ପରିମାଣ ଖର୍ଚ୍ଚ ହୋଇଯାଏ ଯେ ତାହା ଯୌନ ଶକ୍ତି ହୋଇ ତା' ପାଇଁ ବିନିଦ୍ର ରାତି ବିତାଉଥିବା ଉତପ୍ତା ନାରୀକୁ ଆଉ ଶୀତଳ କରିପାରେ ନାହିଁ । 'ରଣ କ୍ଳାନ୍ତ ଲୀଳା ପୁରୁଷ ମୁଁ', ଜୀବନ ରଣ ନୁହେଁ ଏଠାରେ, ସୃଜନୀ ରଣ! ବଦଳାଇ ଦେଉଛି ପଥରକୁ କାଠରେ, କାଠ ଗଛରୁ କଟିଯିବା ପରେ ଜୀବନ ରହିତ ଶୁଷ୍କ ଛିନ୍ନାଂଶ ଏବଂ 'କାଠକୁ ପଥରରେ ବଂଚିବାକୁ ଦେ'! ପଥରର କିଛି ଅନୁଭବ ନଥାଏ! ଯଦିଓ- 'ରତିସୁଖ ସାରାଂଶରେ ମହମହ ମୋ ଅନଙ୍ଗ ରଙ୍ଗ ଆତ୍ମା', ପୌରୁଷ ଉପରେ ନାହିଁ ପ୍ରଶ୍ନବାଚୀ! 'ଶୂନ୍ୟରେ ହାହାକାର' ଭିତରେ ଜୀବନ ମରୁଭୂମି, ଆଦିଗନ୍ତ ମହାଶୂନ୍ୟତାରେ ହଜିଯାଇଛି, ସୃଷ୍ଟିର ସେବାରୁ ନିବୃତ୍ତ ସିଏ ହୋଇପାରି ନାହାନ୍ତି! ପିପାସା ବଂଚିଛି, କାମନା ତ ଅମୃତ ଓ ଆତ୍ମାର ଇନ୍ଦ୍ରଧନୁ! ଇନ୍ଦ୍ରଧନୁରେ ସପ୍ତରଙ୍ଗ କିଂତୁ କାମନାର ନବରଙ୍ଗ । କାମନା Seduce କରାଇଛି: ଉଁଚା ଉଁଚା ପରବତେ

ବସି ରହି କି ଅବା ଗାଉଛୁ ଗୀତ ହେ ଶବରୀ ବାଳୀ!

ନୀଳ ମେଘକୁ ଥରେ ଚୁମ୍ବିବାକୁ ଦେ ।

ପରବର୍ତ୍ତୀ ଧାଡ଼ି – 'ଏଇ ତ ଚାଲୁଛି ରଥ, କଂଦର୍ପର ରଥ, ଉତ୍କଳ ପ୍ଲାବିନୀ ହ୍ଲାଦିନୀ ତାହାର କ୍ରିୟା ରଚନା କରିଛି!' 'ମହମହ ମୋ ଅନଙ୍ଗ ରଙ୍ଗ', ଉଦ୍ଦୀପ୍ତ ପୁରୁଷ ଆବେଦନ କରୁଛି, 'ନୀଳମେଘକୁ ଥରେ ଚୁମ୍ବିଗିବାକୁ ଦେ!' ଥରେ ଚୁମ୍ବି ଦେଲେ EXISTENCEକୁ ଉପଲବ୍ଧି କରି ହୋଇଯିବ! 'ଚର୍ଯ୍ୟା'ର ଶବରୀ ଉଚ୍ଚ ଉଚ୍ଚ ପର୍ବତ ଚୂଡ଼ାରେ ବସି କି ଗୀତ ଗାଉଛି? ଗାଉଛି 'ମହାସୁଖ' ଗୀତ! ଶବର ଭୂଜଙ୍ଗ ନୈରାତ୍ମା ଦାରୀ ପ୍ରେମରେ ପୁହାଇଛି ରାତି! ଅର୍ଥ ବିନିମୟରେ ପତ୍ନୀ ଠାରୁ

ଅଧିକ ସୁଖ ପୁରୁଷକୁ ଦେଇ ପାରୁଥିବା ନାରୀ ଦାରୀ! 'ଶୂନ୍ୟ ନୈରାତ୍ମା କଣ୍ଠେ ଲଇ ମହାସୁଖେ ରାତି ପୁହାଇ / ଗୁରୁ ବାକ୍ ପୁଚ୍ଛି ବିନ୍ଧି ନିଜ ମନ ବାଣେ' (ଚର୍ଯ୍ୟା ଗୀତ, ଶବରପାଦାନାମ୍)

ଜୀବ ପରମ ମିଳନ ଚିତ୍ର ଶବର ଶବରୀ ପ୍ରସଙ୍ଗରେ ଶବରପାଦ ଯେପରି କରିଛନ୍ତି ବ୍ୟକ୍ତ ତାହା କାବ୍ୟ - ନାୟକ ଚେତନାରେ ଉଦ୍‌ଜାଗ୍ରତ। ଡ଼କ୍ଟର କରୁଣାକର 'ଚର୍ଯ୍ୟା'ଟିର ବ୍ୟାଖ୍ୟାରେ କହିଛନ୍ତି, ଶବର (ଜୀବ) କାୟ ମନ ବଚନକୁ ଖଟ କରି ପାତିଲା। ସେହି ଖଟ ଉପରେ ମହାସୁଖରେ ଶେଯ ବିଛାଇଲା, ବିଟ ପୁରୁଷ ଖଟ ଉପରେ ଶେଯରେ ଶୋଇ ଦାରୀ ପ୍ରେମରେ ରାତି ପୁହାଇଲାପରି ଶବର (ସାଧକ ଜୀବ) ମହାସୁଖ ଶେଯରେ ଶୋଇ ନୈରାତ୍ମା ସହିତ ମିଳିତ ହୋଇ ଅବିଦ୍ୟା ରଜନୀ ପୁହାଇ ଦେଲା। ଚିଆଁ ଚୈତନକୁ ସ୍ତ୍ରୀ - ସମ୍ଭୋଗପରି ପାନରେ କର୍ପୂର ଖାଇଲାପରି ମନ ଚୈତନ୍ୟକୁ ଖାଇ ଲୋପ କରି ମହାସୁଖ ଭୋଗ କଲା।

ଶବରୀ ବାଳୀ ଗାଉଛି, ମୈଥୁନା ଜୟତେ ସିଦ୍ଧି ବ୍ରହ୍ମଜ୍ଞାନମ୍ ସୁଦୁର୍ଲଭମ୍! ଠିକ୍ ଏମିତି ଶ୍ରୀମଦ୍ ଗୀତା ଠାରୁ ମଧ୍ୟ ଶ୍ରବଣ କରିବାକୁ ମିଳିଛି, ଧର୍ମ ଅବିରୁଦ୍ଧ ଭୂତେଷୁ, କାମୋଽସ୍ମି ଭରତର୍ଷଭ, ଧର୍ମର ବିରୋଧ କରୁନଥିବା କାମ ମୁଁ, କାମଭାବ ଈଶ୍ୱରଙ୍କ ଲୀଳାର ଅଙ୍ଗ ବିଶେଷ।

କବିତାର ସଂଜ୍ଞାରେ କହନ୍ତି ଓଶୋ Poetry is calling, rejoicing, according to how one felt ଇଂପ୍ଲୋର୍, ବ୍ୟଗ୍ର ଭାବରେ କରୁଛି ଭିକ୍ଷା - ନୀଳମେଘକୁ ଥରେ ଚୁମିବାକୁ ଦେ! କାବ୍ୟିକ ଶବ୍ଦ ବ୍ୟବହାର ସମ୍ବନ୍ଧରେ ନିଜ ଦୃଷ୍ଟିକୋଣ ପ୍ରକାଶ କରିଛନ୍ତି ଦାର୍ଶନିକ ଓଶୋ, We use words in two ways. In one way the word is kept within the confines of its known meaning; it conveys only that which is conveyed by its meaning. It fails to go beyond its own limitations.

In the other way, the word used communicates much more than it s given meaning. The word itself may be small, but its meaning is vast; the meaning is larger than the word itself. (Krishna: the man and his philosophy, page 450)

'ନୀଳମେଘ' ବିପୁଳ ବା ବିସ୍ତୀର୍ଣ୍ଣ ଅର୍ଥ ସଂପନ୍ନ ଗୋଟିଏ ପ୍ରତୀକ। ଆଦୌ ଲାଗୁ ନାହିଁ ବେଖାପ କିଂବା ଅପରିଚିତ। ଏହା ପରିପକ୍ୱ କବିତ୍ୱର ଗୁଣ।

ସଂପର୍କର ବୈଚିତ୍ର୍ୟ ଓ ବିସ୍ମୟ ଇନ୍ଦ୍ରାଣୀ ଓ ଇନ୍ଦ୍ର ମିଥ୍‌ର ଆଭ୍ୟନ୍ତର । ଜୀବନର ପ୍ରାଣକେନ୍ଦ୍ର ଯୌନ ଚେତନା । ଯୌନ ଚେତନାର ଚୌହଦୀ ଭିତରେ କବିତାର ଚୈତାଳୀ କୋକିଳକୁ ମତ୍ତ ହେବାକୁ ଯେମିତି ଯୋଗାଇଛି ଋତୁର ପରିବେଶ । କବିତାର ଅନ୍ତର୍ମନ ସେହି ପରିବେଶର ସୁବାସରେ ସୁବାସିତ । କବିଙ୍କ ପ୍ରାଣର ଫୁଲବନରେ କବିତାର ଫୁଲ ଫୁଟିଛି, ଯେମିତି କେହି ଶିଳ୍ପୀ ଚିତ୍ର ପରେ ଚିତ୍ର ଆଙ୍କୁଛି ! 'ଇନ୍ଦ୍ରାଣୀ' ସେହି ଚିତ୍ର ନାରୀ ! ଚରିତ୍ରର ଆଭାସରେ ବିକଶିତ କଦମ୍ବ ପୁଷ୍ପ, ପୁଷ୍ପରେ ତା' ବୋହି ଆଣିଛି ସୌନ୍ଦର୍ଯ୍ୟ ଓ ନାଂଦନିକତାର ଖଣ୍ଡଖଣ୍ଡ ମେଘ ।

ଆଧୁନିକ ମଣିଷ ଚାରିପଟ ସମସ୍ୟାର ଜାଲ, ତାକୁ କବି ଭାବୁଛନ୍ତି 'ଇନ୍ଦ୍ରଜାଲ', ଯାହାର ଅର୍ଥ 'କୁହୁକ' କିଂତୁ କବିତାରେ ଏହା ଅର୍ଥ ଜୀବନ ! ଜଟିଳ ବଂଚିବା ଦୃଶ୍ୟ: ମୁଁ ଏବେ କରିବି କିସ / ଶୂନ୍ୟରୁ ଆରମ୍ଭ କରି / ସେ ଗଣିତ ଘୋଷୁଥିବି... ! ମାତ୍ର ଲକ୍ଷ୍ୟ ସଚେତନ ନାୟକ, ସିଏ ଜାଣିଛି ଜୀବନ ତାର ଗଣିବା କାମ, କେଉଁ ଠାରୁ ଆରମ୍ଭ କରିବି ? ଜଟିଳତା ସରଳ କାବ୍ୟିକତା ଚିତ୍ର କରୁଛି, ହେ ଇନ୍ଦ୍ରାଣୀ କହ ମତେ / କେଉଁ ହିରଣ୍ୟ ଗର୍ଭରେ ଲୁଚାଇଛ ସେ ଅମୃତ ?/ ପବିତ୍ର କର ମତେ, ରୂପାନ୍ତରିତ କର.. ! 'ରୂପାନ୍ତରିତ' ଶବ୍ଦଟି ଶ୍ରୀଅରବିନ୍ଦଙ୍କ ରୂପାନ୍ତର ଯୋଗ ଓ ଅତିମାନସ ରଶ୍ମି ପ୍ରସଙ୍ଗ ଦିଗକୁ କରେ ସଂକେତ । କେବଳ ଅତିମାନବ ଅମୃତ ଭୋଗୀ ପୁରୁଷ । ଅତିମାନସ ଶକ୍ତି ମନ, ପ୍ରାଣ, ଚେତନା ଓ ଇନ୍ଦ୍ରିୟମାନଙ୍କ ସହିତ ମାନବ ଦେହକୁ ବି କୁଆଡ଼େ ବଦଳାଇ ଦେବ; ଅତିମାନବ ଚର୍ମର ରଙ୍ଗ କମଳା ରଙ୍ଗ ଦିଶିବ (ସତ୍ୟଶ୍ରୀ, ରୂପାନ୍ତର ଯୋଗ ବିଶେଷାଙ୍କ) !

'ତୁମ ସ୍ମୃତି ପ୍ରତି ବିରତିରେ' ଶ୍ରୀଜଗନ୍ନାଥ ତତ୍ତ୍ୱର ଉତ୍ତରଣ ଘଟିଛି: 'ସେ ଭିକାରୀ ବଳଙ୍କୁ ପଚାରି ବୁଝି ନିଏ – ଦେଖିଛ କି / ଆମର ସେ ବାରମାସୀ / ଧଳା କଳା ହଳଦିଆ ଲାଲ ଚଢ଼େଇଙ୍କୁ ? ଏହା ପାଖକୁ ଗୁନ୍ଥା ଯାଇଛି, 'କଳା ଧଳା' ଜାହାଜର ମାସ୍ତୁଲରୁ କୈଳାସର ବ୍ରହ୍ମ କପାଳୀ ପର୍ଯ୍ୟନ୍ତ ଭର୍ତ୍ତି ଶୁଭ୍ର ଅନ୍ଧକାର ଓ କୁହୁକ କାହାଣୀ ! କଳାଧଳା ଶକ୍ତି ସମ୍ପନ୍ନା ବିଦ୍ୟୁତ କନ୍ୟାକୁ ଦେଖି କିନ୍ନର ଜଣେ ହସୁଛି, ଅନ୍ଧାର ଓ ଆଲୁଅକୁ ଯୋଡ଼ି ପାରିବା ସମର୍ଥ ସିଏ ! କବିତାର ପରିଣତି ବେଳକୁ ପୁରାଣ ପୃଷ୍ଠାର କରିସ୍ମା କବିତାକୁ ଅକ୍ତିଆର କରିଛି !... ଇନ୍ଦ୍ରାଣୀ ତମେ ଭିନ୍ନ ଥାଅ / ଶାଢ଼ୀଭଳି ଇନ୍ଦ୍ର ବଦଳାଅ / ପୌରୁଷ ଦୀପ୍ତିନେଇ... / ଇନ୍ଦ୍ରମାନେ ଶାଢ଼ୀ ଧରି ଅପ୍ସରାଙ୍କ / ନୃତ୍ୟାୟିତ ପାଦ ତଳେ ସୋମ ଅବା ସୁରାପିଇ / ସିଂହାସନ ଖୋଜୁଥିଲା ବେଳେ !

'ସତ କ'ଣ, ମିଛ କ'ଣ କବିତାଟି ଯେତେବେଳେ ସାମ୍ନାକୁ ଆସେ, 'ଇନ୍ଦ୍ରାଣୀ'ର ନିଛକ ରୂପ ବାହାରି ଆସେ: ଇନ୍ଦ୍ରାଣୀ ମୋ ପଦ୍ମଗନ୍ଧା, ପଦ୍ମାଳୟା,

ନୁହେଁ ସେ ତ ସୁନାର ପ୍ରତିମା / ରକ୍ତ ମାଂସ ନାରୀଟିଏ, ଡ଼େଇଁଥାଏ / ଇହ ଲୋକ, ପରଲୋକ ସୀମା !

କେବଳ ବଂଚିବା, ଜଣେ ନାରୀର ବଂଚିବା ସୀମାକୁ ଶୀର୍ଷକଟି ପ୍ରଦାନ କରିଛି ସୁଷମା ! ସେହି ସୁଷମାର ଶରୀର କବିତା । ଇନ୍ଦ୍ରାଣୀ ସ୍ୱାଧୀନ ଉର୍ତ୍ତୃକା, ଶାସ୍ତ୍ରୀୟ ଅଷ୍ଟ ନାୟିକା ମଧ୍ୟରୁ ଅନ୍ୟତମ । ତାଙ୍କ ପୁତ୍ର ଜୟନ୍ତ କାକ ରୂପରେ ସତୀ ସୀତାଙ୍କ ଓଷ୍ଠକୁ ପକ୍ୱଫଳ ବୋଧ କରି କରୁଥିଲା କ୍ଷତ, ସ୍ଖଳିତ ଚରିତ୍ର, ତା' ଅପକର୍ମର ପରିଣାମ କାକମାନେ ବକ୍ର ନେତ୍ର, ସିଧା ଦେଖିବାକୁ ଅସମର୍ଥ । ପିତା ପୁତ୍ର ବଂଶାନୁକ୍ରମରେ ଭୋଗ-ବିଳାସ ପ୍ରମତ୍ତ । ଅକ୍ଷରର ସଂକେତରେ କବିତା ପହଂଚିଛି ଇପ୍ସିତ ଲକ୍ଷ୍ୟରେ, ଯେଉଁ ଲକ୍ଷ୍ୟ କେବଳ ନିସର୍ଗ । 'କବିତା ମୋ ସାଧାସିଧା/ କି ଅବା ଦର୍କାର ଏତେ ଭୂଷଣ', ଆପଣାର ଠିକଣା ପାଇଁ, ବଂଚିବା ପ୍ରମାଣ ଦେବା ପାଇଁ କବିତାର ଧଳା କୋଇଲି ଜବରଦସ୍ତ ଯଥେଷ୍ଟ ! ଯିଏ ବଂଚିଛି ସିଏ ଏକ ପତ୍ନୀହରା ବିରହୀ ଯକ୍ଷ !! 'କ୍ଷ'ର ବ୍ୟାଖ୍ୟା କରିଛନ୍ତି ମୋରେଶ୍ୱର ରାମଚନ୍ଦ୍ର କାଲେ, 'ଇଃ କାମଃ, ତସ୍ୟ ଇବ ଅକ୍ଷିଣୀ ଯସ୍ୟ', କିଂବା - ଇଃ ଅକ୍ଷଣୋଃ ଯସ୍ୟ ଇତି ବା, ଅର୍ଥାତ୍ - ଯାହାଙ୍କ ଚକ୍ଷୁ ଯୁଗଳରେ ବିଦ୍ୟମାନ କାମ କାମନା, ସେ ଯକ୍ଷ ଅଟନ୍ତି ।

'ବିଷକୁ ପୀୟୁଷରେ ବଦଳାଇ / କେମିତି ହସିବାକୁ ହୁଏ ପ୍ରତି ସକାଳରେ, ଜାଣିଥିଲା ସେହି ମହାନ ବ୍ୟକ୍ତିତ୍ୱଟି ! ପରବର୍ତ୍ତୀ ସ୍ଥିତିରେ କବିତା ତାହାଙ୍କୁ ଚିହ୍ନାଇଛି, 'ମୋର ଆତ୍ମୀୟ ସେ ବଂଧୁଟି !'ଏଇଠି 'ମୁଁ' ଜଣେ ଆସିଛି, ସେ କିଏ ? ସେ ଜଣେ ମଣିଷ, ତା ଓଠରେ ଶପଥପରି ସଜ୍ଜିତ, ଏ ମାଟିରେ ସମ୍ଭବତଃ ପ୍ରେମର ପରାକ୍ରମ ଦେଖାଇବି !'

ସବୁ ମଣିଷ ପ୍ରେମ ଉପେକ୍ଷିତ । ଆକାଂକ୍ଷିତା ମିଳିଥାଏ, ମିଳିଥାଏ ତାକୁ ଶଯ୍ୟାରେ ମନଇଚ୍ଛା ଭୋଗ କରିବା ସାମାଜିକ ସ୍ୱାଧୀନତା । ପୁଷ୍ପକୁ ଦଳି ମଂଥି ପକାଇଲେ କ'ଣ ମିଳିଥାଏ ବୁଂଦାଟିଏ ମଧୁ ? ବରଂ ଉପେକ୍ଷିତ ହୋଇଥାଏ ପ୍ରାଣ ପୁରୁଷ ଏବଂ ରକ୍ତାକ୍ତ ହୋଇ ଛଟପଟ ହେଉଥାଏ ମନ ପକ୍ଷୀ । କ୍ଳାନ୍ତ ଜଡ଼ ଦେହ ଶଯ୍ୟାରେ ଆରମ୍ଭ କରିଥାଏ ତାହାର ମୋକ୍ଷ କର୍ମ । ସ୍ୱପ୍ନ କୋଠରୀର ଅଚିହ୍ନା ସ୍ଥାନ ଚିହ୍ନାଇ ଦିଏ ଅଚିହ୍ନା ହାହାକାର ଓ ଯଂତ୍ରଣାକୁ ! ସତୀ ତୀର୍ଥରେ ତା' ପାଇଁ ଘୋଟି ଆସିଥାଏ ସଂଧ୍ୟା ! ଆଗକୁ ଅନ୍ଧାର ! ସେହି ଅନ୍ଧାରରେ ନିଆଁ ଜାଳିଛି ଶବ୍ଦ । ଶବ୍ଦରେ ତିଆରି ହୋଇଛି ସହସ୍ର ନାମ, ଶୁଭ ଓ ଶୁଭ୍ର ବର୍ଣ୍ଣର ବିଚିତ୍ର କୋଳାହଳ !

ଅମାପ ଅନୁଭବର ଚିତ୍ରାଙ୍କନ 'ଇନ୍ଦ୍ରାଣୀ' । ଇନ୍ଦ୍ର (ନାରକୁ ସାମାଜିକ ଦୃଷ୍ଟିରୁ ଅଧିକୃତ କରିଥିବା ପୁରୁଷ)ର ସିଏ ଇନ୍ଦ୍ରନୀଳ ମଣି । ଇନ୍ଦ୍ରାଣୀର କାବ୍ୟିକ ଫର୍ଦ୍ଦରେ ସଂଜ୍ଞା, 'ସେହି ତ ଇନ୍ଦ୍ରାଣୀ/ ପ୍ରେମର ସେ ଠାକୁରାଣୀ; ଇନ୍ଦ୍ରାଣୀ ବଂଚିଛି କାହାର ନ ହୋଇ / ନିଜେ ହିଁ ନିଜର ହୋଇ ସଦାକାଳେ ! ଯେମିତି ବିଭୋର ଗୋଟିଏ କଳ୍ପନା । ସିଦ୍ଧାନ୍ତର ସିଧା ଚିତ୍ର : ଦେହ ଥାଇ ଦେହ କିଛି ନାହିଁ/ କେହି କେବେ ତା'ଠାରୁ ହଜି ନାହିଁ / ନାରୀ କେବେ ବିଧବା ନୁହଁଇ ।'

କଳ୍ପନା କ'ଣ କେବେ ହୋଇଥାଏ ବିଧବା ?

ପ୍ରେମ ଚିର ସଧବା ନୀଳ ସୁନ୍ଦରୀ ଇନ୍ଦ୍ରନୀଳ ମଣି ! ତା' ପାଇଁ କଫିନ୍ ନାହିଁ କି ନାହିଁ ପିରାମିଡ୍ ! ସିଏ ମହାମାୟା ! ପରନାରୀ ଯେମିତି ଇନ୍ଦ୍ରାଣୀ ! ତାକୁ ସାଇତି ରଖିଥାଏ କବିତାର ମଂଜୁଷା, ନୁହେଁ ହୃଦୟ ! ହୃଦୟରେ ସାଇତିଲେ ତାକୁ ପୋଡ଼ି-ଜାଳି ଦେଇଥାଏ ।

ଆର୍ଣ୍ଣୋଲ୍ଡ ଲେଖିଛନ୍ତି, We have to turn to poetry to interprete life, କବିତାକୁ ଜୀବନର ବ୍ୟାଖ୍ୟା କରିବାରେ ଆମକୁ ବଦଳାଇବାକୁ ହେବ । In poetry, as criticism of life under conditions fixed for such a creaticism by the laws of poetic truth and poetic beauty, କାବ୍ୟିକ ସତ୍ୟ ଓ ସୌନ୍ଦର୍ଯ୍ୟ ଦର୍ଶନକୁ ଗୋଟିଏ ଧାଡ଼ିରେ ଦର୍ଶାଇ ଦେଇଛନ୍ତି କୀଟସ୍- Beauty is truth, truth is beauty.

ରସ୍କିନ୍ ବର୍ଣ୍ଣନା କରିଛନ୍ତି, The beautiful a gift of God.

ରସ୍କିନ୍‌ଙ୍କ ଅନୁଯାୟୀ, The feeling of the Beautiful, does not depend on the senses, nor on the intellect, but on the heart!

ହୃଦୟ ଅନୁଭବ କରିଥାଏ ସୌନ୍ଦର୍ଯ୍ୟକୁ ଏବଂ ସେହି ଅନୁଭବର ଉଲ୍ଲାସକୁ ବୁଝିଥାଏ ମନ । ଭାଷାତତ୍ତ୍ୱବିତ୍ Benedetto Croce କହନ୍ତି, Beauty is successful or better expression and nothing more ଏହି ଦୃଷ୍ଟିରୁ 'ଇନ୍ଦ୍ରାଣୀ'ର ବାକ୍ -ବୈଖରୀ ଅଭିବ୍ୟକ୍ତି ଆଙ୍ଗିଭିଟୀ ସଫଳ ଓ ସୁଷମା ସଂପନ୍ନ । 'ଇନ୍ଦ୍ରାଣୀ'ର ଭାବନା ସଂଗଠନ ତା' ଅଭିବ୍ୟକ୍ତିର ରୂପ ଲାବଣ୍ୟ ।



# ଆଧୁନିକତାର ଉପପାଦ୍ୟ ଓ 'ଭୁଜବର୍ଣ୍ଣର ସିଦ୍ଧାନ୍ତ'

୨୦୧୭ ମସିହା, କବି ହରିହର ମିଶ୍ରଙ୍କ ପରିପକ୍ୱ କଳା ଚେତନାର ପରିପ୍ରକାଶ ଦୁଇ ଖଣ୍ଡ କାବ୍ୟ, ୧– ଭୁଜବର୍ଣ୍ଣ ଓ ୨– ଗୂଢ଼ପଦ, ଆସିଛି କବିତା ପ୍ରେମୀଙ୍କ କାବ୍ୟ ତୀର୍ଥକୁ । 'ଭୁଜବର୍ଣ୍ଣ' ସାଧାରଣ ଜୀବନ ଶ୍ରୀମନ୍ଦିରରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ସୁଦର୍ଶନ । ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତମ୍ – ଏକ ତୁଙ୍ଗତମ କଳା ପ୍ରତିମାର ଷ୍ଟ୍ରକ୍‌ଚର ହେବାବେଳେ ଅତଳ ସ୍ପର୍ଶୀ ଆଧାତ୍ମିକ ରହସ୍ୟ, ନିର୍ଜୀବମାନଙ୍କ ଜୀବନ୍ତ ଅସ୍ତିତ୍ୱ । ଯେମିତି ଅଭିଧାର୍ଥ ବାଚ୍ୟାର୍ଥରେ ତିରୋହିତ ଏବଂ ତାହା ଲକ୍ଷଣାର୍ଥରେ ଇଙ୍ଗିତାୟିତ ବୋଲି ଆରମ୍ଭରେ କବି ରଖିଛନ୍ତି ମତ । ଶବ୍ଦ ନୂତନ ଭାବାର୍ଥରେ ବିବର୍ତ୍ତିତ ଓ ବିକଶିତ ହୋଇ 'ଭୁଜବର୍ଣ୍ଣ' ଲାଭ କରିଛି ।

ମଣିଷ ଅସଂପୂର୍ଣ୍ଣ ଭାଗ୍ୟ, ତା' ଦେବତା ଅଧାଗଢ଼ା, ଠିକ୍ ସେମିତି – ପୂର୍ଣ୍ଣତା ପାଇଁ ସକଳ କଳାକୃତିର ଆୟାସ ଓ ବୌଦ୍ଧିକ ତାର ସଂଯୋଗ ତା' ପାଇଁ ହୁଏ ଅକୁଳାଣ ।' ଆନ୍ତରିକ ପ୍ରଚେଷ୍ଟା ସତ୍ତ୍ୱେ ବି ସ୍ରଷ୍ଟା ଜଣକ ଶିଶୁପରି ଅସହାୟ ! ପ୍ରକୃତି ସହିତ ଯତିପାତ ରଖି କବିତାର ବିକାଶ ଧାରା ଏବଂ ଏହା ତା' ବିକାଶମୁଖୀ ପରମ୍ପରା । ସେହି ପରମ୍ପରାର ରଙ୍ଗଶାଳା କବିଙ୍କ ଏହି କବିତା । ସୂତ୍ରଧର କବି ନୁହଁନ୍ତି, ସୂତ୍ରଧର 'ସେ' ନିଜେ ଗୁଣାଭାସ ବା 'ଭୁଜବର୍ଣ୍ଣ', ଗୋଟିଏ କଲର୍ ଇମେଜ୍ ।

ଗୋଟିଏ ସାକ୍ଷାତକାରରେ ପ୍ରାଜ୍ଞ ବର୍ଷିୟାନ୍ ସ୍ରଷ୍ଟା ମନୋଜ ଦାସ ବ୍ୟକ୍ତ କରିଛନ୍ତି, .. ଆଧ୍ୟାତ୍ମିକତା - ବିହୀନ ଲେଖାଲେଖିର ଅଭାବ ନାହିଁ । ଲେଖାଲେଖି ବୋଲି କହିବାର କାରଣ, ସେସବୁ ସାହିତ୍ୟ ପର୍ଯ୍ୟାୟରେ ଯିବେ ନାହିଁ - ସାହିତ୍ୟ ରୂପେ ବିଜ୍ଞପିତ ହେବା ସତ୍ତ୍ୱେ । ସେସବୁ ହୁଏତ ଉପାର୍ଜନ ପାଇଁ, ଚାଞ୍ଚଲ୍ୟ ସୃଷ୍ଟି ପାଇଁ ତୁଚ୍ଛା ଉଚ୍ଚାଭିଳାଷର ସନ୍ତୋଷ ବିଧାନ ନିମନ୍ତେ ବା କୌଣସି ସୀମିତ ଉଦ୍ଦେଶ୍ୟ ଚରିତାର୍ଥ କରିବା ପାଇଁ ଲେଖାଯାଇଥାଏ । (ଦୈନିକ ସମାଜ, ପୃଷ୍ଠା ୬, ତା ୨୭/୨/୨୦୧୮ ମଙ୍ଗଳବାର) । ଜୀବନର କେତେକ ମୌଳିକ ପ୍ରଶ୍ନ ଓ ପ୍ରହେଳିକାର ଉତ୍ତର ନିଜ ଚେତନାରୁ ଖୋଜି ପାଇଛନ୍ତି କବି ହରିହର, ତାହା ସବୁ ଆଧ୍ୟାତ୍ମିକତାର ଅନ୍ତର୍ଭୁକ୍ତ । କବିତାର ଭାଷାରେ ତାହା ହୋଇଛି ପ୍ରତୀକ । 'ଭୁଜବର୍ଣ୍ଣ' ଶବ୍ଦକୁ ଜ୍ଞାନସିଦ୍ଧିରେ ଇନ୍ଦ୍ରଭୂତି ଚତୁର୍ଦ୍ଧା ମୂର୍ତ୍ତିଙ୍କ ଚାରିବର୍ଣ୍ଣ ଅର୍ଥାତ୍ ଶ୍ୱେତ ପୀତ କୃଷ୍ଣ ଲୋହିତ ଭାବେ କରିଛନ୍ତି ଅଭିବ୍ୟଂଜିତ । ଜ୍ଞାନସିଦ୍ଧିରେ ଏହା 'ବୋଧାୟନ'ର ବୀଜାକ୍ଷର ହେଉଛି ବଯରଳ । ବୌଦ୍ଧ ବଜ୍ରଯାନ ସଂସ୍କୃତିରେ ଶ୍ରୀଜଗନ୍ନାଥଙ୍କୁ ପରମବଜ୍ରୀ । ବଳଭଦ୍ରଙ୍କୁ ବଜ୍ରୋଦକ, ସୁଭଦ୍ରାଙ୍କୁ ବଜ୍ରେଶ୍ୱରୀ ଓ ଶ୍ରୀ ସୁଦର୍ଶନଙ୍କୁ ବଜ୍ର ଭାବେ ସ୍ୱୀକାର କରାଯାଇଛି । ଗୋଟିଏ ଉଦ୍ଧୃତିକୁ ମୁଖବନ୍ଧରେ ହରିହର ମିଶ୍ର ଗ୍ରହଣ କରିଛନ୍ତି । 'ଭୁଜବର୍ଣ୍ଣ' ଓ 'ଗୂଢ଼ପଦ' ବହି ଦୁଇଟିରେ ପରମ୍ପରାକୁ ଫେରିଛନ୍ତି କବି, ପରମ୍ପରାର ପୁନରାବୃତ୍ତି ସେ କରିନାହାନ୍ତି, ବରଂ ପରମ୍ପରାର ଜୀବନ୍ତ ଅଂଶକୁ ଗ୍ରହଣ କରିଛନ୍ତି । ପରମ୍ପରାର ସେହି ସଜୀବ ଅଂଶ 'ଭୁଜବର୍ଣ୍ଣ' ସମାଯୁକ୍ତଂ ଯଥା ପୂର୍ବ ବ୍ୟବସ୍ଥିତମ୍ । ଅକୃତଂ ଦେବତା ରୂପଂ ଭାବତେ ତନ୍ମୟାଧୁନାଃ । (ଜ୍ଞାନସିଦ୍ଧି) । ସେହିପରି 'ଗୂଢ଼ପଦ' କବିସୂର୍ଯ୍ୟ ବଳଦେବଙ୍କ କ୍ଷୋଭପୂର୍ଣ୍ଣ ସ୍ତୁତି 'ସର୍ପଜଣାଣ'ର ଜୀବିତ ଅଂଶ - ଅଦୃଶ୍ୟ ହେବାରୁ ତ ପାଦ / ତାହାକୁ ବୋଲି ଗୂଢ଼ପାଦ / ଆପଣା ଚରଣ ତ / ବିରେଂଚିକୁ ଗୁପତ/ କାହିଁ ତା'ଠାରୁ ତୁମ୍ଭ ଭେଦ ହେ କୃପାନିଧି !

କବି ସଚ୍ଚିଦାନଂଦ ରାଉତରାୟ 'ଆଧୁନିକତା ଓ ପରଂପରା' ପ୍ରବନ୍ଧରେ ପ୍ରକାଶ କରିଛନ୍ତି, ବିଜ୍ଞାନକୁ ନ ଭାଙ୍ଗି ଇଏଟ୍‌ଙ୍କଭଳି ବିଜ୍ଞାନ ଓ କବିତା ମଧ୍ୟରେ ଏକ ପୁନଃମିଳନ ସଂଘଟନ କରାଯାଇପାରେ । ଯଦିଚ ତା' ଧର୍ମ ମାଧ୍ୟମରେ ହିଁ ହୋଇଛି । ଅତୀତକୁ ଧର୍ମୀୟ ଦୃଷ୍ଟିରେ ଦେଖିବା ଅର୍ଥ ଏହାକୁ ସମୟରେ ହିଁ ଦେଖିବା । ପ୍ରାକୃତିକ ବିଜ୍ଞାନ କିଂତୁ ସମୟହୀନ । ଏହାର ଅତୀତ, ବର୍ତ୍ତମାନ, ଭବିଷ୍ୟତ ବୋଲି କିଛି ନାହିଁ । ସମାଲୋଚକ ଆଲୋନ୍ ଟାଟେ ମାନବବାଦୀ ପ୍ରାକୃତିକବାଦରେ ଆସ୍ଥା ସ୍ଥାପନ କରନ୍ତି । ସେ ଅତୀତକୁ ସମସାମୟିକ କରିବା କଥା (ଟୁ କଂଟେଂପୋରାଇଜ୍ ପାଷ୍ଟ୍) କହନ୍ତି । କିଂତୁ ଏହାର ବାସ୍ତବ ପରିଣାମ ହେବ

ନିଃସମୟୀକରଣ । (ଆଧୁନିକ ସାହିତ୍ୟର କେତେକ ଦିଗ, ପୃଷ୍ଠା ୨୭) ।

ଆଧୁନିକତାର ଅନ୍ୟ ଗୋଟିଏ ଲକ୍ଷଣ Empirical approach ବା ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ପ୍ରଣାଳୀ ବର୍ଣ୍ଣନା ଓ ବ୍ୟାଖ୍ୟାରେ Multi -dimensional ବା ବହୁ ଆୟତନ ପୁରୋଦୃଷ୍ଟି ଦେଇ ପ୍ରତ୍ୟେକ ଜିନିଷକୁ ଦେଖିବା ସହିତ ସୃଷ୍ଟି କରିଛି ପ୍ରବଣତା ।

ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ପ୍ରଣାଳୀ ତତ୍ତ୍ୱର ଦୃଷ୍ଟାନ୍ତ - 'ଜୀବ ଓ ଅଜୀବ/ ଭାବ ଓ ଅଭାବ/ ସବୁରି ଊର୍ଦ୍ଧ୍ୱରେ ସେ ଚୂଡ଼ାମଣି ବିବେକର/ଦଶ ଦିଶେ ଅନ୍ତୋର୍ଦ୍ଦୟ ତା'ର / ଦଶ ମହାବିଦ୍ୟା ଅବା ଦଶ ଭାଇ ଜଗନ୍ତର/ଦଶ ଅବତାର. । ଅନ୍ୟ ଏକ ଦୃଷ୍ଟାନ୍ତ - ଆସନ୍ତି ଧାଇଁ ପୀତାମ୍ବର / ରଥକୁ ତାଙ୍କର ସବୁଠି ତାଙ୍କରି ରକ୍ତ/ସବୁରଥେ ଅନୁରାଗ ଛିଟା ଥାଏ / ଲୋହିତ ଲୋହିତ / ଜାଣିପାରି ମିଳନର ମହୋତ୍ସବ ମହାସଙ୍ଗମର / କଳାହାତୀ ହୁଏ ଉନମତ (ଭୁଜବର୍ଣ୍ଣ, ପୃଷ୍ଠା-୧୨) । ପିତାମ୍ବର, କଳାହାତୀ, ମିଳନ ମହୋତ୍ସବ, ମହାସଙ୍ଗମ - ଏହି ସମସ୍ତ ପ୍ରବଣତାରେ ଆର୍ଦ୍ର ଦୃଷ୍ଟିର ଲକ୍ଷଣ । ମିଥ୍ ମ୍ୟାଜିକ୍ ଓ ରିଚ୍ୱାଲ୍ସକୁ ହଠାଇ ଦେଇଛି Empirical approach । ମେଟାଫିଜିକ୍ସ କବିତାରେ ତାହାର ହେତୁବାଦୀ ଧାରାକୁ ଯେମିତି ଦେଇଛି ସୁରକ୍ଷା, 'ବଯରଳ ଚାରୋଟି ବର୍ଣ୍ଣରେ କିଂବା ବୀଜମଂତ୍ର ଭୁଜବର୍ଣ୍ଣ ଧ୍ୱନି ଝିଏ/ ଶୂନ୍ୟ ଓ ନୀରବତାର ପରିଭାଷା !' ଯେମିତି ଏହା ରହସ୍ୟବାଦୀର ଅତିହେତୁକ ଅହେତୁକତା ! ପିଓର ଆର୍ଟର ଧ୍ୱନିକୁ ରୂପାନ୍ତରିତ କରିବାର ଗୋଟିଏ ସୁଯୋଗ 'ଶୂନ୍ୟ' ଓ 'ନୀରବତା' ରେ ହାସଲ ହୋଇଛି !' ଆକୃତିକୁ ଛାଡ଼ି ନିର୍ଯ୍ୟାସ ପ୍ରତି ଆକୃଷ୍ଟ ହୋଇଛି ଅହେତୁକ ହେତୁ । କବିତା ହାସଲ କରିଛି ଏକ ନୂତନ ସାର୍ଥକତା । ତାଂତ୍ରିକ ଚେତନାର ପାରମ୍ପରିଣ ଭିତରୁ ଯେଉଁ କବିତାର ସ୍ରୋତ ଫୁଆର ମେଲିଥିଲା, ତାହା ତା'ର ଉଦ୍‌ଯାପନ ପର୍ବକୁ ହୋଇଛି ଅଦ୍ୱୈତ ତତ୍ତ୍ୱ । ଈଶା ବାସ୍ୟମିଦଂ ସର୍ବଂ, ବେଦାନ୍ତୀୟ ମହାତତ୍ତ୍ୱରେ ତାହାର ଚମତ୍କାରିତାର ଚାରୁତାକୁ ଦେଇଛି ବିରାମ ।

ଚଳନ୍ତି ପ୍ରତିମା ଆମେ ତୁମର ଅନେକ ଛାଇ
ତୁମେ କାମବ୍ରହ୍ମ ଆମ ମଦନ ମୋହନ
ଆମେ ତୁମ ଛାୟା ନଟ ତୁମେ ସୂତ୍ରଧର
x x x
ବଂଚୁ ଅବା ମରୁ ସବୁ ତୁମ ଇଙ୍ଗିତରେ ।

ଭାଗବତର ଗୋଟିଏ ପ୍ରସିଦ୍ଧ ପଂକ୍ତି, କରି କରାଉଥାଏ ମୁହିଁ / ମୋ ବିନୁ ଅନ୍ୟ ଗତି ନାହିଁ! ଅଲଗା ରଙ୍ଗରେ ସେହି ଚିତ୍ର, ତ୍ରିଗୁଣ ରଜ୍ଜୁ କରେ ଧରି/ ମୃଗୀ ନଚାଏ ନରହରି ।

କବି ହରିହର ମିଶ୍ରଙ୍କ ଦୃଷ୍ଟିରେ ତୂଳୀ ଆଙ୍କିଛି, 'ହେ ପରମ ଯୋଗୀ ସନାତନ/ ଓ ପରମ ବଜ୍ରୀ ତଥାଗତ / ଏ କ୍ଷେତ୍ରରେ ସବୁ ହିଁ ତ ଜଗନ୍ନାଥ! 'ତୁମେ ମୁଁ ସେମାନେ ଓ ଆମେ' ସମସ୍ତେ 'ଛାୟାନଟ', ତୁମର 'ଚଳନ୍ତି ପ୍ରତିମା । ମନୋଜ ଦାସଙ୍କ ଭାଷାରେ 'ନିହିତ ଆଧାତ୍ମିକତାର ଆହ୍ୱାନ' । ଉତ୍ତୀର୍ଣ୍ଣ ସାହିତ୍ୟର ଉପାଦାନ । କନସେପ୍ଟ ଅଫ୍ ମଡ଼େର୍ଣ୍ଣଟୀରେ ରହିଛି ଗୋଟିଏ ବିମର୍ଶ (କନ୍‌ସେପ୍ଟ), 'ସିରିଚୁଆଲ୍ ଅଟୋନୋମୀ ।' ଆଧାତ୍ମିକ ସ୍ୱାତନ୍ତ୍ୟ ଉପରେ କାବ୍ୟିକ ଅଙ୍ଗୀକାର ଉଚ୍ଚତର ସ୍ୱୟଂ ରୂପେ ବିରାଜିତ । ପୁନଶ୍ଚ ହରିହର ମିଶ୍ରଙ୍କ କବିତା ବହୁ ଆୟତନିକ ବାସ୍ତବତାର ଚିତ୍ର । ଏହାର ସ୍ୱରୂପ ନିର୍ଣ୍ଣୟ ପାଇଁ ବହୁ ଆୟତନିକ ବ୍ୟାଖ୍ୟା ଏକ ମାତ୍ର ରାସ୍ତା । Relativism ଦୃଷ୍ଟିରୁ ସମସ୍ତ ଜ୍ଞାନ ଆପେକ୍ଷିକ ଏବଂ ଏହା ଜ୍ଞାତାର ଅପେକ୍ଷାଶୀଳ ଓ କବିତାର ଦୃଷ୍ଟିଭଙ୍ଗୀରେ ପ୍ରବଳ ସଂପୃକ୍ତ ହେତୁ ମୂଲ୍ୟାୟନ କ୍ଳିଷ୍ଟ ।'

'ବାକ୍‌ତତ୍ତ୍ୱ' (ପ୍ରକାଶକ କାବ୍ୟଲୋକ, ୨୦୧୬)ର 'ପ୍ରାକ୍‌ବାକ୍'ରେ ବର୍ଣ୍ଣିତ, ... ପରାବାକ୍ ମୂଳାଧାର ଚକ୍ରର 'ସ୍ପନ୍ଦ' । ସ୍ପନ୍ଦ ଆନ୍ଦୋଳିତ ଇଚ୍ଛା ଶକ୍ତି, ଇଚ୍ଛାତ୍ୱଂ ତସ୍ୟ ସା ଦେବୀ (ମାଳିନୀ ବିଜୟ ତନ୍ତ୍ର, ୩.୫), ଇଚ୍ଛା ଶକ୍ତି ପ୍ରକଟିତା ହେଲେ ସିଏ ଜ୍ଞାନଶକ୍ତି ଓ କ୍ରିୟାଶକ୍ତି ରୂପରେ ରଚନ୍ତି ପ୍ରବାହ । ପ୍ରବାହର ମାର୍ଗ ତିନି । ବର୍ଣ୍ଣ, ପଦ ଓ ମଂତ୍ର । ଅବ୍‌ଜେକ୍ଟିଭ୍ ଦୃଷ୍ଟିରୁ ଏହି ତିନି ହେଲେ କଳା, ତତ୍ତ୍ୱ ଓ ଭୁବନ । ପ୍ରାଣ ସହସ୍ରାରରେ ରହିଲେ ସ୍ଥିର ଯୋଗୀ ଅନାହତ ଧ୍ୱନି ଦଶପ୍ରକାର କରିଥାନ୍ତି ଶ୍ରବଣ । ତାହାକୁ ଯୋଗଶାସ୍ତ୍ର କହନ୍ତି 'ବର୍ଣ୍ଣ' । ଉଚ୍ଚାରକରଣ ଧ୍ୟାନ ବର୍ଣ୍ଣ ସ୍ଥାନ ପ୍ରକଳ୍ପନୈଃ, କହନ୍ତି ମାଳିନୀ ବିଜୟ ତନ୍ତ୍ର (ସୌଜନ୍ୟ ଦି ଗାରଲାଣ୍ଡ ଅଫ୍ ଲେଟର୍ସ୍, ସାର୍ ଜନ୍ ଉଡ୍ରୋପ୍, ଗଣେଶ ଏଣ୍ଡ୍ କୋ, ମାଡ୍ରାସ୍, ରିପ୍ରିଣ୍ଟ୍ ୨୦୧୧) ।

ଆରମ୍ଭ: 'ଜ୍ଞାନସିଦ୍ଧି'ର ଉଦ୍ଧୃତି, ଭୁଜବର୍ଣ୍ଣ ସମାଯୁକ୍ତମ୍, ଭୁଜବର୍ଣ୍ଣ ଚାରି, 'ଶ୍ୱେତ ପୀତ ନୀଳ ଓ ଲୋହିତ/ ତମେ ଏକା ମୂଳାଧାର ସୃଷ୍ଟିର କାରଣ / ହେ ପରମ ବଜ୍ରୀ, (ଭୁଜବର୍ଣ୍ଣ, ପୃଷ୍ଠା ୯) । ଶ୍ରୀଜଗନ୍ନାଥ ବଜ୍ରୀ, ଲୋହିତାଙ୍ଗ ସୁଦର୍ଶନ ବଜ୍ର, କର୍ପୂର ଧବଳ ଶୁଭ୍ର ଶୁକ୍ର ବଜ୍ରୋଦକ' ବଳଭଦ୍ର । ଜାୟାରେ ଯୁଗନ୍ନଦ୍ଧ ବଜ୍ରୀ, ସେ ଜାୟା ହେଲେ ବଜ୍ରେଶ୍ୱରୀ ପ୍ରକୃତି ରୂପିଣୀ, ବିଜୁଳୀ କନ୍ୟା । ତନ୍ତ୍ର ପୀଠ ଉଡ୍‌ଡ୍ରୀୟାନ୍, ଯେଉଁ ପୀଠରେ ଜଗନ୍ନାଥସ୍ତୁ ଭୈରବଃ ବିମଳାସ୍ତୁ ମହାଦେବୀ, ସେହି ପୀଠ, ଉଡ୍‌ଡ୍ରୀୟାନଂ ଧ୍ୟାୟେତ୍, ଶ୍ରୀକ୍ଷେତ୍ର ନିଶ୍ଚୟ । ପୂର୍ବରୁ ଅନଙ୍ଗ ବଜ୍ର

(୭୦୫ ଖ୍ରୀଷ୍ଟାବ୍ଦ)ଙ୍କ 'ଜଗନ୍ନାଥୋ ଗୁରୁଃ' ଏବଂ ଇନ୍ଦ୍ରଭୂତି (୭୧୭ ଖ୍ରୀଷ୍ଟାବ୍ଦ)ଙ୍କ 'ଜଗନ୍ନାଥଂ ସାଧନଂ ପରମ୍' ବର୍ଣ୍ଣିତ । L.A. Wadel ତାଙ୍କ Lamaism ପୁସ୍ତକରେ ଲେଖିଛନ୍ତି ଉଡ୍‌ଡ୍ରୀୟାନ ଥିଲା ଦୁଇଟି ରାଜ୍ୟରେ ବିଭକ୍ତ । ଗୋଟିଏ 'ସମ୍ବଳକ' ଏଠାରେ ରାଜତ୍ୱ କରୁଥିଲେ ରାଜା ଇନ୍ଦ୍ରଭୂତି । ସେ ସିଦ୍ଧାଚାର୍ଯ୍ୟ ଅନଙ୍ଗ ବଜ୍ରଙ୍କ ଶିଷ୍ୟ । ଅନଙ୍ଗ ବଜ୍ର ସଂସ୍କୃତରେ ଲେଖିଛନ୍ତି ଛ'ଟି ଗ୍ରନ୍ଥ । ଇନ୍ଦ୍ରଭୂତି ଲେଖିଛନ୍ତି ତେଇଶି ଖଣ୍ଡ ବହି । ସେମାନଙ୍କ ମଧ୍ୟରେ ଖଣ୍ଡିଏ 'ଜ୍ଞାନସିଦ୍ଧି' । 'ଟୁ ବଜ୍ରଯାନ ଓ୍ୱାର୍କସ୍' ସମ୍ପାଦନା କରିଛନ୍ତି ଡ଼କ୍ଟର ଭବତୋଷ ଭଟ୍ଟାଚାର୍ଯ୍ୟ । ବରୋଦାରୁ ପ୍ରକାଶିତ 'ଜ୍ଞାନସିଦ୍ଧି'ରୁ ସେ ଗ୍ରହଣ କରିଛନ୍ତି ଏହି ଉଦ୍ଧୃତି -

ପ୍ରତିପତ୍ୟଂ ଜଗନ୍ନାଥଂ ସର୍ବଜିନ ବରୋର୍ଚ୍ଚିତମ୍ ।
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।
ସର୍ବଦଂ ସର୍ବ ସତ୍ତ୍ୱେ ଭ୍ୟୋଃ ସର୍ବଜ୍ଞ ବରବଜ୍ରିଣମ୍ ।
ଭକ୍ତ୍ୟାଽହଂ ସର୍ବ ଭାବେନ ବକ୍ଷେ ତତ୍ ସାଧନଂ ପରମ୍ ।
(ଉଡ୍‌ଡ୍ରୀୟାନରୁ କେଂଦବିଲ୍ୱ' ପ୍ରବନ୍ଧ, ବାକ୍‌ତତ୍ତ୍ୱ, ନକୁଳ ଚଂଦ୍ର ସାହୁ)

ନିଜ ପ୍ରେରଣାର ଉତ୍ସ 'ଜ୍ଞାନସିଦ୍ଧି'ରୁ ତାନ୍ତ୍ରିକ ଦେବତା ରୂପ ଭୁଜବର୍ଣ୍ଣ ଶୂନ୍ୟ ଓ ନୀରବତାର ପରିଭାଷା ବଂଚିବା ପୁରୁଷାର୍ଥରେ ପ୍ରାପ୍ତ ହୋଇଛନ୍ତି କବି । ଭୁଜବର୍ଣ୍ଣ ଏପରି ଏକ ଗୁଣାଭାସ ଯେ ଯାହା ଦେଶ କାଳ ସୀମା ଅତିକ୍ରମ କରି ମଣିଷ ଜାତିକୁ ଚିରକାଳ ଆନଂଦରେ ବୁଡାଇ ଦେଇଛି । ଏହା ନିଗୁଡ଼ କାବ୍ୟିକ, ନୁହେଁ ମିଥିକାଲ୍ କିଂବା ମେଟାଫିଜିକାଲ୍ । କବିତାର ଛାଂଚରେ ମାନବୀୟ କଳା ପ୍ରବଣତା ଅଭିଜ୍ଞତାର ବହୁମୁଖୀ ଅବରୋଧ । ନୂତନ କାବ୍ୟ - ଚେତନା ସଂଚାର କରିବା ଦିଗରେ ଏକ ସମୁଚ୍ଚ ଉଚ୍ଚାରଣ ।

ଦୁଇଟି ଜିନିଷ ଏହି ମହାନ୍ ଗ୍ରନ୍ଥରୁ ହୁଏ ଉପଲବ୍ଧ, ଗୋଟିଏ ମଣିଷ ପୂର୍ଣ୍ଣତାର ସ୍ୱପ୍ନ ଏବଂ ଅନ୍ୟଟି ତା' ମୁକ୍ତିର ସ୍ୱପ୍ନ । ସମୟ ଓ ସମୟହୀନତା, ଦୁଇଟି ଗୁଣକୁ ଆଶ୍ରୟ କରିଛି କବିତା । ଆଲୋନ୍ ଟାଟେଙ୍କ ତତ୍ତ୍ୱ to contenporize the past, ଅତୀତକୁ କବି ହରିହର ମିଶ୍ର ସମସାମୟିକ କରି କରିଛନ୍ତି ନିଃସମୟୀକରଣ । କବିତାର ଆଙ୍ଗିକରେ ଉଡ୍‌ଡ୍ରୀୟାନ ସଂସ୍କୃତିର ମହାସ୍ରୋତା ନୂତନ ରସ ଚେତନାକୁ କରିଛି ଜୀବନ୍ତ । କବି ମନର ବହୁଚିନ୍ତା, ବହୁ ପ୍ରତ୍ୟୟ ଓ ବହୁ ଯୁକ୍ତିତର୍କ - ସମସ୍ତଙ୍କୁ ସୌନ୍ଦର୍ଯ୍ୟ ଚେତନା ରସାନୁଭୂତିରେ ବଦଳାଇଛି । ସ୍ୱପ୍ନ ଧର୍ମୀ ବାସ୍ତବତା କଳ୍ପନାରେ କବିତାର ବଳୟ ଅଙ୍କନ କରିବାବେଳେ ଆଧୁନିକତା ଓ ପରମ୍ପରା ଶାଢ଼ୀର ଦୁଇ ଧଡ଼ିପରି ବାଦ ପଡ଼ି ନାହାନ୍ତି । କବିତା ଶିଳ୍ପ ଏବଂ ସ୍ୱପ୍ନ

ଜୀବନର ଖାଦ୍ୟ । ଆଧୁନିକତା ବସ୍ତୁ ନିରପେକ୍ଷ ଦ୍ରବ୍ୟ, ଗୋଟିଏ ଦୃଷ୍ଟିକୋଣ, ଆଙ୍ଗିକରେ ଶୈଳିକ ପରିବର୍ତ୍ତନ । 'ଅଚଳ ମହାମେରୁ' କେଉଁ କାଳରୁ ଗରୁ ହୋଇଅଛନ୍ତି ! ଘୋ ଘୋ ଧ୍ୱନି, ଉଚ୍ଛନ୍ନ ମର୍ଦ୍ଦଳ କାହାଳୀ, ଟାହିଆର ପୁଚ୍ଛ ମେଲି ମୟୂର ନାଚୁଛି ! ! ତମେ ଏକ ଅନୁଭବ ମୁଗ୍ଧ ଶିହରଣ, ରସର କଲ୍ଲୋଳ, କାବ୍ୟିକ ଭୂମିକୁ ମାୟାକଳ୍ପରେ କରିଛ ହିଲ୍ଲୋଳ, ଢ଼ଳଢ଼ଳ ଓ ଅନୁପମ ।

କବିତା ଓ ପ୍ରବନ୍ଧ ଲେଖି ବହୁ ପ୍ରସିଦ୍ଧି ପ୍ରାପ୍ତ ହର ପ୍ରସାଦ ଦାସ 'ଦର୍ପଣଶିଳା' ଆଲୋଚନାରେ ପ୍ରକାଶ କରିଛନ୍ତି, 'କବିତାକୁ ବିଷୟ ବସ୍ତୁ ସଜାଡ଼ି ବା କେବଳ ଗୁଡ଼ିଏ ସଂଚାରଣକ୍ଷମ ବାକ୍ୟ ଯୋଗାଡ଼କରି ସଚଳ କରାଇ ରଖାଯାଇପାରେ ।' ତାକୁ ଆଧୁନିକ ପଦ୍ୟ କୁହାଯାଇପାରେ । ଯାହାକୁ ଆଧୁନିକ କବିତା କୁହାଯାଏ ତାର ମର୍ମ ଯୋଗାଡ଼ ଯନ୍ତ୍ରରେ ନଥାଏ । ସିଏ ତାର ସଂପୂର୍ଣ୍ଣ ଭାବ ବିମ୍ବ ନେଇ ଓହ୍ଲାଏ । ଯତି ଓ ଛନ୍ଦ ବଦଳରେ ସଂରଚନାରେ ଗତି ଓ ଧ୍ୱନି, ବିଷୟ ବଦଳରେ ବୋଧ ଓ ଅର୍ଥ ବଦଳରେ 'ଆବେଦନ' ଆଧୁନିକ କବିତାକୁ ନିୟନ୍ତ୍ରଣ କରନ୍ତି । କଥାକୁ ଆହୁରି ସରଳ କରିଦେଲେ ହୁଏତ ଏଇଆ କୁହାଯିବ ଯେ ବାସ୍ତବତାକୁ ବାସ୍ତବତାର କଳ୍ପନା କି ଭାବରେ ଫଳୀଭୂତ କରାଏ ତାହା ହିଁ ଆଧୁନିକ କବିର କବିତ୍ୱ । (ଅନ୍ୱେଷିତା, ଜାନୁଆରୀ ୨୦୧୨) ।

ହରପ୍ରସାଦଙ୍କ ନିଷ୍କର୍ଷକୁ ହରିହର ଯେମିତି 'ସୃଜନର ମହାଦୃଶ୍ୟ'ରେ କରିଛନ୍ତି ସ୍ୱାଗତ । ଯନ୍ତ୍ରଣା ପିଷ୍ଟ ତା' ଇଚ୍ଛାନୁସାରେ ଗଢୁଛି ଓ ବଦଳାଉଛି । ଯାହା ସିଏ କରିଛନ୍ତି ! ସେ ବାସ୍ତବତାକୁ ତୁଚ୍ଛ ମନେ କରି ସେଠାରୁ ଉତ୍ତରଣ ଇଚ୍ଛାକରି କବିତା ଲେଖି ସିଏ ବାସ୍ତବତାକୁ କରିଛନ୍ତି ଅତିକ୍ରମ । କବିତାରେ ସ୍ୱର ରଚନା ଶୈଳୀର ଅନ୍ତର୍ଭୁକ୍ତ ଏବଂ ଶୈଳୀ ପାଇଁ କଳ୍ପନା ଅନ୍ତରାୟ ନୁହେଁ । କବିତା ପାଇଁ କଳ୍ପନାର ଆବଶ୍ୟକତା ରହିଛି, ହରିହର ମତ ରଖିଛନ୍ତି । 'ବାସ୍ତବତା ସାଂପ୍ରତିକତାର ଉପରେ ଦଣ୍ଡାୟମାନ, ତାକୁ ଉତ୍ତୀର୍ଣ୍ଣ ହେବାରେ ସାହିତ୍ୟରେ ଚିରନ୍ତନତାର ଆଭାସ ମିଳେ । ଏହା ମଧ୍ୟ ବାସ୍ତବତାକୁ ବାଦ ଦେଇ ସମ୍ଭବ ହୁଏ ନାହିଁ ।' କହନ୍ତି, 'ଯେତେବେଳେ ପାଠକ ହୃଦୟରେ ଭାବ ଓ ଆବେଗ ମୂର୍ତ୍ତିମନ୍ତ ହୁଏ, ସ୍ୱଚ୍ଛ ଭାବେ ପ୍ରକାଶିତ ହୁଏ କବିତାର ପ୍ରୟୋଗ ସେତେବେଳେ ସଫଳତା କରେ ହାସଲ ।'

ଜଣେ କବି ଭିତରେ କବିତା କେମିତି ପରିଗ୍ରହଣ କରେ ଶବ୍ଦ ରୂପ ? ନିଜ ଅନୁଭବ କବି ହରିହର ମିଶ୍ର କରିଛନ୍ତି ବ୍ୟକ୍ତ, ଭାବ ଥିଲେ ପ୍ରବଣତା ଆସେ । କେବଳ ଭାବପ୍ରବଣତା ସୃଷ୍ଟି ହେଲେ କବିତା ସୃଷ୍ଟି ହୁଏ ନାହିଁ । । ଭାବାବେଗ

ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରକାଶ ପାଇଲେ କବିତାର ଧାଡ଼ିଗୁଡ଼ିକ ଆପେଆପେ ଲେଖି ହୋଇଯାନ୍ତି । ନ ହେଲେ ପ୍ରକାଶ ମାଧ୍ୟମଟିଏ ସୃଜିବାକୁ ପଡ଼େ । ଭାବଟି ଗୁରୁତ୍ୱ ନିଏ । କ୍ରମେ ଆବେଗ ଗୌଣ ହୁଏ ଏବଂ ଆନୁସଙ୍ଗିକ ଭାବନା ସୃଷ୍ଟି କରେ ବିଭିନ୍ନ ସାଦୃଶ୍ୟାତ୍ମକ ଅନୁଭୂତି ଓ ରୂପ କଳ୍ପନା ଭିତରେ ଭାବଟି ବିସ୍ତାରିତ ଓ ଧ୍ୱନିତ୍ୱ ହୁଏ । ତତ୍କାଳର କବିତା ଯାହାକୁ ନେଇ ଭାବପ୍ରବଣତା ସୃଷ୍ଟିକରେ, ମନେ ହୁଏ ତା' ସହିତ ସଂପର୍କ ମୋର ଦୀର୍ଘ କାଳବ୍ୟାପୀ । ତତ୍କାଳର ନୂତନ ଅନୁଭୂତି ପ୍ରାଚୀନ ଅନୁଭୂତି ଭିତରେ ହଜିଯାଏ । (ସୃଜନର ମହାଦୃଶ୍ୟ: ହରିହର ମିଶ୍ର, ଅନ୍ୱେଷିତା, ୨୦୧୨ ଜାନୁଆରୀ ସଂଖ୍ୟା) ।

ତତ୍କାଳର ନୂତନ ଅନୁଭୂତି ଚତୁର୍ଦ୍ଧା ମୂର୍ତ୍ତି ସହିତ ରଥକୁ ବିଜେ କରୁଛନ୍ତି, ତାହା ପ୍ରାଚୀନ ଅନୁଭୂତି ଭିତରେ 'ଭୁଜବର୍ଣ୍ଣ' ରେ ଚମତ୍କାର ଭାବେ ହଜିଯାଉଛି । ଭାବଟି ଗୁରୁତ୍ୱ ନେଇଛି, ସାଦୃଶ୍ୟାତ୍ମକ ଅନୁଭୂତି ରୂପ କଳ୍ପନା ଭିତରେ ବିସ୍ତୃତି ଲାଭ କରିଛି । କବି ହରିହର ମିଶ୍ରଙ୍କ କବିତାରେ ଶ୍ରୀଜଗନ୍ନାଥ ଚେତନା, ସଂଧ୍ୟା ଦର୍ଶନ, 'ଅନେକ ଆଶ୍ଚର୍ଯ୍ୟ' ଓ 'ନେତ୍ରୋତ୍ସବ' ରେ ଶ୍ରୀଜଗନ୍ନାଥ ଚେତନାର ପରିପକ୍ୱ ସ୍ଥିତି । ଏଠାରେ ଯେମିତି ଘଟିଛି ହରିହରଙ୍କ ଜ୍ଞାନ ସିଦ୍ଧି ! ଜ୍ଞାନସିଦ୍ଧି ଓ କବିତ୍ୱସିଦ୍ଧିର ଇସ୍ତାହାର 'ଗୂଢ଼ପଦ' ଏକ ସ୍ୱପ୍ନ ଯାତ୍ରା ବା ସ୍ୱପ୍ନସୀମା । ସବୁଠି ପଦଚାରୀର ଶୂନ୍ୟ ବାୟୁ ମଣ୍ଡଳ ସ୍ମୃତି ପୂର୍ଣ୍ଣ । ନାନା ଅବ୍ୟବସ୍ଥା ଓ ଅସ୍ଥିରତା ପୂର୍ଣ୍ଣ ଆଧୁନିକ ଜୀବନ । ଏକୁଟିଆ ମଣିଷ, ପରିଚିତ ଆତ୍ମୀୟ ସ୍ୱଜନ ଭର୍ତ୍ତି ଥିଲେ ବି ! ଯମୁନାରେ ଭାସି ଯାଉଛି ବସୁଦେବ ମୁଣ୍ଡ ଉପର ବୋଝ, ଅନନ୍ୟୋପାୟ ସିଏ, ସାମ୍ନାରେ କର୍ତ୍ତବ୍ୟ ! ବଂଚିବାଟା ଏକ ଭୟାନକ ଅନୁଭବ । କଠୋର ବାସ୍ତବ ! ତାକୁ କୋମଳକରି ଦେଉଛି ଆସ୍ପୃହାର ଗୋଟିଏ ଲୋହିତ ଶିଖା ! 'ତୁମର ଅନେକ ଛାଇ', 'ତୁମେ କାମବ୍ରହ୍ମ', 'ଆମେ ତୁମ ଛାୟାନଟ', ଜିତୁ ଅବା ହାରୁ / ବଂଚୁ ଅବା ମରୁ ସବୁ ତୁମ ଇଙ୍ଗିତରେ । 'ସର୍ବସ୍ୟ ଧାତାରମଚିନ୍ତ୍ୟରୂପମ୍' ପୁନଶ୍ଚ - 'ଜୀବନଂ ସର୍ବଭୂତେଷୁ' (ଜ୍ଞାନ ବିଜ୍ଞାନ ଯୋଗ) ! ତୁମର ଅନୁଭବ ତୁମର ଉପାସନା ଓ ଅଭୀପ୍ସା, ଜୀବନର ଉଦ୍ଦେଶ୍ୟ କଳା ଚେତନାରେ ବଂଚିବାକୁ କରିଦେଇଛି ପବିତ୍ର । ନାନା ସ୍ମୃତି ଓ ସଂସ୍କାର ଗୁନ୍ଥି ହୋଇ କବିତାରୁ ଜଡ଼ତାକୁ କାଟି ଦେଇଛନ୍ତି ।

ସଚ୍ଚିଦାନନ୍ଦ ରାଉତରାୟ ମତ ରଖିଛନ୍ତି, ଆଙ୍ଗିକ ଦିଗରୁ ଦେଖିବାକୁ ଗଲେ ଆଧୁନିକ ସାହିତ୍ୟ ବହୁ ଦିଗରୁ ସମୃଦ୍ଧ । ଏଲିୟଟ୍ ଭାବନ୍ତି କବିର କାବ୍ୟକୃତିର ସବୁଠାରୁ ସ୍ୱକୀୟତମ ଅଂଶ ହେଉଛି ସେଇ ଯାହା ଭିତରେ କି ମୃତକବିମାନେ, ଆମର ପୂର୍ବପୁରୁଷମାନେ ନିଜର ଅମରତ୍ୱ ଜାହିର କରିଥାନ୍ତି । (ଆଧୁନିକ ସାହିତ୍ୟର କେତେକ ଦିଗ, ପୃଷ୍ଠା ୨୮) । ଓଡ଼ିଆ ଭାଷା ଜନ୍ମ ହେବା ଅର୍ଦ୍ଧ ସହସ୍ରାବ୍ଦ ପୂର୍ବରୁ

ପ୍ରାୟତଃ ଓଡ଼ିଆ କବି ଓ ସନ୍ଥ ଇନ୍ଦ୍ରଭୂତି ସଂସ୍କୃତ ଭାଷାରେ ସାରସ୍ୱତ ସାମ୍ରାଜ୍ୟଟିଏ କରିଥିଲେ ପ୍ରତିଷ୍ଠା । ଇନ୍ଦ୍ରଭୂତି ଓଡ଼ିଆ ଜାତି ଓ ମାଟିର ପୂର୍ବ ପୁରୁଷ, ଗୌରବମୟ ଅତୀତ, ତାଙ୍କ ଅମରତ୍ୱ 'ଭୁଜବର୍ଣ୍ଣ'ରେ ଜାହିର କରାଇଛନ୍ତି କବି ହରିହର ମିଶ୍ର । ହରିହର ମିଶ୍ରଙ୍କ କାବ୍ୟକୃତିର ସବୁଠାରୁ ସ୍ୱକୀୟତମ ଅଂଶ ଆରମ୍ଭ ଠାରୁ ଚତୁର୍ଥତମ ଛତ୍ର, ଯେଉଁଥିରେ ମୃତ କବି ଅମରତ୍ୱ ପ୍ରାପ୍ତ । ଆଗକୁ ରହିଛି ଅବଶ୍ୟ 'ଜ୍ଞାନସିଦ୍ଧି'ର ବିଲେପିତ ଚଂଦନପରି ସ୍ନିଗ୍ଧ ଉଜ୍ଜ୍ୱଳ ଛଟା । ମଣି ପୁରୁଷାଙ୍ଗ ଓ ପଦ୍ମ ସ୍ତ୍ରୀ ପ୍ରଜନନାଙ୍ଗ, ବୈଦିକ ଶିବଶକ୍ତି ତତ୍ତ୍ୱ । ସୁଭଦ୍ରିକା ନୈରାତ୍ମା, ସୁଦର୍ଶନ ବଜ୍ରଲିଙ୍ଗ ତେଜ । ଆଗକୁ କଳ୍ପନାର ଗତି ଅନୁଯାୟୀ କବିତାର ମୂର୍ତ୍ତିମାନ ଗଢ଼ାଯାଇଛନ୍ତି । ପାଖାପାଖି ଦୁଇଶତ ପୃଷ୍ଠା, 'ଭୁଜବର୍ଣ୍ଣ'ରୁ କବିତାର ଲୀଳା ବିଧୃତ କଳେବର ଆରମ୍ଭ, ସରିଲା ବେଳକୁ 'ଝୁଲଣ କି ତମାମ ଜୀବନ ?' ପାଖାପାଖି ବୈୟାଳିଶଟି ଶବ୍ଦର ଆଲୋକ ବର୍ଷା । ଅନେକ ଦିବ୍ୟାଂଶ କବିତା ବ୍ୟୂହରେ ମୂର୍ତ୍ତିମନ୍ତ ସର୍ବମୟ ବିଭୁ ସତ୍ତାର ମୀମାଂସା ବାଢ଼ିଛନ୍ତି । 'ସବୁରି ମାଲିକ ଏକ', 'ଲୀଳା ବିଧୃତ କଳେବର', 'ମୀରା ଏକାକିନୀ', 'ମହିମା ଓ ମଣିମା'; କବି ସାଲବେଗ ଏବଂ ଝୁଲଣ କି ତମାମ୍ ଜୀବନ ? ରାଜା ରବିବର୍ମାଙ୍କ ଗୋଟିଏ ଗୋଟିଏ ପେଣ୍ଟିଂ ଯେମିତି ! ମଣିଷ କଳ୍ପନାର ସାତ୍ତ୍ୱିକ ଓ ରାଜସିକ ରଙ୍ଗ-ରସ ଲଭିଛି ଏକଏକ ଭୋଗମୟ ନବଜନ୍ମ । କବିତ୍ୱର ସମ୍ମୋହନ କବିତାର କାଳ କଳା ଭିତରେ ମଜ୍ଜି ରହିଛି ।

କବିତା ସମୀକ୍ଷାର ବିଷୟ ନୁହେଁ, ଭୋଗ୍ୟ ବସ୍ତୁ । ଗୋଲାପର କି ସମୀକ୍ଷା କରାଯାଇ ହେବ ? କି ସମୀକ୍ଷାକରି ହେବ ପାନପତ୍ରରେ ଭର୍ତ୍ତି ଲାଲ ମଦିରାର ? Poetry is a love affair - a love affair with existence. 'ଦି ୱେ ଅଫ୍ ସୁଫି' ପୁସ୍ତକ, ରଜନୀଶ ରଖିଛନ୍ତି ଅଭିମତ, Poetry is an intoxication . Poetry makes one drunk with poet. But only drunkards know it, what exactly it is. ଯେମିତି ଗୋଟିଏ ଫୁଲର ସୌନ୍ଦର୍ଯ୍ୟକୁ ଉପଭୋଗ କର, ଠିକ୍ ସେମିତି କବିତାକୁ କର ଉପଭୋଗ ।

ହରିହର ମିଶ୍ରଙ୍କ କବିତା ପବିତ୍ର ଚେତନାର ପୁଷ୍ପ । କବିତା ଅସ୍ତିତ୍ୱ ସମ୍ବନ୍ଧରେ ରଜନୀଶଙ୍କ ମତ, Poetry is a bridge between our tiny self and infinite and the absolute. ଅସୀମଙ୍କ ସହିତ ଆମ କ୍ଷୁଦ୍ର ସତ୍ତାର ସଂଯୋଗ ସେତୁ କବିତା । କବିତା ସର୍ବୋଚ୍ଚ ସତ୍ୟଙ୍କ ସହିତ ମାନବ ପ୍ରାଣ ଚେତନାର ସଂପର୍କ । କ୍ରିଏଟିଭିଟୀ ଇଜ୍ ଇନ୍‌ଫିନିଟି, ସେହି ଇନ୍‌ଫିନିଟିର ଛବି କବିତାରେ କବି କରିଛନ୍ତି ପେଣ୍ଟିଂ । ମାନବୀୟ ଆବେଗ, ଆଚରଣ ଓ ଅନୁଭବର ପ୍ରତୀକରେ ଅସୀମ ପୁଲକର

ପୁଷ୍ପ କବିତା ରୂପରେ ଗଠିତ ଓ ସଂଘଟିତ ।

ଆଧୁନିକ ପଦ୍ୟ ବା ପାରମ୍ପରିକ ଶୈଳୀଠୁ ଭିନ୍ନ ଆଧୁନିକ କାବ୍ୟ ଶୈଳୀ । କବିତାର ଆବେଦନରେ ଥାଏ ଆଧୁନିକତାର ରୂପ, ରସ ଓ ସ୍ପର୍ଶ । 'ଭୁଜବର୍ଣ୍ଣ' ସେହି ସୃଜନ ଶ୍ରେଣୀୟ ମର୍ମକୁ ନିଜ ଭିତରେ କରିଛି ସଂରକ୍ଷିତ । ଏଥିରେ ନାହିଁ ଯୋଗାଡ଼ ଯନ୍ତ୍ର ପ୍ରକ୍ରିୟା । ସ୍ୱତଃସ୍ଫୂର୍ତ୍ତ ଉଚ୍ଚାରଣର ନଦୀଟି ତାହାର ଗତି, ଯତି, ଧ୍ୱନି ଓ ଭାବବୋଧର ବିଚ୍ଛୁରଣ ଭିତରେ ଗୋଟିଏ ନୂଆ ସୂର୍ଯ୍ୟର ଅବିର ରଙ୍ଗ ନେଇ ସମୟ ସମୁଦ୍ର ଉପରୁ ଉଠି ଆସିଛି । ମହାରଣା ସେବକ କାଠରେ ଶ୍ରୀଜୀଉଙ୍କ ନବକଳେବର ମୂର୍ତ୍ତି ଗଠନ କରନ୍ତି, ଏଠାରେ ଶବ୍ଦରେ ହରିହର ମିଶ୍ର କରିଛନ୍ତି ନବକଳେବର ମୂର୍ତ୍ତି । ଆଧ୍ୟାତ୍ମିକତା ଓ କବିତା ସାମାଜିକ ଦୃଷ୍ଟିର ସିମ୍ବଲମାନଙ୍କରେ ଧାରଣ କରିଛନ୍ତି 'ଭୁଜବର୍ଣ୍ଣ', ଶବ୍ଦରେ ପ୍ରତିମା ଉପସ୍ଥାପନର ମହୋତ୍ସବ । ଗୋଟିଏ ସାମାଜିକ ପବିତ୍ର ଚେତନାର ପଦ୍ମ ଓ ତାହା ପାଖୁଡ଼ାମାନଙ୍କ ଚିତ୍ର ଭୁଜବର୍ଣ୍ଣ । ଶ୍ରୀଜଗନ୍ନାଥ ସଂସ୍କୃତିର ଚିତ୍ରାୟନ ଭୁଜବର୍ଣ୍ଣ । ଭୁଜବର୍ଣ୍ଣ ପୁରୀ ସାଂସ୍କୃତିକ ଭୂଗୋଳର ତିନିଶତ ପଁଷଠୀ ଦିନ, ମାତ୍ର ଏହା କବିତାର ଭାଷାରେ ଲିପିବଦ୍ଧ ।

ଆଗକୁ 'କୃଷ୍ଣଗର୍ତ୍ତ', ବିଜ୍ଞାନର ରହସ୍ୟ, ସୃଷ୍ଟିର ବିସ୍ମୟ କିଂତୁ କବିତା ପାଇଁ ଚିତ୍ରପଟ୍ଟ:

'ଅନ୍ଧାରରେ ଆଲୁଅର ସ୍ୱପ୍ନ ଥାଏ
ଓ ଆମ ପ୍ରେମର ବୟାନ ଶୁଣୁଥାଏ ।'

ଅନ୍ଧାରରେ ନାନାଦି ଇଚ୍ଛାର ରକ୍ତବୀର୍ଯ୍ୟ ନିଏ ଜନ୍ମ । ଗୋଟିଏ 'ମୁଁ' ଭିତରୁ ଅସଂଖ୍ୟ 'ମୁଁ'ର ବଖରା କବାଟ ଖୋଲିଛି । ଏହି ମୁଁମାନେ କବି ବ୍ୟକ୍ତିତ୍ୱର ନିଛକ ବହିର୍ରୂପାୟନ ନୁହନ୍ତି । ଏମାନେ ଅଦୃଶ୍ୟ ପୁଷ୍ପୋତ୍ସବର ପବନ । ଗରୁଡ଼ ସ୍ତମ୍ଭକୁ ଆଲିଙ୍ଗନ କରୁଥିବା ହସ୍ତ । ଆଧ୍ୟାତ୍ମିକ ଯୌବନର ଅଭୀପ୍ସିତ ନବ ଉନ୍ମେଷ । ବିଶର ମହାନ୍ତିଭଳି ସତ୍ୟ ସନାତନର ଟୁକୁଡ଼ାଟିକୁ କପାଳରେ ସ୍ପର୍ଶ କରାଇବା କର୍ତ୍ତାପଣ ତା ପ୍ରେମର ଗଳିରେ ସାଇତିଛି । କାମନା କରିଛି, ଅସ୍ମିହାର ଗାଢ଼ ବର୍ଣ୍ଣରେ ଆଙ୍କିଛି, 'ସର୍ବ ଶୂନ୍ୟ ଉଭା ହୁଅ !' ନିଜକୁ ଦେଖେ, ଶିଳାଦର୍ପଣରେ ବିଶ୍ୱକୁ ଦେଖେ, ସବୁ ତୁମଭଳି ଛାଣ୍ଟକାଣ୍ଟ ଦିଶେ !' ନିମ୍ନରୁ ଆବାହନର ଯେଉଁ ଶିଖା ଅପ୍ରତିହତ ଭାବେ ଉଠିଛି ତାହାର ଯଥାଯୋଗ୍ୟ ଉତ୍ତର ଦେଇଛି ଊର୍ଦ୍ଧ୍ୱରୁ ଅବତରିତ କରୁଣାର କଳ୍ପନା । କବିତା କଳ୍ପନା, ଅଭୀପ୍ସା ଓ ଏକ ଦିବ୍ୟ ଚେତନାର ଆବାହନ ମୂର୍ଚ୍ଛନା । ଫିଜିକାଲ୍ ପୋଏଟ୍ରୀ ବଦଳାପାଗପରି ମେଟାଫିଜିକାଲ୍ ଦିଶିଛି କିଂବା ମେଟାଫିଜିକାଲ୍

ପୋଏଟ୍ରୀ ନିଜକୁ ପିଓର୍ ପୋଏଟ୍ରୀ ଫର୍ମ୍‌ରେ ବାଢ଼ିଛି ।

କଚ୍ଛବଟର ଆତ୍ମା ଅନେକ ପୁରୁଣା ଏବଂ ଅନେକ ପୁରୁଣା ମନୁଷ୍ୟର ଆତ୍ମା । ରଥରେ ଥରେ ବାମନଙ୍କୁ ଦେଖିବା ପରେ ପୁନର୍ଜନ୍ମ ନ ବିଦ୍ୟତେ ? ପ୍ରବେଶ ଓ ପ୍ରସ୍ଥାନ ଅଭିନୟ ସରିଯିବ ? ଅସ୍ତିତ୍ୱର ମହାଦ୍ୱଂଦ୍ୱ ଭିତରେ କାବ୍ୟ ପୁରୁଷ ଭୁଲିଯାଏ ତା' କର୍ତ୍ତାପଣ, କିଂତୁ ତା' ହୃଦୟେ ଖୋଦିତ ହୋଇରହେ ଯାହା / ତାହା ହିଁ ତ ପ୍ରେମ ! ତାହା ଗୋଟିଏ ଶ୍ରୀ, ସେହି ନାମ ! ବିଷୟ ବନସ୍ତର ଗଜ ଝୁଲିଝୁଲି ପ୍ରାର୍ଥନା କରିଛି, 'ମତେ ତମେ ବାନ୍ଧି ରଖ / ମୋଟାମୋଟା ଶିଆଳି ଲଟାରେ / ଓ ଝୁଲାଇ ଦିଅ ଜନ୍ମ ମୃତ୍ୟୁ ଘେରା ମୋର / ମାଟି ଆଉ ଆକାଶ ଉର୍ଦ୍ଧ୍ୱରେ... ।'

ନିଷିଦ୍ଧ କାଳର ଆପଣା ପ୍ରେମର ଦୃଶ୍ୟ, କୋଇଲି ବୈକୁଣ୍ଠରେ ଦାରୁବ୍ରହ୍ମଙ୍କ ସମାଧି ରାସ, ଗୁପ୍ତ ସ୍ଥଳ, ପଞ୍ଚତନ୍ତ ଅନ୍ଧାରକୁ, ଅକ୍ରିୟାବାଦକୁ, ଆଜି ପ୍ରଭୁଙ୍କ ଆତ୍ମ ବିସର୍ଜନ ବେଳ ! ବାଙ୍କି ମୁହାଣରୁ ବାଙ୍କିଆରେ' ପ୍ରତୀକ ମାଳ ଭିତରେ ପରା ଓ ଅପରାର ରାସ, ସୁବର୍ଣ୍ଣ ଦୀପ୍ତିରେ ପ୍ରକାଶିତ । ପ୍ରତୀକ ସ୍ମରଣ କରାଇଦିଏ ମାଦଳାପାଂଜୀ ବର୍ଣ୍ଣିତ ବାରମାସ ତେର ଓଷା । ପ୍ରେମ, ମୈତ୍ରୀ, ଭକ୍ତି ଓ ରହସ୍ୟମୟ ଜୀବନଚର୍ଯ୍ୟାର ଦିସ୍ତାଦିସ୍ତା ପୁରୁଣା ପୃଷ୍ଠା କବିତାର ନିଃଶ୍ୱାସରେ ହେଉଛି ସବୁଜ କେମିତି !! କେମିତି ହେଉଛି ସାଗର ଆରତି ! ପାଣିରେ ପାଣିରେ ଭାସେ ବ୍ରହ୍ମ ଦାରୁପରି କେମିତି ଏ ଜୀବନ ଜ୍ୟୋତି ! କବିତା ଲମ୍ବିଛି, ବରଂ ଆକାଶକୁ ରଙ୍ଖାତା କରୁ ପକ୍ଷୀ, ହେଉ ଅକ୍ଷର ବିଲିବିଲା, ଶହୀଦଙ୍କ ଇତିହାସପରି ଜୀବନ ଜ୍ୟୋତି ! ଭାରି ଗତାନୁଗତିକତା ଭିତରେ ସୁଦାମାର ସୁନା ନଅରପରି ଏଇ ଶବ୍ଦର ନଅର !

ଭଲ ପାଇବା ହିଁ ଜୀବନର ଶେଷ କଥା, ଆଧୁନିକ ବାଗରେ ସେଇ ଭଲ ପାଇବା ସୁନାର ଦର ଯେତେବେଳେ ମୂଲେଇ କରେ କାବ୍ୟ ପୁରୁଷ, ସିଏ ଅନୁଭବ କରେ, 'ମୋ ପ୍ରେମ ଥିଲା, ଆଜି ଅଛି ।'ବୋଧହୁଏ ଏହା ହିଁ ଅନ୍ତର୍ଚେତନାର ସର୍ବଶ୍ରେଷ୍ଠ ପ୍ରଛନ ଓ ନିଷିଦ୍ଧ ଆଧୁନିକତା, ଭୁଜବର୍ଣ୍ଣ ରୂପେ ଉଚ୍ଚାରିତ କରିଛି ଶୂନ୍ୟତାର ଉପପାଦ୍ୟ । କବିତାର ଏହି ଶୂନ୍ୟ ଇଲିୟଟ୍‌ଙ୍କ Hollow ନୁହେଁ, ଏହା ବୌଦ୍ଧ ସନ୍ଥ ନାଗାର୍ଜୁନଙ୍କ ଅଶୂନ୍ୟ । ଶୂନ୍ୟଙ୍କ ଅଶୂନ୍ୟ ରୂପ ଭୁଜବର୍ଣ୍ଣ, ବ ଯ ର ଳ ! ଅଜୀବଙ୍କ ଜୀବ ରୂପ ।



## ସମକାଳ କାବ୍ୟତତ୍ତ୍ୱ

## କବି ହରିହର ମିଶ୍ରଙ୍କ 'ଗୂଢ଼ପଦ': କଳାର ରହସ୍ୟ

ଓଡ଼ିଆ କାବ୍ୟିକ ପରମ୍ପରାରେ କବିସୂର୍ଯ୍ୟ ବଳଦେବ ରଥଙ୍କ 'ସର୍ପଜଣାଣ' କବିତାଟିର ସ୍ଥାନ କେତେ ଉର୍ଦ୍ଧ୍ୱରେ ତାହାର କଳ୍ପନା ଅସମ୍ଭବ । କବିତ୍ୱକୁ ସେଠାରେ ଇନ୍ଧନ ଯୋଗାଇଛି ଭକ୍ତି, 'ବାଧିଲା ଜାଣି' ଭକ୍ତ ଗୁହାରି କରିନାହିଁ, ସିଏ ପୂର୍ଣ୍ଣ ସମର୍ପିତ ଦେହ, ମନ ଓ ପ୍ରାଣ, ତେଣୁ କହିଛନ୍ତି ମତେ ଦଣ୍ଡିତ କର ! ନହେଲେ ଆଜି ଗାଳି ଦେଇ ମନୋରଥପୂର୍ଣ୍ଣ କରିବି ବା ମନ ଭର୍ତ୍ତି ଗାଳି ଦେବି । ଆପଣଙ୍କୁ କହିବି ସାପ, କାଳ ସର୍ପ ଆପଣ କବଳ କରୁଛ ପ୍ରାଣ !' ଚେତନାର ଫୁଲବନରେ ଏଠାରେ ଯେଉଁ ଆତ୍ମୀୟତାର ସୁବାସ ଶ୍ରୀଜଗନ୍ନାଥଙ୍କ ପାଇଁ କବିତାରେ ବିତରିତ ହୋଇଛି ତାହା ଓଡ଼ିଆ କବିତାକୁ କରିଛି ଧନ୍ୟ । ପ୍ରଭୁ ପାଇଁ ସମର୍ପିତ ଏହି କବିତାର ମାଲ୍ୟ ପାରିଜାତପରି ଅମ୍ଳାନ । ପରମ୍ପରାର ଏହି ମହାନ୍ ଭୂମି ଉପରେ ନୂଆ କଳ୍ପନାର କୁସୁମ ବନଟିଏ ରଚନା କରିଛନ୍ତି କବି ହରିହର ମିଶ୍ର । ତାଙ୍କ ଶବ୍ଦ ଉପବନ 'ଗୂଢ଼ପଦ', ସବୁରି ପ୍ରାଣ ପବନ ଶୋଷୁଥିବା କାଳସର୍ପ / ଟାହିଆ ତା' ଫଣା', ଚିତ୍ରର କରାଯାଇଛି କଳ୍ପନା । ବିଗତ ଦୁଇତିନି ଦଶନ୍ଧି ତଳେ ସ୍ୱର୍ଗତ ବିନୋଦ ନାୟକ ଗୋଟିଏ କବିତା ଲେଖିଥିଲେ 'ସରୀସୃପ' ଏବଂ ତାଙ୍କ ପୁସ୍ତକ 'ସରୀସୃପ ଓ ଅନ୍ୟାନ୍ୟ କବିତା' ଉଚ୍ଚ ପୁରସ୍କୃତ ହେବା ହେତୁ ଖୁବ୍ ହୋଇଛି ଆଲୋଚିତ । ସେ ସରୀସୃପ ସୃଷ୍ଟିର ଭୂମିରେ ଥିଲା ଡ଼ି.ଏଚ. ଲରେନ୍ସଙ୍କ ପ୍ରସିଦ୍ଧ

'ସ୍ନେକ' କବିତାର କଳାତତ୍ତ୍ୱ । ଆଧୁନିକ କଳାତତ୍ତ୍ୱ ଦୃଷ୍ଟିରୁ 'ସରୀସୃପ'ର ପରବର୍ତ୍ତୀ ରିଫାଇନ୍ ଚିତ୍ର 'ଗୂଢ଼ପଦ'! 'ଗୂଢ଼ପଦ' ଏକ ଟ୍ରୁ ଅଟ୍, ଯେମିତି ପୁଷ୍ପ ପ୍ରକୃତିର ସୁନ୍ଦରତମ ଦ୍ରବ୍ୟ କିଂତୁ ତା' ଚେର ପୋତିହୋଇ ରହିଛି ଭୂମିରେ! ଦୁଇଟି ପଂକ୍ତିରୁ ଉଦ୍ଧୃତ କରି ଲରେନ୍ସଙ୍କ ରଚନା ଶୈଳୀ ସୂଚିତ କରିଛନ୍ତି –

The intellect shapes, the emotions feed the poem
Whose roots are in the senses, whose flower is imagination

ଲରେନ୍ସଙ୍କ କବିତାର କେନ୍ଦ୍ରିୟ ଇମେଜ୍ 'ସ୍ନେକ'ଟି ବାଇବେଲ୍ ସମ୍ବନ୍ଧୀୟ ଓ ଶାସ୍ତ୍ରୀୟ, କେତେକ ପରୋକ୍ଷ ଉଲ୍ଲେଖ ଉପରେ ଆଧାରିତ, 'ଦି ସ୍ନେକ୍ ଇନ୍ ଦି ଗାର୍ଡ଼େନ ଅଫ୍ ଇଡ଼େନ୍, ଦି ସର୍ପେଣ୍ଟ ଅଫ୍ ଇଟରନିଟୀ!' ଅଥଚ ହରିବାବୁଙ୍କ ସର୍ପଟି ନିଜେ ମହାକାଳ! ବାଇବେଲ୍‌ର ସର୍ପେଣ୍ଟ ଈଶ୍ୱରଙ୍କ ଶତ୍ରୁ 'ଇଭିଲସ୍ ପର୍ସୋନିଫିକେସନ୍! ସିଏ ଇଭ୍ ଓ ଆଦାମଙ୍କୁ ପ୍ରବତାଇ ନିଷିଦ୍ଧ ଫଳର ସ୍ୱାଦ ଚଖାଇଛି । ଈଶ୍ୱରଙ୍କ ପ୍ରଥମ ଡ଼ିସ୍‌ଓବିଡ଼ିଏନ୍ସ କରାଇ ଆଣିଛି 'ଡ଼େଥ୍ ଇନ୍ ଟୁ ଓ୍ୱାର୍ଲଡ଼' 'ଉଇଥ୍ ଲସ୍ ଅଫ୍ ଇଡ଼େନ୍' (ପାରାଡ଼ାଇଜ୍‌ଡ଼ ଲଷ୍ଟ୍ ବୁକ୍ ଓ୍ୱାନ୍) । କାଲନିନ୍ସ ସୂଚିତ କରିଛନ୍ତି, The snake as the mediteranean symbols for the underworld powers, emissary the chthonian daities (associated with both fertility and death). ଉତ୍ପାଦିକା (ଯୌନ)ଶକ୍ତି ଓ ମୃତ୍ୟୁ ସହିତ ସଂଶ୍ଳିଷ୍ଟ ଏକ ଦେବତାର ଦୂତ । ପୁନଶ୍ଚ The snake is the spirit of the great corruptive principle (ନୋଟସ୍ ସିଲେକ୍ଟେଡ଼୍ ପୋଏମ୍ସ, ଡ଼ି.ଏଚ୍. ଲରେନ୍ସ, ପୃଷ୍ଠା ୩୧୦) । ଲରେନ୍ସଙ୍କ କବିତାଟି ପ୍ରସିଦ୍ଧର ଅନ୍ୟ କାରଣ ଏହାର ଅବିମିଶ୍ରିତ ମୁକ୍ତଛଂଦ । ଜର୍ଜ ମାକବେଥ୍ ଲେଖିଛନ୍ତି, The poem exhibits lawrence's tendency to rely on repetitions in thought and phrasing to keep this verse 'alive'. ଭାବନା ପୁନରାବୃତ୍ତି ଉପରେ କବି ଲରେନ୍ସଙ୍କ ଅଭିବ୍ୟକ୍ତି ଶୈଳୀ –

A snake came to my water trough
On hot, hot day, and I in pyjamas for the heat,
To drink there.
x x x
Some one was to my water trough
And I, like a second comer, waiting
x x x

The voice of my education said to me

He must be killed,

ଲୌକିକ ଅନୁଭବ ସୃଜନ ଉପାସନାକୁ ଶାବ୍ଦିକ ବିଳାସରେ ସ୍ୱଚ୍ଛ, ସାବଲୀଳ ସୁନ୍ଦର ଇନ୍ଦ୍ରିୟଗ୍ରାହ୍ୟ ବିମ୍ୱରେ ବାଢ଼ିଛି । କବିଙ୍କ ନିଜ ଚଳନ୍ତି ଜୀବନ ଓ ଗ୍ରୀଷ୍ମ ଋତୁର ପରିବେଶ, ଅସହ୍ୟ ଗରମ! ତୃଷିତ ସାପଟିଏ ପଶି ଆସିଛି 'ଟୁ ଡ୍ରିଙ୍କ୍', ଈଶ୍ୱରଙ୍କ ମିରାକୁଲସ୍ ଇଚ୍ଛା! ଏହି ସଂଳାପୀୟ ଶୈଳୀରେ ନାଟକୀୟ କବିତା ସଜ୍ଜା 'ଗୂଢ଼ପଦ' ଆର୍ଟର ବସ୍ତୁ ଚେତନା –

ସାପ ଧରା ସଂସ୍ଥା ଆମ ସହରରେ କେଉଁଠି

ତା' ଫୋନ ନମ୍ୱର କାହାକୁ ଜଣାଅଛି

ଟିକେ କହିବେକି

ମୋ ଘରେ ବହୁ ଦିନରୁ ସାପଟିଏ ଘୂରି ବୁଲୁଛି

ଏଇଲାଗେ... ଫଣା ଟେକି ବସି ଥିଲା ତକିଆ ଉପରେ

ଚାଲିଗଲା / ଡ୍ରେସିଂ ଟେବୁଲ୍ ତଳେ କେଉଁଠାରେ / ଗାତଟିଏ ଥିଲା ।

କବିତାଟି ପାଞ୍ଚଟି ପର୍ବରେ ବିଭକ୍ତ ଏବଂ ଏଇଠି ସରିଛି ପ୍ରଥମ ପର୍ବ । ଦ୍ୱିତୀୟ ପର୍ବ – କେହି ଆସିବାର ଦେଖି ପୁଣି ଛପି ଗଲା

ଭାବିଲି ସେ ଦିଶିବନି

ତା' କପ୍‌ରେ ।

x x x

ଭାଇ ଭଗାରି ଯେତେ ସାହି ବସ୍ତି ଲୋକେ

ସୋଫା ଉପରେ ବସି ମୋର

ସାପକୁ ଧରିବାରେ କେତେ ଖର୍ଚ୍ଚ ହୋଇପାରେ

ହିସାବ କରନ୍ତି

x x x

ସାପ ଅଛି ମୁଁ ନିଶ୍ଚିତ

ଛତିଶ ଗଡ଼ କି ଦନ୍ତୱାଡ଼ାରେ ନୁହେଁ

...ବାଘ ଭାଲୁ ହାତୀ ସେଠି ଥାଇପାରେ ।

କେତେ ଖର୍ଚ୍ଚ ହେବ, They measure all, of other excellence / Not emulous, nor care who them excels; (Paradise Lost book VI, Line 821-22) ।

ଜୀବନ ଚକ୍ର ଠାରୁ ଭୟ ବଦଳୁଛି; ସାପ ନିଶ୍ଚିତ ଗୋଟିଏ ଭୟର ପ୍ରତୀକ । ବାଘ ଭାଲୁଥିବା, ନକ୍ସଲ ଜଙ୍ଗଲ, ଭୟଠୁ ଅଲଗା ଗୋଟିଏ ସୂକ୍ଷ୍ମ, ସୁତୀବ୍ର, ବିଷାକ୍ତ ଓ ସୁନ୍ଦର ଭୟ ଲୁଚିଛି ଆଧୁନିକ ଜୀବନ ପ୍ରକୋଷ୍ଠ ଭିତରେ! ସେ ଭୟ ସହିତ ଚିଟ୍‌ଫଣ୍ଡ୍ ଠକେଇ କ୍ଷତି, କୋଇଲା ଦୁର୍ନୀତି, ବୋଧଗୟା ବୋମାମାଡ଼ ବା ତୃତୀୟ ସାମୁଖ୍ୟ ଗଠନ ଭୟ ନୁହେଁ ତୁଳନୀୟ! ବଂଚି ରହିବା ଭୟ ତଳେ ସବୁ ଭୟର ସ୍ଥାନ । ତୃତୀୟ ପର୍ବ - ମାହାରାଣୀ ନିତି ମତେ / ରକତ ଖିଆ ବୋଲି ଶୋଧୁଥାଏ / ଦଶଟଙ୍କା ନେଲା ପରେ ସେ କହେ / ସେ ଦେଖିଛି ସାପଟାକୁ ନଳା ଦେଇ / ପଶିଛି ମୋ ଘରେ... । ଏଇଠି ମିଲଟନଙ୍କ ଗୋଟିଏ ଧାଡ଼ି ଦିଶେ - Live, in what state, condition or degree (Book VIII, L-176) ନାୟକର ଅସ୍ତିତ୍ୱରେ ସାପକୁ ଚିହ୍ନି ପାରିଛି ଦାଣ୍ଡ ପହଁରୁଥିବା ମେହେନ୍ତ୍ରାଣୀ । ବିକୃତ ଓ ବିଶ୍ୱାସ ମଧ୍ୟରେ ତଫାତ୍ କ'ଣ ସ୍ପର୍ଶ କରି ବୁଝିବା ଅବସର ନ ଥିବା କାମନା ସାପ!

ସାପ ମତେ ଆସ୍ତେଆସ୍ତେ ଦଂଶୁଥାଏ

ଦଂଶିଦଂଶି ରକ୍ତ ମୋର ନୀଳ କରିଦିଏ

ଏହା କାବ୍ୟ ନାୟିକା ଅବସ୍ଥା, ତା' ପରିବେଶ ଓ କାମନା ଜନିତ ଅସୁସ୍ଥତା । ଅନ୍ୟ ପକ୍ଷରେ ସେ ଜଣେ ସାମାଜିକ ମଣିଷ । ତାର ଅଛନ୍ତି ସହି ବସ୍ତି ଲୋକ । ବିଷ ଭିତରେ ବିଷ ଭାଇରସ୍‌ପରି ତା' ଜୀବନ, 'ମୁଁ ନିଶ୍ଚିନ୍ତ ଯେ ବିଷ କାଟୁ କରିବନି ମୋତେ / ଏଥର ମୁଁ ନିଧଡ଼କରେ ଟିକେ ଶୋଇପାରେ', ସେ କରିଛି ଉଚ୍ଚାରଣ । ସମାଜ ଆଡ଼କୁ ଅନାଇଲାବେଳେ ସିଏ ଦେଖୁଛି ଯୌନ ଯନ୍ତ୍ରଣାର ଆରକ୍ତ ମୁହଁ ଏବଂ ଛଟପଟ ହେଉଥିବା ଜୀବନ!... 'ମିସ୍‌କଲ୍ ଆସିଥିବା / କେଉଁ ଏକ ଭୁଲ୍ ନମ୍ବରରେ / ନିଷିଦ୍ଧ ଫଳ ଖାଇ ସଁ ସଁ ହେଉଥାନ୍ତି / ଆଦମ୍ ଓ ଇଭ୍‌ମାନେ!' ଯେମିତି ଏହା ଲଷ୍ଟ ଅଫ୍ ଇଡ଼େନ ଚିତ୍ର ଓ ନିଷିଦ୍ଧ ଫଳ ସ୍ୱାଦ! ପରକୀୟା ପ୍ରଲୋଭନ ଓ କଂଚାମାଂସର ଆନଂଦ! ଆଗକୁ ସୁଖ ପୁଷ୍ପ ବୃନ୍ତ ତଳ କଣ୍ଟା କ୍ଷତର ଜ୍ୱାଳା, ଗର୍ଜି ଉଠେ ସୈତାନ ନିଜ ଘର ଆପଣା ପତ୍ନୀରେ, କୁରୁସଭା ମନେ କରି, ଅଧ ରାତି ଲ୍ୟାଣ୍ଡ୍ ଲାଇନ୍‌ରେ! (ପୃଷ୍ଠା ୧୧) । ଏଠାରେ Vital ଇମୋସନ୍‌ମାନଙ୍କ ସାମର୍ଥ୍ୟ କଳା ଶକ୍ତିର ଜଟିଳତାରେ ହୁଏ ଅନୁଭୂତ । ଏହା ଭାଇଟାଲ୍ ଓ ନିଷ୍ଠାପୂର୍ଣ୍ଣ ଆବେଗ ଯାହା 'Mind's connivance' କଳା ଓ ଜୀବନ

ପ୍ରତି ହୋଇଛି ପଥ ପ୍ରଦର୍ଶକ । ଆଧ୍ୟାତ୍ମିକ ଚେତନାରେ ସର୍ପେଣ୍ଟ କରିଛି ଇଭ୍ ଓ ଆଦାମକୁ seduce । ସାମାଜିକ ଜୀବନରେ ଏକୁଟିଆ ରହୁଥିବା ପୁରୁଷଙ୍କୁ କରିଥାନ୍ତି ନିଛ ବର୍ଗ ସେବିକା । ରକ୍ତଖିଆ ଶୋଧୁଥିବା ମାତ୍ର ଦଶଟି ଟଙ୍କାରେ ପଲ୍ଲବିତ କରାଇପାରେ ତା' ଖରାପ କାମ ପାଇଁ ମନ୍ତ୍ରଣା (connivance) ଇମୋସନ୍ସ! ଏଠାରେ କେହି ବୋଧ କରି ନାହାନ୍ତି ଇଭ୍ ଓ ଆଦାମପରି ସେଲ୍ଫ କନ୍‌ସସନେସ୍!

ଦୁଇଟି ତରଙ୍ଗର ଯୌଗିକ ସ୍ଥିତି ସୁଖମୟ ଜଣକ ପାଇଁ ତ ଅନ୍ୟ ଜଣକ ପାଇଁ ସ୍ୱାର୍ଥ ସାଧନ ବା ଅର୍ଥ ଲାଭ! ଏଠି, ଦି ଆକ୍ଟ ଇଜ୍ ସିନ୍, କେହି ଅନୁଭବ କରୁନାହାନ୍ତି ଏବଂ ଦୁହେଁ ଭାବୁନାହାନ୍ତି' We have sinned! ନିଜ ନିଜର ଆଇଡ଼ିଆକୁ ଦୁହେଁ thought form ରେ ଗ୍ରହଣ କରିଛନ୍ତି । ଇଣ୍ଟେଲେକ୍‌ଚୁଆଲୀ ଓ ସ୍କିଲ୍‌ଫୁଲୀ ଇମୋସନ୍‌କୁ ବର୍ଣ୍ଣିତ କରାଯାଇଛି । ଅଶ୍ଳୀଳ ଯୌନ ଗନ୍ଧଠାରୁ କଳା ପାଠକ ବୋଧଗମ୍ୟତାର ତରଙ୍ଗକୁ ଅନ୍ଧକାରରେ ରଖିଛି । ଚୋଟ ମାରିବା ସିମ୍ବଲ ଅଫ୍ ସେକ୍ସ ଆକ୍ଟ ଏବଂ ସେହିପରି 'ଟୁ କିଲ୍' ସିମ୍ବଲ ମଧ୍ୟ ଶ୍ରାବ୍ୟ ସହବାସ ଫିଲିଂ ।

ଚତୁର୍ଥ ପର୍ବ, ନିରାପଦ ପରୀକ୍ଷିତ ପ୍ରକୋଷ୍ଠ, ଅଥଚ – 'ସର୍ପ ଥାଏ ଅଦୃଶ୍ୟରେ' ଏବଂ 'ସର୍ପଟିଏ ଶୋଷକ' । ଏହି ପର୍ବ ପରିଣତି ବେଳକୁ କବିତା ଚକଡ଼ାରେ 'ସ୍ତୁତି' ଓ ରଥ ଭିଡ଼ା ସହିତ ଘଣ୍ଟ ଓ ଡ଼ାହୁକ ଡ଼ାକର ପ୍ରତୀକମାଳ!

ପଞ୍ଚମ ପର୍ବ ଶେଷପର୍ବ, ଦିନରାତି ତାହାରି ଚୋଟରେ ଅଚେତ! କିଏ ଅବା ଖୋଜିପାରେ ସେ ସର୍ପକୁ? ମୋ ଘରୁ ନିର୍ଦ୍ୱଂଦ୍ୱରେ ଘୂରିବୁଲେ ଚରାଚରେ ଅତି ନିର୍ଭୟରେ ପୁଣି ଶରୀରର ପ୍ରତି ଚକ୍ର ଓ ପ୍ରତି ନିଃଶ୍ୱାସରେ!! 'ଗୂଢ଼ପଦ'ର 'Brilliant Exposure'ଘଟିଛି । 'ଗୂଢ଼ପଦ' କବିଙ୍କ ଦି ଟ୍ରୁ ଭଏସ୍ ଅଫ୍ ଫିଲିଂ । ପ୍ରାଣୀକ ଉପାଦନରେ ଧାଡ଼ି ସଂଗଠିତ । କାବ୍ୟିକ Gestalt ବା କଂପୋଜିସ୍‌ନାଲ୍ ୟୁନିଟ୍ ଭାବ ବିନିମୟରେ ବେଶ୍ ମାର୍ଜିତ । ଇମେଜ୍‌ର ଜଟିଳତା, ଛଂଦ ସଂଚାଳନ ଓ ଧ୍ୱନିର ଧ୍ୱଜା କାବ୍ୟିକ ନିଷ୍ପତିରେ ଦୃଢ଼ । ସୌନ୍ଦର୍ଯ୍ୟର ମିଛ ବିବରଣୀ କବିତା ଶୈଳୀରେ ନାହିଁ । ଷ୍ଟାଇଲ ଅଫ୍ ପୋଏଟ୍ରୀ ମାଷ୍ଟରଡ୍ ଏଣ୍ଡ୍ ଆଟ୍ କମାଣ୍ଡ, ହପ୍‌କିନ୍ସଙ୍କ ଦୃଷ୍ଟିରେ କବିତା ଏକ କଥନ ଯାହା ଆବୃତ୍ତିକରେ ଏକ ପ୍ରକାର ଆକୃତି । ଅନେକ ଆକୃତିର ମେଳନ ଉତ୍ସବ 'ଗୂଢ଼ପଦ' । ଅର୍ଥ ଉର୍ଦ୍ଧ୍ୱର ଉତ୍ସବର ଆନଂଦ । ଏହାକୁ ଗୋଟିଏ ନାମ ଦେଇଛନ୍ତି ଓ୍ୱାର୍ଡ଼ସଓ୍ୱାର୍ଥ, । ହରିହର ମିଶ୍ର ତାଙ୍କ ବହୁଅଂଶ ବିଶିଷ୍ଟ ଆନଂଦକୁ ପାଞ୍ଚ ପର୍ବରେ ବାଣ୍ଟି ଥିଲେ ବି ପ୍ରତ୍ୟେକ ପର୍ବରେ ଅଲଗା ଅଲଗା ଆନଂଦର ଝାଲେରି ଖଂଜିଛନ୍ତି ।

'ଗୂଢ଼ପଦ' ଆରମ୍ଭ ଏବଂ 'ସେ ଓ ମୁଁ' ଚାଲିଗଲା ପରେ' କବିତା କ୍ରମର ଶେଷ ଦୃଶ୍ୟ, ମୋଟ ଚୌରାଳିଶ ଶବ୍ଦ ଚିତ୍ର । ସବୁଠି ସବୁ ଆନଂଦ ଏକ, ସ୍ୱପ୍ନରେ କେଉଁ ଏକ 'ମୁଁ' ଉଜ୍ଜଳ ଗନ୍ଧର୍ବର ଧ୍ରୁପଦୀ ସୌନ୍ଦର୍ଯ୍ୟର ସୋରିଷ ପୁଷ୍ପ ଭର୍ତ୍ତି କ୍ଷେତଟିଏ ଠିଆ କରାଇଛି । ସଂପର୍କ ଶୀଳତାର ଫୁଟିଛି କବିତା ପୁଷ୍ପ । ଦେଖନ୍ତୁ ଏହି ଛତ୍ର – 'ମୁଁ କ'ଣ ତା'ର ହୋଇ ରହିବାକୁ / ଚାହିଁ ନଥିଲି ଆଜୀବନ / ସମୟ ତ ଥିଲା ତା'ର !' ଏଠି କୁହାଯାଉନାହିଁ ସମୟ ଅଛି କି ନାହିଁ ମୋର !

'ଜାଣି ନାହିଁ କେତେ ମୂଲ୍ୟ ଭଲ ପାଇବାର / ବୈଧ କି ଅବୈଧ', ସେ ନେଇ ଥିଲା ଋଣ ନୁହେଁ ! ଅପରାଧ ତକ ଲଦି ମୋ ମୁଣ୍ଡରେ, ବିଲୁଣ୍ଠିତ କରି ! ତାକୁ ବା ମୋନାଲିସାର ସେହି ରୂପଟିକୁ ଗୋଟିଏ ଧାଡ଼ିରେ ଆଙ୍କିଛନ୍ତି କବି । ତା' ପ୍ରେମିକା ସତ୍ତାର ପ୍ରଭାବ ଓ ମହିମାପୂର୍ଣ୍ଣ ଚିତ୍ର ସଠିକ୍ କରେ ଏହି ଧାଡ଼ିଟି ଉଦ୍ରେକ– 'ଛଳଛଳ ଭାବ ତା'ର ରୂପ ଢ଼ଳଢ଼ଳ !' ଅରୂପ ସତ୍ତାର ଏହା ଠାରୁ ହେବ ଆଉ କିପରି ରୂପ ? 'ଯେତେ ସେ ମୋତେ ଖୋଜୁଥିଲା / ସେତେ ମୁଁ ହଜୁଥିଲି / ନାଁ, ଗାଁ ଠିକଣା ହଜେଇ !' କବିତା ଏକ ରହସ୍ୟର ଉଦ୍‌ଭାସ । ପ୍ରେମପରି ସୁଖମୟ ଆଦିମ ଉଲଗ୍ନ, ତାହା ସେହି ରହସ୍ୟ ! ଜହ୍ନ, ତାରା, ଉପତ୍ୟକା, ଝରଣା, ତୁ ଓ ମୁଁ ସବୁ ସେଇ ରହସ୍ୟର ଅବିଚ୍ଛିନ୍ନ ଅଂଶ ବିଶେଷ । କବିତା ସେହି ରହସ୍ୟର ଚିହ୍ନାଲୋକ ! ଦୈନନ୍ଦିନର ନୂଆ ଅଭୀପ୍ସା ! 'ମୁଁ ଅଛି ବୋଲି ତମେ ଅଛ ।' ବ୍ୟର୍ଥତାରେ ବିହନଟେ ପରି ମଣିଷ ସଢୁଛି, ତଥାପି ଆଶା ଅଛି ! ଯେଣୁ ଏହା ଜୀବନ ଏବଂ ଜୀବନ ଆଡ଼କୁ ଖୋଲା ରହିଛି କବିତାର ଝର୍କା ।

ସଂପର୍କର ଭିନ୍ନଭିନ୍ନ ଥାକ, ଏପରି ଗୋଟିଏ ଥାକରେ ଥାଅ 'ତୁମେ' ଯେ ସବୁବେଳେ ଖୋଜିବାକୁ ପଡ଼େ ? ପୁଣି – ନୀଳ କାର୍ପାସ ଫୁଲଭଳି ସଂପର୍କ ! ସଂପର୍କ ଦିଏ ଗୋଟିଏ ନୂଆ ଅଭିନୟର ଅଭିଜ୍ଞାନ ଏବଂ ପରକୀୟା ଉପରେ ପ୍ରଶ୍ନ ଚିହ୍ନ ! ଯେମିତି ସବୁ ସ୍ୱତ୍ୱ ଏକା ସଂପର୍କର, କେବେ ମୁଁ ଫିଟି ଆସେ ପତ୍ନୀଙ୍କ ଠାରୁ / ତମେ ଅନ୍ୟର ହୋଇବି ମତେ / ଉଚ୍ଛିଷ୍ଟ ପୋଛି ଦେବାକୁ ବ୍ଲାଉଜରୁ କହ (ଡ୍ରେସିଂ ଟେବୁଲ) । ପ୍ରାଚୀନ କବିମାନଙ୍କଭଳି ପ୍ରକୃତି ବର୍ଣ୍ଣନାରେ ଶାଣିତ କବି ହରିହର ମିଶ୍ରଙ୍କ କଳ୍ପନା । ତାଙ୍କ ଚନ୍ଦ୍ରମା କେତେବେଳେ ରୂପାଥାଳି ତ କେବେ ଘୁଷୁରି ମେଘପଲ୍ଲ ! ପୁଣି ମାଛ ଆଖିଭଳି ଜଳୁଥାଏ ବ୍ୟଥାତୁର ଜହ୍ନ ! ଚମକାଏ ଚିତ୍ରକଳ୍ପ, ଛେନାଛିଣ୍ଡା କ୍ଷୀରଭଳି ଦିଶେ ଦୁଧିଆ ଆକାଶ, କିଂବା ମାଛ କାତି ଚକମକ ଧଳାମେଘ ଖଣ୍ଡର ଦୃଶ୍ୟ ! ଇଏ ତ କଂକ୍ରିଟ ଇମେଜ୍, ଅବଷ୍ଟ୍ରାକ୍ଟ ଇମେଜ୍ 'ପୁଣ୍ୟପ୍ରଭା' ! କଲର୍ ଇମେଜ୍ 'ନୀଳ ଅଭ୍ୟନ୍ତର' । କଂକ୍ରିଟ ଇମେଜ୍ 'କାକୁମଂଜି ମୁର୍କିହସ', ଯେମିତି ସଚ୍ଚିବାବୁଙ୍କ 'ଖାକୀର ହସ' ବା ଟିଣର ଜହ୍ନ !

'ଗୂଢ଼ପଦ'ବିବିଧ ପ୍ରକାର କବିତାର ବର୍ଣ୍ଣାଳୀ । 'ରୋବଟ୍ ରମଣୀ' ଯାଂତ୍ରିକତାକୁ କାବ୍ୟିକତାର ମଂତ୍ରରେ ସଂଜୀବିତ କରାଯାଇଥିବାବେଳେ 'ସଚିନ୍' କ୍ରିକେଟ୍ କ୍ରୀଡ଼ା ଇତିହାସ, ସଂସ୍କୃତିର ନବ ଇମ୍ମାରତ ପ୍ରାପ୍ତ ହୋଇଛି ଜୀବନ୍ନ୍ୟାସ । ଆଗକୁ 'ହଠାତ୍ ସାକ୍ଷାତ: କଥାଶିଳ୍ପୀ ଅରୁନ୍ଧତୀ ରାୟ' ଚର୍ଚ୍ଚିତ ଲେଖିକାଙ୍କ ପୋଟ୍ରେଟ୍ (Portrait), ଯେମିତି ଇଲିୟଟଙ୍କ କବିତା 'ଦି ପୋଟ୍ରେଟ୍ ଅଫ୍ ଏ ଲେଡ଼ୀ' ! 'ଗଡ୍ ଅଫ୍ ସ୍ମଲ୍ ଥିଙ୍ଗ୍ସ' ଉପନ୍ୟାସ, ଜେମ୍ସ ଜଏସ୍‌ଙ୍କ 'ୟୁଲିସିସ୍' ଶୈଳୀ ଛାଂଚରେ ରଚିତ, ତାଙ୍କ ଉପନ୍ୟାସ ତାଙ୍କୁ କରାଇ ଥିଲା ପରିଚିତ । ସେହି ପ୍ରସିଦ୍ଧିକୁ ସିଏ ଖର୍ଚ୍ଚ କଲେ ନକ୍ସଲଙ୍କ ଶିବିରରେ । ସାମ୍ୟବାଦିକା ରୂପରେ ନୂଆ ଅନୁଭୂତି ଓ ନୂଆ ରୋମାଂଚ ତାଙ୍କର କବି ହରିହର ମିଶ୍ରଙ୍କ ହୃଦୟକୁ କାବ୍ୟିକ ପ୍ରଗଲ୍‌ଭ କରିଛି । 'ସାଧାସିଧା ନାରୀଟିଏ / ମୁଁ ଯେ ଅରୁନ୍ଧତୀ' ପ୍ରକୃତିର ମୁକ୍ତି ମାଗି ମାଗି / ବଂଚିଛି ମୁଁ ବଂଚିତର ଲାଗି ! ଉପସଂହାରରେ ତା'ର ମୂଲ୍ୟବୋଧ ଭିତ୍ତିକ ଚରିତ୍ରର ଚିତ୍ରଟିଏ ଗାଢ଼ ହୋଇ ଆସିଛି !

ଆଗକୁ ଧାଡ଼ି ଲାଗିଛି ଶାବ୍ଦିକ ପ୍ରକ୍ରିୟାରେ କଳାତ୍ମକ ପ୍ରତିମା । ବିଜ୍ଞାନ ପ୍ରକ୍ରିୟା ଅବସ୍ଥାକୁ ଓ ଲଜିକ୍‌କାଲ୍, କିଂତୁ କଳାପ୍ରକ୍ରିୟା ବାସ୍ତବ (କଂକ୍ରିଟ) ଓ ଆଳଙ୍କାରିକ (Figurative) । କଳାତ୍ମକ ପ୍ରତିମା ଘଟଣାରୁ ଜୀବନର ଗଭୀରତର ଅର୍ଥ କରାଇଛି ପ୍ରକଟିତ, 'ଗୂଢ଼ପଦ'ର ରଚନାର ଏହା ସର୍ବବୃହତ ବିଶେଷତ୍ୱ ।

କବିତାର ଆଧୁନିକତା ପାରମ୍ପରିକ ରଚନା ଶୈଳୀଠାରୁ ଅଲଗା ଏକ ଅଭିନବ ଶୈଳୀ । ପୂର୍ବରୁ ପ୍ରଚଳିତ ଚର୍ଯ୍ୟାର ଦଶ ଧାଡ଼ିଆ କବିତା ଓଡ଼ିଆ କବିତାର ଶୈଶବ । ଏହା ପରେ ଆସିଛି ଚୌତିଶା, ଅଚ୍ୟୁତା ନନ୍ଦଙ୍କ ଭଜନ, ଓଗାଳ ଓ ଜଣାଣବେଳକୁ କବିତାର ଦୈର୍ଘ୍ୟ କମିଛି । ସାଲବେଗ, ଗୋପାଳକୃଷ୍ଣ ଓ କବିସୂର୍ଯ୍ୟଙ୍କ ପର୍ଯ୍ୟନ୍ତ ଚୌତିଶା ସହିତ ଓଡ଼ିଆ କବିତାର ଛୋଟ ଆକୃତି ପ୍ରଚଳିତ । ରାଧାନାଥ ଯୁଗରେ କବିତାର ବିଷୟରୁ ଭକ୍ତି ଓ ଦେବଦେବୀ ମୁକ୍ତ ସାଧାରଣ ଜୀବନ ଓ ଜଗତ ଚିତ୍ର ପହଂଚିଛି । ସ୍ୱାଧୀନତା ପୂର୍ବରୁ ବୋଧ ହୁଏ 'ପାଣ୍ଡୁଲିପି', ସଚ୍ଚିବାବୁ ନୂଆ କବିତା 'ଲୋହିତ ଓ ଧୂସର' ଦୁଇ ଭାଗରେ ବାଣ୍ଟି ବିତରିତ କରିଛନ୍ତି । 'କବିତା ୧୯୬୨' ବେଳକୁ ଆଧୁନିକ ଓଡ଼ିଆ ପାଠକ ତା' କବିତା ଆଙ୍ଗିକ ଓ ଆତ୍ମିକରେ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ୍, ଋଷିଆ, ଜାପାନ ଓ ଆମେରିକାକୁ ଦେଖିବାକୁ ପାଇଛି । ଶିଳ୍ପ ବିପ୍ଳବର ପରିଣାମ ବିଶ୍ୱ ବାଣିଜ୍ୟ ପ୍ରସାର ବାଟ ଦେଇ ନୂଆ ସଭ୍ୟତା, ବିଜ୍ଞାନ ଓ ରଚନା ଦୃଷ୍ଟିଭଙ୍ଗୀ ଏବଂ ଶୈଳୀ ସାରା ଭାରତ ବିଛେଇ ହୋଇଛି । ପୋଥି ଯୁଗ ସମାପ୍ତ, ମୁଦ୍ରଣ ଶିଳ୍ପର ବିକାଶ, ପଞ୍ଚବାର୍ଷିକ ଯୋଜନାର ପ୍ରସାରରେ ଗାଁରେ ଗାଁରେ ସ୍କୁଲ ଓ ସହରରେ କଲେଜ ପ୍ରତିଷ୍ଠା । ବହିର ମହାଯୁଗ

ପୃଥିବୀର ଗ୍ଲୋବକୁ ତା' ଡ଼େଣା ତଳେ ଛାଇ କରି ରଖିଛି । ଗୁରୁବାବୁ 'କାଳପୁରୁଷ'କୁ 'ୱେଷ୍ଟଲ୍ୟାଣ୍ଡ' ଧଳା ଅଣ୍ଡାଖୋଳ ଭିତରୁ ବାହାର କରି କଲେ 'ସମୁଦ୍ରସ୍ନାନ' । କବି ଜ୍ଞାନୀନ୍ଦ୍ର ବର୍ମା ଇଲିୟଟ, ପାଉଣ୍ଡ ଓ ହୁଇଟିମ୍ୟାନ୍ଙ୍କ ଭଳି ବିଶ୍ୱ ପ୍ରସିଦ୍ଧ କଳାତ୍ମକ କୃତିତ୍ୱକୁ ଓଡ଼ିଆରେ ଭାଷାନ୍ତରିତ କରିଦେଲେ । ଅନ୍ୟ ପକ୍ଷରେ ମାର୍କସ୍‌ବାଦୀ ଲାଲ ଧ୍ୱନି କବିତା ଆଙ୍ଗିକକୁ ମାନବବାଦୀ ଶୋଷଣ ମୁକ୍ତ ସଂସାର ସୃଷ୍ଟି କଳ୍ପନାକୁ ଦେଲା ରୂପରେଖ । ମାର୍କସ୍, ଫ୍ରଏଡ୍ ଓ ଡାରୁଇନ୍ ତିନୋଟି ନୂଆ ଦିଶା ଦେଖାଇ ମଣିଷର ନୂଆ ରୂପ କଲେ ପ୍ରତିପାଦନ । ସେମାନଙ୍କୁ କବିତାରେ ମହାନ୍ ଶିଳ୍ପୀମାନେ କଲେ ଅଙ୍କିତ ।

ଅନ୍ନଦା ଶଙ୍କର,ବୈକୁଣ୍ଠ ନାଥ, କାଳିନ୍ଦୀ ଚରଣ ଓ ହରିହର ମହାପାତ୍ର ପ୍ରଭୃତି ରେଭେନ୍ସାରୁ ବାହାରିଥିବା ଉଚ୍ଚ ଶିକ୍ଷିତ ଓଡ଼ିଆ କବିତାର ଅରାଏ ସାଂସ୍କୃତିକ ଭୂମିକୁ ରବୀନ୍ଦ୍ର ନାଥଙ୍କ ପ୍ରଭାବରେ କରିଥିଲେ 'ସବୁଜ' । ମାନସିଂହ ଓ ଗଡ଼ନାୟକ ସବୁଜ ନଥିଲେ ବି ଥିଲେ ଓଡ଼ିଆ ଆଧୁନିକ ! ବୃତ୍ତ ଥିଲା, ଛଂଦ ଥିଲା, ସେମାନଙ୍କ କବିତାରେ ଥିଲା ଓଡ଼ିଆ ଜୀବନ ଓ ପଖାଳ । ଚାରିକାନ୍ଥ ଘେରା ଗୋପନୀୟ ଗୋଲାପୀ ଭୋଗକୁ ମାନସିଂହ ସହକାର ତଳକୁ ନେଇ ଆସିଥିବାବେଳେ, ଗଡ଼ ନାୟକ 'ସ୍ତନ ଉତ୍ତରୀ ଦିଅ ଖୋଲି ପ୍ରିୟା ଦିଅ ଖୋଲି, ଭାବୁଚି କି କାଳେ ଚପଳତା ମୋର ହେବ ବୋଲି', ନବ ରୋମାଣ୍ଟିସିଜିମ୍‌କୁ ସୁଲଭ କରିଥିଲେ । ଗୋଟିଏ ସମୟରେ ମାନସିଂହ ଗଡ଼ନାୟକ ଓ ସଚ୍ଚି ରାଉତରାୟଙ୍କ ଯୁଗ ଉଦ୍‌ଭାସିତ ହୋଇଛି । ଏହି ସମୟରେ ଉଚ୍ଚ ଶିକ୍ଷାର ଶ୍ରୀମନ୍ଦିରରୁ ଆସିଥିବା ପ୍ରଶାସନ ଦଳ ଓ ଅଧ୍ୟାପକଦଳ ସେମାନଙ୍କ ଅଧ୍ୟୟନ ଓ ସୂକ୍ଷ୍ମ ଅନୁଭବକୁ ନେଇ ଗଠିତ କଲେ କବିତାର ସୂକ୍ଷ୍ମ ତାରକସି କାମ । ସେହି ମହାକବିଙ୍କ ମେଳରେ ଜଣେ ତରୁଣ କବି ଥିଲେ ସିଏ ହରିହର ମିଶ୍ର ! କେବଳ କବିତା ନୁହେଁ; ନାଟକ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ଅଭିନୟ, ସଂପାଦନା ଓ ଅଧ୍ୟାପନା, କୌଣସି ଥିରେ ସେ ନୁହନ୍ତି କମ୍ ! ତାଙ୍କର ୧୯ଟି କାବ୍ୟ ଏକତ୍ର ଖଣ୍ଡିଏ ମହାଗ୍ରନ୍ଥ 'କବିତା ୧୦୦୧' ପାଠକଙ୍କୁ କରେ ଚମକୃତ । 'ସ୍ୱାଜ୍ଞା ଓ ପ୍ରଜ୍ଞାର କବି ହରିହର' କବିଙ୍କ ପ୍ରତିଭା ଓ ଦୃଷ୍ଟିକୋଣର ଅନବଦ୍ୟ ମୂଲ୍ୟାୟନ ଏକ ଅତ୍ୟୁଜ୍ଜଳ ଉଚ୍ଚାରଣ ଯେମିତି ଶବ୍ଦର ଏକ ପୁଷ୍ପବନ ! ହରିହର ମିଶ୍ରଙ୍କ କବିତା ସପ୍ତବର୍ଣ୍ଣ ଉର୍ଦ୍ଧ୍ୱରେ ଅଜସ୍ରବର୍ଣ୍ଣର ପ୍ରଭା, ଇନ୍ଦ୍ରଲୋକ, ବ୍ରହ୍ମଲୋକ, ବିଷ୍ଣୁଲୋକ ବାହାରେ ଓ ଶିବଲୋକ ଉର୍ଦ୍ଧ୍ୱରେ ଗୋଟିଏ ନୂଆ ସ୍ୱର୍ଗର ବିଭା ! ଅପାର କାବ୍ୟ ସଂସାରେ କବିରେବ ପ୍ରଜାପତିଃ, ତାଙ୍କ ଶବ୍ଦ ଭୂମି 'ଇନ୍ଦ୍ରାଣୀ'ର ଭୂମି ! ସେଠାରେ 'ବ୍ରହ୍ମ କଣିକା' ହେବାବେଳେ ଚେତନାର ତ୍ରିସ୍ତରରେ ଘଟିଛି ଅନନ୍ତ ଶୟନ ! 'କୋଇଲି ତୁ ଚୁପ୍ ରହ' ଚେତନାର କୋଇଲି

କ'ଣ ରହୁଛି ଚୁପ୍?

ଆଧ୍ୟାତ୍ମିକତାର ଉତ୍ତରଣ ଘଟିଛି । 'ଶୟନ ପ୍ରତିମା', ସେ ପ୍ରତିମା କିଏ ଏବଂ 'ଶବ୍ଦ ଏକା ଏକା', ତାଙ୍କ ବାକ୍ ପ୍ରତିମା ! ପ୍ରତିମା ବାକ୍‌ର ନା' ବାକ୍‌ରେ ତିଆରି ପ୍ରତିମା ତାଙ୍କରି ଯାହାଙ୍କ ଶକ୍ତି ବାକ୍? ସେ ଦେବତା କେତେ କ୍ଷମ ଓ କେତେ ଅକ୍ଷମ କବିତା କରିଛି ଏହାର କଳନା । ଆରମ୍ଭ ସ୍ୱର 'ଶଙ୍ଖନାଭି' ଯେଉଁଠି ଫୁଟିଥାଏ ଅନାହତ ପଦ୍ମ, ଊର୍ଦ୍ଧ୍ୱକୁ ସୂକ୍ଷ୍ମ ଦେହର ତ୍ରିଚକ୍ର ବିଦ୍ୟମାନ ଥିବାବେଳେ ଏହି ଠାରୁ ନିମ୍ନକୁ ଥାଏ ତ୍ରିଚକ୍ର । ନାଭିଚକ୍ର ସ୍ଥୂଳ ଓ ସୂକ୍ଷ୍ମ ଦେହର ମିଳିତ ସ୍ଥଳ । ଏହି ସ୍ଥାନରେ ଦୁଇ ଦେହର ସଂଯୋଗ ଏକ ରୌପ୍ୟ ସୂତ୍ର ମୃତ୍ୟୁ ହେଲେ ଏହା ଛିଣ୍ଡିଯାଇ ସୂକ୍ଷ୍ମ ଦେହ ହୋଇଯାଇଥାଏ ଅଲଗା ! ନାଭିଚକ୍ର ମଣିପୁର ଏବଂ ଶଙ୍ଖ ବି ଏକ ମଣି । ଶବ୍ଦ ମଣି ମାଲ୍ୟ ଦ୍ୟୁତି ଶୀର୍ଷକଟିଏ ଗ୍ରହଣ କରିଛି ।

ଅନ୍ତର୍ଚେତନାରେ ସାଇତା ଅଭୀପ୍ସା ଆଲୋକିତ ହେବା ମହିମାର ଶବ୍ଦାବୟବ କବିତା । କବିତା ଏକ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ, ହରିହର ମିଶ୍ରଙ୍କ ଦ୍ୱାରା ହୋଇଛନ୍ତି ବ୍ୟକ୍ତ । ତାଙ୍କ ଗୋଟିଏ ଗୋଟିଏ ପବିତ୍ରତମ ମୁହୂର୍ତ୍ତ ଚେତନାର ଭୂମିରୁ କବିତା ରୂପେ ଅବତାର ଗ୍ରହଣ କରିଛନ୍ତି । ଜୀବନ ପ୍ରତି କବିଙ୍କ କୃତଜ୍ଞତା ବା ଥ୍ୟାଙ୍କଫୁଲନେସ୍ ଅଟେ କବିତା । ଏଥିରେ ପ୍ରାଣର ପବିତ୍ର ଆବେଗ, ଉତ୍କଣ୍ଠା ଓ ଅଭିବ୍ୟକ୍ତି ଇଚ୍ଛୁକ ସତ୍ତାଙ୍କୁ ସୃଜନଶୀଳ ଶକ୍ତି କରାଇଛି ଉତ୍ତରିତ । ଆତ୍ମିକ ଉନ୍ମାଦନା ଓ ପ୍ରକାଶ ବ୍ୟାକୁଳିତା ଏହାର ମୂଳ । ନିମ୍ନ ପ୍ରାଣର ଦାବୀ, ଅସ୍ଥାୟୀ ଚିନ୍ତାର ଆତ୍ମିକ କବିତା ପଂକ୍ତି ବସାଣର ତନ୍ମୟତାରେ ହୋଇଛି ବ୍ୟବସ୍ଥିତ । ପୀଡ଼ିତ ଜୀବନ ପ୍ରକୃତିର ସ୍ୱତଃସ୍ଫୂର୍ତ୍ତ ଚିତ୍କାର ଶବ୍ଦରୂପରେ ଉତ୍ତରିତ ହେଲେ ହୁଏ କାବ୍ୟିକ । ମଣିଷର କାଂଦ କବିତା ଏବଂ କବିତାରେ କାଂଦେ ମଣିଷ । ମଣିଷର ପ୍ରେମ କବିତା ଏବଂ କବିତାରେ ସଂସାରକୁ ପ୍ରେମକରେ କବି ।

ହରିହର ମିଶ୍ରଙ୍କ କବିତା ଭିତରୁ ଯାହା ଶୁଭେ ତାହା ଏକ ଅନୁଭବ । କବିତା ଅନୁଭବକୁ ବାସ୍ତବ କରାଏ କଳ୍ପନା । ବାସ୍ତବପରି ବୋଧ ହେବା ଏକ ପୂର୍ଣ୍ଣତା ବା ସମଗ୍ରତା । ପ୍ରାଣିକ ଉଲ୍ଲାସ ସହିତ ସାମଗ୍ରିକ ଚେତନା ସୂକ୍ଷ୍ମ ଓ ଆଧ୍ୟାତ୍ମିକ । ତେଣୁ ହରିହର ମିଶ୍ରଙ୍କ ଶବ୍ଦ ମଧ୍ୟରେ ଅସୀମଙ୍କ ନିଶ୍ୱାସ କବିତା ଆକୃତିରେ ଜୀବନ୍ତ ।

କୁହାଯାଇଛି, ଜୀବନ ରାସ୍ତା ଉପରେ ଥାଏ କବିତା । କବିଙ୍କ ସମଗ୍ର ସତ୍ତାକୁ ଘେରି ରହିଥାଏ କବିତା, ଭବିଷ୍ୟତପରି ଊର୍ଦ୍ଧ୍ୱ ପବନ ସ୍ପର୍ଶରେ ଓହ୍ଲାଇ ଆସିଥାଏ, ଯେମିତି ଅବତାରଟିଏ ! କବିତାରେ ଶବ୍ଦ ଗୋଟିଏ ସ୍ଥିରତା ଭିତରେ ହଜିଯାଏ, ଗୋଟିଏ ନୀରବତା ଭିତରେ ଶବ୍ଦର ବିଲୟ ଘଟେ । ବକ୍ତବ୍ୟ ଯେଉଁଠି

ପହଂଚେ, ଆଙ୍ଗିକ ଓ ଶୈଳୀକୁ ଆଚ୍ଛାଦିତ କରିଦିଏ ଏକ ପ୍ରଚଣ୍ଡ ନୀରବତା । ସେହି ନୀରବତା କବିତାର ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟର ଆତ୍ମା । କିଂତୁ କବିତା ଯାହା ଉଚ୍ଚାରଣ କରେ ତାହା ଜୀବନର ଏକ ଅବସ୍ଥା ବା ଅବସ୍ଥାଟିର ଅନୁଭବଯୁକ୍ତ ବାସ୍ତବିକତା ।

ଲରେନ୍ସ ତାଙ୍କ ସଂକଳନ 'ଲୁକ୍! ଉଇହାଭ କମ୍ ଥ୍ରୋ'ରେ ରଖିଥିଲେ ଦୁଇଟି ଧାଡ଼ି, But I hope I shall find eternity

With my face down buried between her breasts...

ପ୍ରେମ ସହିତ ଧର୍ମର ମିଶ୍ରଣକୁ ପ୍ରତିବାଦ କରିଥିଲେ ପ୍ରକାଶକ । ଲରେନ୍ସ ଦର୍ଶାଇଥିଲେ ... Adam spends with his face buried and peace between the breasts of Eve: ଅନନ୍ତକାଳ ବ୍ୟାପି ଆଦାମ ବକ୍ଷରେ ଇଭ୍ ମଧ୍ୟ ମୁହଁମାଡ଼ି ରହିଥିଲେ । ଧର୍ମ ଓ ପ୍ରେମ ଗୋଟିଏ ଚଳନ୍ତି ଜୀବନର ଦୁଇଟି ପାର୍ଶ୍ୱ । କବିଙ୍କ କବିତାର ସେହି ପାର୍ଶ୍ୱ ଦୁଇ ସମିଶ୍ରିତ ହେବା ହେତୁ ସୌନ୍ଦର୍ଯ୍ୟ ହୋଇଛି ଜୀବନ୍ତ । ଧ୍ୱନି ଘୂରୁଛି ପ୍ରତିଧ୍ୱନିପରି ଅଦୃଶ୍ୟ ଋତୁ ସ୍ମୃତିରେ ତାହାର ପଦଧ୍ୱନି ରଖୁଛି, ଯେମିତି ଗୋଲାପ ବଗିଚା ଆଡ଼କୁ ଝର୍କାଟିଏ ଖୋଲୁଛି -

ଗୋଟିଏ ଶବ୍ଦ ବାସେ

ଆଉ ଶବ୍ଦଟି ଶୁଖି ପଡ଼ିଯାଏ ତଳେ

ଗୋଟିଏ ଶବ୍ଦ ଚୁପ୍‌ଥାଏ ମୋ ଭିତରେ

ଅନ୍ୟଟି ବ୍ୟସ୍ତ ଥାଏ

ପାଳିଧରିବାରେ ଶୋଭାଯାତ୍ରା ଅବା ନାମକୀର୍ତ୍ତନରେ । (ଗୂଢ଼ପଦ, ପୃଷ୍ଠା ୯୯)

ଅନୁଭୂତିକୁ ବଦଳାଇଛି ବ୍ୟକ୍ତିଗତ ସିମ୍ବଲିଜିମ୍ ମେଟାଫିଜିକ୍‌କୁ । ଶୋଭାଯାତ୍ରା ଓ ନାମ କୀର୍ତ୍ତନ: ପ୍ରଥମଟିକୁ ଯଦି ପ୍ରେମ ଚେତନା ରୂପ ଗ୍ରହଣ କରାଯାଏ ଦ୍ୱିତୀୟଟି ଧର୍ମ! କବିତାରେ ସିମ୍ବଲ ନୀରବତାକୁ କରୁଛି ଅର୍ଥପୂର୍ଣ୍ଣ । କବିତାରେ ସଂକେତ ହିଁ ମିଥିକାଲ୍ ଓ ମିଥିକାଲ୍ ଉପାଦାନ । ହରିହର ମିଶ୍ରଙ୍କ ଶବ୍ଦ ଯେମିତି ଫୁଲଟିଏ ! ଛିନ୍ନମାଳ ର ସେ ଫୁଲ ସଂପର୍କ ହେବାବେଳେ 'ଗୂଢ଼ପଦ'ରେ ତାହା ଜୀବନ । ଜୀବନ, ଧର୍ମ, ପ୍ରେମ ଓ ବିବିଧ ଅନୁଭୂତିର ଝଙ୍କାର ହରିହର ମିଶ୍ରଙ୍କ କାବ୍ୟିକ ସ୍ୱର । ହରିହର ମିଶ୍ରଙ୍କ କବିତା ଏକ ସମିଶ୍ରଣ । ରାଇନର ମାରିଆ ରିଲେକ୍‌ଙ୍କ 'ଡୁଇନୋ ଇଲିଜିସ୍' ଆଲୋଚନା କଲାବେଳେ ପ୍ରଫେସର୍ କେ.ଏନ୍.

ସିଂହ କହନ୍ତି, Poetry is a kind of amalgam. It is a type of orchestration at its most complex and a kind of movement at its most simple and sensitive. It is mean to express the deepest thought and feelings through words and images.

(Contemporary writers, page 91-92, by K.N. Sinha)

କବି ହରିହର ମିଶ୍ରଙ୍କ କବିତା ପାଇଁ ଏହା ଖୁବ୍ ଯଥାର୍ଥ ଦୃଷ୍ଟିକୋଣ ଓ ସଠିକ୍ ମୂଲ୍ୟାୟନ । କବି ଗିରିଜା ବଳୀୟାର ସିଂହ ତାଙ୍କ ମୁଖବନ୍ଧର ସମୀକରଣରେ ଲେଖିଛନ୍ତି, ହରିହର ମିଶ୍ରଙ୍କ କବିତା ତ୍ରିଭଙ୍ଗିମ । ତଳେ ଧର୍ମଚକ୍ର, ଉପରେ ନୀଳଚକ୍ର, ଶୂନ୍ୟରେ ସଂଚରୁଛି କାଳଚକ୍ର । କାବ୍ୟପୁରୁଷର ଏହି ତ୍ରିକାଳ ସଭ୍ୟତା, ସଂସ୍କୃତି ଓ ସମୟ ଚେତନାକୁ ସୁସ୍ପଷ୍ଟ ସୂଚିତ କରୁଛି । ଐତିହ୍ୟର ଐଶ୍ୱର୍ଯ୍ୟରୁ ଅନୁଦାନ ପ୍ରାପ୍ତ ତାଙ୍କ ଆଧୁନିକତା । ତାଙ୍କ କବିତାର ମହତ୍ୱକୁ କରିଛି ବହୁ ଗୁଣିତ । ତାଙ୍କ କବିତା ଗତକାଲି, ଆଜି ଓ ଆସନ୍ତାକାଲିକୁ ଗୋଟିଏ ଗଜରାରେ ରଖିଛି ଗୁନ୍ଥି ।



# କୋଇଲିର ଆଧୁନିକତା ଓ ଆଧୁନିକବାଦ
# 'କୋଇଲି ତୁ ଚୁପ୍‌ରହ' ର ଅନୁଭବ

...ସବୁ କିଛି ପୁରାତନ ସଙ୍ଗରେ ନୂତନର ବିରୋଧ – ମିଳନ – ସମନ୍ୱୟର ପ୍ରତିଛବି ସବୁଦେଶର, ସବୁ ଯୁଗର ସାହିତ୍ୟରେ ପ୍ରତିଫଳିତ । କିଂତୁ କେବଳ ନୂତନତାର ଝଲକ ଆଧୁନିକତା ନୁହେଁ । ଏ ଝଲକ ଅଚିରସ୍ଥାୟୀ' ଆଧୁନିକତାର ସଂଜ୍ଞା ଓ ସ୍ୱରୂପ ଆଲୋଚନା କଲାବେଳେ ବ୍ୟକ୍ତ କରିଛନ୍ତି ଅଦ୍ୱିତୀୟ ଆଧୁନିକ କବି ଓ ସମାଲୋଚକ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ।

ଆଧୁନିକତା ନୂତନତାର ଝଲକରେ ଥାଏ; ଆଧୁନିକତା ଏକ ମୂଲ୍ୟବୋଧ । ମୂଲ୍ୟବୋଧ କାଳଗତ ଏବଂ କାଳଗତ ପରିବର୍ତ୍ତନ ସହିତ ବଦଳିଥାଏ ମୂଲ୍ୟ । କବିତା କବିଙ୍କ ଶବ୍ଦଶିଳ୍ପ । କାଳଗତ ଯେତେ ସାମାଜିକ ଓ ପ୍ରାକୃତିକ ହେଲେ ବି, ମାନବ ପୂର୍ଣ୍ଣତାର ସ୍ୱପ୍ନ ଯେତେ ନିବିଡ଼ ଓ ନିଖୁଣ ଥିଲେ ବି କବିତାର ଫର୍ମ୍ ଓ ଅଭିବ୍ୟକ୍ତି ଟେକ୍‌ନିକ୍ ବଦଳିବା ସୁନିଶ୍ଚିତ । ଯୁଗର ନୂଆ ରୁଚି ଓ ନୂଆ ଦୃଷ୍ଟି କବିତାକୁ କରିଥାଏ ଆଧୁନିକ । କାଳ ମାନବର ଚିନ୍ତାକୁ ବଦଳାଏ, ଭାବନାକୁ ବଦଳାଏ, ଏହାର କାରଣ ତାହାର ବଦଳୁଥିବା ସମସ୍ୟା ଏବଂ ସମସ୍ୟା ଅନୁସାରେ ସମାଧାନର ଅନ୍ୱେଷା ବଦଳାଏ ଜୀବନ ଶୈଳୀକୁ । ଯେଉଁଠି ଜୀବନ ବଦଳେ ସେଠାରେ କଳା ବଦଳିବା ସ୍ୱାଭାବିକ । ମାନବ ସହଜ ସୁଖମୟ ଜୀବନଟିଏ ସୃଷ୍ଟିର ପ୍ରାରମ୍ଭରୁ ଖୋଜି ଆସିଛି । ସେଇଥି ପାଇଁ ତାହାର ପ୍ରଥମ ଆବିଷ୍କାର ଅଗ୍ନି ଏବଂ ତାହା ପାଇଗଲା ପରେ ତାହାର ଖୁସିରୁ ଅନ୍ତର୍ଚେତନାରୁ କ୍ଷରି ଆସିଛି, 'ଅଗ୍ନିମୀଡ଼େ ପୁରୋହିତମ୍' ପରି କବିତାର ଧାଡ଼ି !

ନୂଆନୂଆ ଉତ୍ପାଦନ ବ୍ୟବହାରରେ ଜୀବନକୁ ସୁଖମୟ ଓ ବଂଚିବାକୁ ସହଜ କରିବା ପରି ସମୀକ୍ଷକ ଭଲଟେୟାର (Francois Marie Voltaire) ନିର୍ଣ୍ଣୟ କରିଥିଲେ ଏକ ସବ୍‌ଜେକ୍ଟିଭ୍ ସ୍ୱାଦ ତତ୍ତ୍ୱ, କବିତା ଡ଼େକୋରମ୍ ବା ଶିଷ୍ଟାଚାର ଓ ବହୁ ଧ୍ୱନିର ମିଳିତ ମୂର୍ଚ୍ଛନା ସ୍ୱାଦ ଦୃଷ୍ଟିରୁ ହେବ 'ଗୁଡ୍' । ଡ୍ରାମାଟିକ୍ ନିୟମ ଦୃଢ଼ ଭାବେ ମାନିବ । ଏହା ଥିଲା ତାଙ୍କ ଆଧୁନିକତାର ନିୟମ । ଜର୍ମାନରେ Gotthold Ephraim Lessing ଏବଂ J.G. Herder କବିତାର ଧାରାବାହିକତାରେ ସଂକେତ ଓ ଚିତ୍ରାତ୍ମକ ଫର୍ମ୍ ରଚନା ସହିତ ଆକ୍ସନ ଇନ୍ ଟାଇମ୍, ବର୍ଣ୍ଣନାତ୍ମକ ଶୈଳୀ ଓ ଗୀତିମୟତାକୁ ନେଗ୍‌ଲେକ୍ଟ ହୁଏ ସେମାନଙ୍କ 'ଅର୍ଗାନିକ ଫର୍ମ୍' ଆଦର୍ଶ ପଥ ।

ଆଧୁନିକତାର ମୂଳ ପରିବର୍ତ୍ତନ ଓ ନୂତନ କିଛି ପୁରାତନକୁ ବଦଳାଏ ନିର୍ମାଣ । ଆଧୁନିକତାର ଜଣେ ଶ୍ରେଷ୍ଠ ବ୍ୟାଖ୍ୟାକାର ଅକ୍ଟାଭିଓ ପାଜ୍ କରିଛନ୍ତି ଉଲ୍ଲେଖ That of the modern age appears on the principle of the change. ବହୁ ଈଶ୍ୱରବାଦୀ (Pagans) ସମୟ ବୃତ୍ତ ଥିଲା ଅସୀମ ଏବଂ ନୈର୍ବ୍ୟକ୍ତିକ, କିଂତୁ ଖ୍ରୀଷ୍ଟିଆନ୍ ସମୟ ସୀମିତ ଓ ପର୍ସନାଲ । ତାହା କାବ୍ୟତତ୍ତ୍ୱକୁ ଯେତେବେଳେ କଲା ଦଖଲ ଅସୀମ ଓ ବ୍ୟାପକ ଦୃଶ୍ୟ - ବିମ୍ବ ହୋଇଗଲା ସଂକ୍ଷିପ୍ତ ଓ ସୀମିତ । କବି ସହ ଏକତ୍ର ଶଯ୍ୟାରେ ଆସି ଶୟନ କଲା ଚନ୍ଦ୍ର । 'ପବନର ପାନିଆ' ପ୍ରେମିକାର ବାନ୍ଧିଲା କେଶ ! କବିତାରେ ଶବ୍ଦ ପ୍ରୟୋଗର ପରିବର୍ତ୍ତନ ହିଁ ଆଧୁନିକତାର ସର୍ବଶ୍ରେଷ୍ଠ ଲକ୍ଷଣ ! ହରିହର ମିଶ୍ରଙ୍କ ଆଧୁନିକତାର ଚିତ୍ରିତ ଚିତ୍ରକୁ ଦେଖନ୍ତୁ - ଧୂସର କଙ୍କଡ଼ା କେତୋଟି / ନାଲି ଆଖି ଦେଖାଉଥିଲେ / ପୁରୁଣା ବର୍ଷଭଳି ବିଦାୟୀ ସୂର୍ଯ୍ୟକୁ (କୋଇଲି ତୁ ଚୁପ୍ ରହ, ପୃଷ୍ଠା ୮୦) ! ମୁହାଁଣରୁ / ନଈରୁ ଲମ୍ବା ଦୁଇ ହାତ ଟେକି / ସମୁଦ୍ର କାହାକୁ ପ୍ରଣାମ କରେ ଯୋଡ଼ି ହସ୍ତରେ ସେ / ଧରା ପଡ଼େ ନାହିଁ କି ଜାଣିବାର ଯୁ' ନାହିଁ ! (ପୃଷ୍ଠା ୮୧, କୋଇଲି ତୁ ଚୁପ୍, ରହ)

ପ୍ରଥମ ଚିତ୍ର - ଧୂସର କଙ୍କଡ଼ା ନାଲି ଆଖି ଦେଖାଉଥିଲେ ସୂର୍ଯ୍ୟକୁ

ଦ୍ୱିତୀୟ ଚିତ୍ର - ଅସ୍ତ ସୂର୍ଯ୍ୟର ଦୃଶ୍ୟ: ପୁରୁଣା ବର୍ଷଭଳି ବିଦାୟୀ ସୂର୍ଯ୍ୟ

ତୃତୀୟ ଚିତ୍ର - ମୁହାଁଣରେ ନଈର ଦୁଇ ଧାର: ସମୁଦ୍ରର ଦୁଇ ହାତ ନମସ୍କାର ମୁଦ୍ରାରେ ଯୋଡ଼ି ହୋଇଥିବା ଦୁଇଟି ପାପୁଲି ! ସମୁଦ୍ର କାହାକୁ ନମସ୍କାର କରୁଛି ? କାବ୍ୟପୁରୁଷର ଜାଣିବାର ଯୁ' ନାହିଁ ! ଅଭିବ୍ୟକ୍ତିର ଏହି ଶୈଳୀ ପାରମ୍ପରିକ ଗଦ୍ୟ ଏବଂ ପଦ୍ୟ ଶୈଳୀ ଠାରୁ ଭିନ୍ନ ଏବଂ ନୂତନ । କଳାରେ ଏହି ଅଭିବ୍ୟକ୍ତିଗତ ପରିବର୍ତ୍ତନ ଓ ନୂତନତ୍ୱର ନାମ ଆଧୁନିକ ।

'ଏ ଟ୍ରାଡ଼ିସନ୍ ଏଗ୍ନେଷ୍ଟ୍ ଇଟସେଲ୍ଫ' ପ୍ରବନ୍ଧରେ ଆଧୁନିକତାର ଲକ୍ଷଣକୁ ଚିହ୍ନାଇଛନ୍ତି ପାଜ୍, The modern age is the first to exalt change and convert it in to a foundation. Difference, separation, otherness, plurality, novelty, evolution, revolution, history - all these words can be condensed in one: future not Past not eternity, not time which is but time which is not yet and which always will be to come: this is our archetype. ପାଜ୍ ପ୍ରକାଶ କରିଛନ୍ତି ଆଧୁନିକତାର ଆର୍କିଟାଇପ୍ । ବିବିଧତା, ବିଚ୍ଛିନ୍ନତା, ବହୁତ୍ୱ ନବୀନତ୍ୱ, ବିବର୍ତ୍ତନ, ବିପ୍ଳବ ଓ ଇତିହାସ - ସବୁ ଗୋଟିଏ ଶବ୍ଦରେ ହୋଇଛି ଘନୀଭୂତ, ତାହା ଭବିଷ୍ୟତ ! ଅତୀତ, ଚିରନ୍ତନ କିଂବା ତାହା ନୁହେଁ କାଳ, ତାହା ସର୍ବଦା ଗୋଟିଏ 'ଆସୁଛି' ! ଆଧୁନିକ ସେହି 'ଆସୁଛି'ର ପଦୋନ୍ନତି; ପରିବର୍ତ୍ତନ ଓ ରୂପାନ୍ତରର ଅନୁଷ୍ଠାନ । ହରିହର ମିଶ୍ରଙ୍କ ଗୋଟିଏ ସୁନ୍ଦର ଚିତ୍ରକଳ୍ପ: 'ଅଜଣା ଆଗନ୍ତୁକର ସୁସମାଚାର / ଆମ ବିଶ୍ୱାସ.., ଯଦିଓ - 'କର୍ମ ମୁଖର ଜୀବନର କୋଳାହଳ !'

ଜୀବନକୁ ନେଇ ତ ସବୁ ଶୈଳୀ ! ଜୀବନ - 'ପରିଚୟ ନଥିବା ସେ ଯାଗା' ! 'ଗଜଲ / ଗୋଲାପ / ସ୍ୱସ୍ତି ବାଚନ/ ଭଜନ..' ଗୋଟିଏ ଟ୍ରାଡ଼ିସନ୍ ଭିତରେ 'ଫିଲିଂ' ! Verbal equivalent ର ଫିଲିଂ, ଦିଶୁଛି ଅବ୍‌ଜେକ୍ଟିଭ୍ କୋରିଲେଟିଭ୍ ହୋଇଯିବାପରି ! ଆଧୁନିକତାର ଭୂଗୋଳରେ ପରିଚ୍ଛନ୍ନ ଶବ୍ଦବସାଣ, ଭାବ ଓ ଅନୁଭବକୁ କରିଛି ସଟିକ, ଏହା ହରିହର ମିଶ୍ରଙ୍କ ଆଧୁନିକତାର ଧବଳ ପୃଷ୍ଠ । 'ଅନ୍ଧାରରର ଧଳା ପେଚା', ତାଙ୍କ ନିଜ ଶବ୍ଦ ବିମ୍ବ !

'ଭବିଷ୍ୟତର ବିପ୍ଳବ' ପ୍ରବନ୍ଧରେ ପାଜ୍ ଋଷୀୟ ନେତା ଓ ଲେଖକ ଟ୍ରଟସ୍କିଙ୍କ Literature Revolution ରୁ ସ୍ମରଣ କରନ୍ତି, The modern age began when the conflict between God and being, reason and revelation was considered insoluble. Contrary to what happened in Islam, reason grew at the expense of divinity. God is one and indivisible. (He does not tolerate otherness except as the sin of non-being; mean while reason tends to split off from itself.)

ଈଶ୍ୱର ଓ ଜୀବସତ୍ତା ମଧ୍ୟରେ ସମାଧାନ ହୋଇପାରୁନଥିବା ଦ୍ୱଂଦରୁ ଆଧୁନିକ କାଳର ଜନ୍ମ । ରିଜିନ୍ ଓ ରିଭିଲେସନ୍ ଅସମାଧାନପୂର୍ଣ୍ଣ । ରିଜିନ୍ ଦିଗଦ୍ୱର ବ୍ୟୟରେ ବଢ଼ି ଉଠିଛି । କିଂତୁ ରିଭିଲେସନ୍ (ଆଶ୍ଚର୍ଯ୍ୟ କଳାଭଳି ତଥ୍ୟର ପ୍ରକାଶ) ସେଣ୍ଟ ଜନ୍‌ଙ୍କ ଆଖ୍ୟାନ । ପୂର୍ବରୁ ପାଜ୍ ପ୍ରକାଶ କରିଛନ୍ତି, ଖ୍ରୀଷ୍ଟିୟାନ୍ ସମୟ ସସୀମ ଓ ପର୍ସନାଲ୍ । ସେହି ପର୍ସନାଲ ସମୟ କବିତା ସଂଗଠନରେ ପ୍ରବଳ ଭାବରେ ବିସ୍ତାରିତ

କରିଛି ପ୍ରଭାବ । ସବୁଠି କବି ଅଛନ୍ତି, 'ମୁଁ' ଅଛି, ମାତ୍ର ତାହା ନୈର୍ବ୍ୟକ୍ତିକ । କବିଙ୍କ 'ମୁଁ' ଟିର ନିରାପଦ ଭୋଗର ନାମ ସମକାଳ କବିତା । କବିତା କବିଙ୍କ ସ୍ଥାପିତ ନିରାପଦ ଶବ୍ଦର ସ୍ୱରାଜ୍ୟ । କବିତା କବିଙ୍କ ଭବିଷ୍ୟତ ତୋଳା ଅମର ଭୁବନ ।

ପାଜ୍ ଆଧୁନିକତାର ସ୍ୱଭାବକୁ ପରିଚିତ କରାଇଛନ୍ତି, In the past the goal of criticism was truth; in modern age truth is criticism. Not eternal truth, but the truth of change. ସତ୍ୟକୁ ଅନ୍ୱେଷା କରୁଛନ୍ତି ଅନ୍ୱେଷିତ ପ୍ରାଜ୍ଞ । ଅଭିଜ୍ଞତାର ପରୀକ୍ଷା କଲାବେଳେ ବର୍ଣ୍ଣନା ଓ ବ୍ୟାଖ୍ୟା, ଦୁଇ ପ୍ରକାର ମାର୍ଗ ଦେଇ କବିତା ସୃଷ୍ଟିର ଆଚରଣ କରିଥାନ୍ତି କବି । ତାଙ୍କ ବର୍ଣ୍ଣନାରେ ଥାଏ ପ୍ରକୃତି ଓ ବ୍ରହ୍ମାଣ୍ଡୀୟ କାରଣ ଏବଂ ବିଚାରରେ ରହେ ପରୀକ୍ଷା ସିଦ୍ଧ କୈଫତ୍ । ଆଧୁନିକତାର କନସେପ୍ଟ ପରିସରରେ ବିଦ୍ୟମାନ ବ୍ୟକ୍ତି ସତ୍ତାର ସର୍ବୋଚ୍ଚ ସ୍ୱୀକୃତି ଓ ସମ୍ମାନ । ସେହି ଦୃଷ୍ଟିରୁ 'କୋଇଲି ତୁ ଚୁପ୍ ରହ' କାବ୍ୟ ପୁରୁଷର ନିର୍ଦ୍ଦେଶରୁ ଏହା ହୁଏ ସିଦ୍ଧ । 'କୋଇଲି' ଓଡ଼ିଆ କବିତା ପରମ୍ପରାରେ ବହୁ ପ୍ରଚଳିତ ଓ ବହୁ ପ୍ରଭାବିତ ଏକ ତିର୍ଯ୍ୟକୀୟ ବିମ୍ବ । ଓଡ଼ିଆ କବିତାର ଶୈଶବରେ ମାର୍କଣ୍ଡ ଦାସ 'କୋଇଲି'କୁ ମାନବବାଦର ସମ୍ବନ୍ଧଶୀଳ ଜୀବ କରି ରଚନା କରିଥିଲେ 'କେଶବ କୋଇଲି' । ସେହି 'ସଖୀ' (ଯଶୋଦାଙ୍କ) କୋଇଲିର ଆଧୁନିକ ସଂସ୍କରଣ ହରିହର ମିଶ୍ରଙ୍କ କୋଇଲି । ତାଙ୍କ କୋଇଲି ବହମାନ ସମକାଳ । ନୁହେଁ ବସନ୍ତ ଋତୁର ଦୂତ । ଏକବିଂଶ ଶତକ ଅନୁଭୂତିରେ ଆଉ ବସନ୍ତ ଅଛି ? ମଳୟ କାହିଁ ?

ନିଜ ସଂପର୍କରେ ନିଜେ' କହିବାବେଳେ ନିଜ କାବ୍ୟ ବ୍ୟକ୍ତିତ୍ୱର ସୂଚନା ପ୍ରଦାନ କରିଛନ୍ତି ହରିହର ମିଶ୍ର, 'ସମଷ୍ଟିଗତ ଚେତନା ଠାରୁ ନିଜ ସତ୍ତାକୁ ପୃଥକ୍ କରି ବିଚାର ହେବାଭଳି ନିଷ୍କରୁଣ ଭାବ ଓ କଠୋର ବ୍ୟକ୍ତିତ୍ୱ' ନୁହେଁ । ବ୍ୟକ୍ତି ଓ ସମୂହ ଅନ୍ତର୍ଚେତନା ବ୍ୟାପକ । ବହୁ ସଂସ୍କାର ବିଜଡ଼ିତ ଚେତନାର ତିନୋଟି ସ୍ତରକୁ ଓ ଅନ୍ତର୍ମୁଖୀ ଚେତନାର ବାସ୍ତବ ସ୍ତରକୁ ବହିର୍ଜୀବନର ଚିତ୍ରରେ ସଂକୁଚିତ ଭାବେ ସିଏ କରିଛନ୍ତି ପ୍ରକାଶିତ, ଏହା ତାଙ୍କ ମତ ।

ଚେତନା (Conscious) ନିମ୍ନକୁ ଥାଏ ତ୍ରିସ୍ତର ଏବଂ ଉର୍ଦ୍ଧ୍ୱକୁ ଥାଏ ତ୍ରିସ୍ତର । ନିମ୍ନକୁ ଥିବା ତ୍ରିସ୍ତର ହେଲେ, ଅନ୍‌କନସସ୍ ପ୍ରଥମ ସ୍ତର କହନ୍ତି ଫ୍ରଏଡ୍, ଦ୍ୱିତୀୟ ସ୍ତର କଲେକ୍ଟିଭ୍ ଅନ୍‌କନ୍‌ସସ୍ (ସମଷ୍ଟି ଅବଚେତନ) । ଚେତନା ଉର୍ଦ୍ଧ୍ୱକୁ ଥାଏ ସୁପରକନ୍‌ସସ୍, ବା ଅତିଚେତନ ସ୍ତର, ତା' ଉର୍ଦ୍ଧ୍ୱକୁ କଲେକ୍ଟିଭ୍ କନସସ୍, ସମଷ୍ଟି ଚେତନ ଏବଂ ଶେଷ ସ୍ତର କସ୍ମିକନସସ୍ ବା ବ୍ରହ୍ମ-ଚେତନ ।

ଚେତନର ବିପରୀତ ଅଚେତନ ଚେତନାର ଶୁପ୍ତ ସ୍ତର, ଅବଚେତନ ଜଡ଼ସ୍ତର ଏବଂ ସଚେତନ ଚେତନ ସ୍ତର । ଉର୍ଦ୍ଧ୍ୱ ଚେତନା ଅଧିମାନସସ୍ତର, ଉର୍ଦ୍ଧ୍ୱତର ଚେତନା ଅତିମାନସ ସ୍ତର । ଶ୍ରୀଅରବିନ୍ଦ ରଚନା କରିଛନ୍ତି ଅଧିମାନସ କବିତା, ଦ୍ରଷ୍ଟବ୍ୟ ପୁସ୍ତକ ଓଭରହେଡ୍ ପୋଏଟ୍ରୀ ! କବିତା ଯେମିତି ଦି ମଂତ୍ରେ ଅଫ ଦି ରିଅଲ୍ ! ଯେତେବେଳେ କବିତା ଉଚ୍ଚତମ ଲକ୍ଷ୍ୟ କରେ ସାଧନ, ସତ୍ୟ ଅନିବାର୍ଯ୍ୟ ଏକ ଆକ୍ଟିଭିଟୀ ଅଭିବ୍ୟକ୍ତ କରିଥାଏ ପ୍ରାଣ ଓ ଆତ୍ମାଙ୍କୁ (Spirit and soul) । ମନୁଷ୍ୟ ଆତ୍ମାର ଗଭୀରତାରୁ ଏକ କହିବା ଶକ୍ତି ଏବଂ ବସ୍ତୁ ଭିତରେ ବ୍ରହ୍ମାଣ୍ଡୀୟ ଆତ୍ମାଙ୍କୁ ପୋଏଟିକ୍ ସ୍ୱାଟ୍‌ରେ ଆବିର୍ଭୁତ କରାଇଲେ ହୁଏ କବିତା ମଂତ୍ର ଅଫ୍ ଦି ରିଅଲ୍ ବା ଅଧିମାନସ କବିତା । କବିତା ଶବ୍ଦରେ ଅବତରଣ ! ହରିହର ମିଶ୍ର କହୁଛନ୍ତି, 'ମୁଁ ତରଳି ଯାଏ, ବାଷ୍ପୀଭୂତ ହୋଇଯାଏ, ବର୍ଷିଯାଏ, ଗର୍ଜିଉଠେ, କଚାଡ଼ି ହୋଇପଡ଼େ, ଉଠେ ଓ ଢେଉଭଳି ଚୋଟ ହାଣେ... । ଇଲିୟଟ ବି ଉଚ୍ଚାରଣ କରିଛନ୍ତି ଏଇ ସ୍ୱର –

Descend lower, descend only
In to the world of perpetual solitude
world not world, but that which is not world
internal darkness, deprivation
x x x
Desiccation of the world of sense
Evaccuation of the world of fancy
Inoperancy of the world of spirit
This is the other way, and the other
is the same, not in movement
But abstention...

ଯେଉଁ 'ଅବ୍‌ଷ୍ଟେସନ୍'ଟି ସୁପରିବାହୀ ରାସ୍ତା, ଯେଉଁଠି ଟାଇମ୍ ପାଷ୍ଟ୍ ଏଣ୍ଡ୍ ଟାଇମ୍ ଫ୍ୟୁଚର୍ !

ସ୍ପେଣ୍ଡର ଅଙ୍କିତ କରିଛନ୍ତି –

I am that witness through whom the whole
knows it exists within the coil of blood
whispering under sleep, there moves the blood

of stars, batties, dark and frozen pole -
all that I am not. The cold stone
unfold its angel for me. On my dreams ride
the racial legends. The stars outside
Glitter under my rib. Being all, I am alone.

ମୁଁ ଯିଏ କହୁଚି, ମୁଁ ଡ଼ାକୁଚି, ସେଇ ଆଖି ମୁଁ, ଯିଏ ଦର୍ପଣ, ଯେଉଁ ଜିନିଷକୁ ଦେଖେ, ନଥିଂ ଏକସେପ୍ଟ ଦେମ୍‌ସେଲ୍‌ଭେସ୍! (ପୋଏଟ୍‌ସ ଅଫ୍ ଡ଼େଡ଼ିକେସନ୍, ପୃଷ୍ଠା ୪୪, ଷ୍ଟିଫେନ୍ ସ୍ପେଣ୍ଡର) । ସିରିଅସ୍ ମନର Inner spirit ନିମ୍ନ ପ୍ରାଣର ଉତ୍ତରଣକୁ ଗୋଟିଏ ସୀମାଠାରେ ଅଟକାଇ ରଖି ବିଷୟ (themes) ଅଭିବ୍ୟକ୍ତ କରିଛି । ବଦଳୁଥିବା ପୃଥିବୀର ସତ୍ୟକୁ ସମ୍ମୁଖୀନ ହୋଇଛି ଶାଶ୍ୱତ ନିଃସଙ୍ଗତା । ଏଣୁ କୋଳାହଳକୁ ସେ ଚୁପ୍ କରାଉଛି, ତୁ ଚୁପ୍ ରହ କୋଇଲି! କୋଇଲି କେତେବେଳେ ଚୁପ୍ ରହେ? କିଏ କରେ କୂଜନ, କୋକିଳ ନା' କୋକିଳା? ପୁରୁଷ ପକ୍ଷୀଟି ସାଧାରଣତଃ କରିଥାଏ Seduction, ତେଣୁ ସିଏ ଡ଼ାକିଥାଏ କୁହୁ-କୁହୁ! ମଧ୍ୟଯୁଗୀୟ ସାହିତ୍ୟରେ କୃଷ୍ଣଙ୍କ ମୁରଲୀ ଡ଼ାକୁଥିଲା ରାଧା-ରାଧା! ଭ୍ରମର ଗୁଂଜନ କରୁଥାଏ ଏବଂ ପୁଷ୍ପ ସାନ୍ନିଧ ଲାଭ କରୁଥାଏ । ଯେତେବେଳେ ସେ ମଧୁ ତୃପ୍ତ ହୋଇଯାଏ ଆଉ ଶୁଭେ ନାହିଁ ଗୁଂଜନ! ଏଠି କୋଇଲି କେତେବେଳେ ଚୁପ୍ ହେବ? ତା' ଅନ୍ତର୍ଚ୍ଚେତନାରେ ନାହିଁ ମଧୁଶୋଷ! କବିତାର ଗର୍ଭଗୃହକୁ ଅଧିକାର କରିବସିଛି ସମକାଳ ସାମାଜିକ ଇତିହାସ । କେଉଁଠି ଭ୍ରଷ୍ଟାଚାର୍ଯ୍ୟ, ତ କେଉଁଠି ଆନ୍ନା ହଜାରେ, କେଉଁଠି ଫିପା ୨୦୧୦' ତ କେଉଁଠି 'ପଣବନ୍ଦୀ'! ସାମାଜିକ ଇତିହାସର ଦୃଶ୍ୟ ମୁକୁଳା କରିଛି କବିତାରେ କେଶ! ଆତ୍ମହତ୍ୟା କରିଥିବା ଆତ୍ମୀୟପରି ଏଠି ବର୍ତ୍ତମାନ । ବର୍ତ୍ତମାନ ଏଠି ସାଂସ୍କୃତିକ ସନ୍ଧିକ୍ଷଣ (ଅତିଥି ଦେବତା' କବିତା), ମୂଲ୍ୟବୋଧ କ୍ଷୟ ଓ ନୂଆ ମୂଲ୍ୟବୋଧର ଘଟୁଛି ବିସ୍ଥାପନ । 'ଶେଷ ଦାମ୍ପତ୍ୟ'ର ସୁଖ କୁ ସ୍ମରଣ କଲାବେଳେ ବଦଳା ସଂସାର କବିତାର ଷ୍ଟିଲ୍ ଠେକିରୁ ସମୟ ଚୁଲିରେ ଉତୁରି ପଡୁଛି! କବିତା କହୁଛି ଚୁଲିକଥା ଓ ତାତିକଥା ଖାଲି ନୁହେଁ ଉତୁରି ପଡୁଥିବା ମୂଲ୍ୟବୋଧ କଥା ମଧ୍ୟ! ବ୍ୟକ୍ତି ତାତ୍ତ୍ୱିକ ଅନୁଭୂତିର ସଦ୍ୟତା ସହିତ ଗୋଟିଏ ବୃହତ୍ ସମୃଦ୍ଧ ପରିସର ଉନ୍ମୁକ୍ତ ରହିଲା କାବ୍ୟିକ ସୌଧର ନୂତନ ରଙ୍ଗ ମହଲ ନିର୍ମାଣ ପାଇଁ ।

ସଚ୍ଚିବାବୁ ଲେଖିଛନ୍ତି, 'ଆଧୁନିକତାର ଅର୍ଥ ରୂପାନ୍ତର' । ନୂତନ ମୂଲ୍ୟବୋଧର ନିଶାଣ ଉତ୍ତୋଳନ!

ଇଂରାଜୀ ସାହିତ୍ୟରେ ଗୋଟିଏ ଯୁଗର ନାମ ଆଧୁନିକବାଦ ଯୁଗ, ଏହା ଅବଧି ଦୁଇଟି ଦଶକ, ୧୯୧୦-୩୦ ପର୍ଯ୍ୟନ୍ତ। ୧୯୧୪-୧୮ ମହାଯୁଦ୍ଧ, ଅର୍ଥନୈତିକ ଅତ୍ୟଧିକ ଅବସନ୍ନ ଅବସ୍ଥାର ଆରମ୍ଭ ଏବଂ ସାମାଜିକ କୋଳାହଳ ଓ ଶାରୀରିକ - ମାନସିକ ଅସହ୍ୟ ବେଦନା ଚାରିଆଡ଼ ଚୌଡ଼େଇ ଯାଇଛି। ତଥାପି ସାଂସ୍କୃତିକ ସୃଜନୀର ବିରାଟ ଗୋଟିଏ ଯୁଗ ଉତ୍ପାଦିତ କରିଛି, ଦି ଓ୍ୱେଷ୍ଟଲ୍ୟାଣ୍ଡ, ପାଉଣ୍ଡଙ୍କ Hugh selayn mauerley. ଉପନ୍ୟାସ କ୍ଷେତ୍ରରେ ଜୟସ୍‌ଙ୍କ Ulysses, ଲରେନ୍ସଙ୍କ women in love ଭଜିନିଆ ଉଲ୍‌ଫଙ୍କ 'ଟୁ ଦି ଲାଇଟ୍ ହାଉସ୍' ପରି ସୃଷ୍ଟି। ଏହି ସମୟରେ ଇଏଟସ୍‌ଙ୍କ The Tower ପ୍ରକାଶ ପାଇଛି। ଏଗୁଡ଼ିକର ରଚନା ଶୈଳୀ, ପରିବେଷିତ ଅନୁଭୂତି ଏବଂ ଦୃଷ୍ଟି, ଯୁଦ୍ଧୋତ୍ତର ମଣିଷ ଯେଉଁ ଅସହାୟତା, ହତାଶା ଓ ଅଲିଭା ଦୁଃଖକୁ ପ୍ରକାଶ କରିଛି, ସେହି ଅବସ୍ଥାକୁ ଆଧୁନିକ ବୋଲି କୁହାଯାଇଛି। ଏହି ଦୁଇ ଦଶନ୍ଧିର ବୌଦ୍ଧିକତା ଐତିହାସିକ, ରାଜନୈତିକ, ଅର୍ଥନୈତିକ ଯେଉଁ ପ୍ରଭାବ ସଂସ୍କୃତି କ୍ଷେତ୍ରରେ ପକାଇଛି, ଶତକଟିର ଆକୃତି ଅଲଗା ହୋଇଯାଇଛି। ବହୁ ଦୃଷ୍ଟି ଗୋଟିଏ ସ୍ୱୀକୃତିରେ ସ୍ୱତଃ କେଂନ୍ଦ୍ରିତ ହୋଇଛି- ତାହା ଆଧୁନିକବାଦ।

ଗୋଟିଏ ଭୟାଚ୍ଛନ୍ନ ପରିବେଶ ସହିତ ଆଧୁନିକବାଦୀଙ୍କ ସଂପର୍କ କଳାତ୍ମକ ଚେତନାକୁ ଦେଇଛି ଆକୃତି ।ଭୀରୁ ହୋଇଯିବା, ପୌରୁଷହୀନ ହୋଇଯିବା ଓ ଅସହାୟ ହୋଇଯିବା ସହିତ ପୁରୁଣା ବୁନିଆଦି ଭାଙ୍ଗି ପଡ଼ିବା, ଧାର୍ମିକ ପତନ ଘଟିବା ପ୍ରଭୃତି ଅସଂଖ୍ୟ ଇସ୍ୟୁ ଚିନ୍ତାର ଇତିହାସକୁ ବଦଳାଇଛି। 'ଦି ଷ୍ଟ୍ରଗଲ୍ ଅଫ୍ ଦି ମଡ଼େର୍ଣ୍ଣ' ଷ୍ଟିଫେନ୍ ସ୍ପେଣ୍ଡର ଲେଖିଛନ୍ତି, Modern art is that in which the artist reflects awareness of an unprecedented modern situ-ation in form and idiom.

ଅଭୂତପୂର୍ବ ଆଧୁନିକ ପରିସ୍ଥିତି ଶିଳ୍ପୀ ଆଙ୍ଗିକରେ ପ୍ରତିଫଳିତ କରାଇ କଲେ ସଚେତନ ଏବଂ ଆକ୍ଷରିକ ଅର୍ଥ ଠାରୁ ଭିନ୍ନ ବ୍ୟାକାଂଶ ସେହି ପ୍ରତିଫଳନକୁ କଳା ଅର୍ଥପୂର୍ଣ୍ଣ। ଦ୍ୱିତୀୟ କଥାଟି ହେଲା, the principle of reality in our time is peculiarly difficult to grasp, and that 'realism' is not an adequate approach to it. ଆମ ସମୟ ବାସ୍ତବତାର ନୀତି ବିଶେଷ ଭାବରେ ବୁଝିବାକୁ କଷ୍ଟ ଏବଂ "ବାସ୍ତବବାଦ" କାର୍ଯ୍ୟରେ ଲାଗିବାରେ ନୁହେଁ ପର୍ଯ୍ୟାପ୍ତ। Richard Aldington ଜଣେ ଇମେଜିଷ୍ଟ, 'ଦି ପୋଏଟ ଏଣ୍ଡ ହିଜ୍ ଏଜ୍'ରେ ଯୁକ୍ତି ରଖିଥିଲେ, ଆଧୁନିକ ଯୁଗ that the age is incoherent... is no reason why art generally...should be incoherent. ଅବୋଧ୍ୟ ଯୁଗ, ଏହାର

କାରଣ କିଛିନାହିଁ, ଆର୍ଟ ସାଧାରଣତଃ ଅସଂଲଗ୍ନ ଭାବେ ଲିଖିତ, ଦୁର୍ବୋଧ ! ଏହାର ଉତ୍ତର Ulysses, Order and Myth ପ୍ରବନ୍ଧରେ ପ୍ରଦାନ କରିଥିଲେ ଟି.ଏସ.ଇଲିୟଟ- Instead of narrative method we may now use the mythical method. It is, I seriously believe a step towards making the modern world possible for art.

ଇଲିୟଟ୍‌ଙ୍କୁ ମନକୁ ଆସିଥିଲା ଯେ Joice was the pioneer of a valuable new method. କିଂତୁ ପ୍ରଶ୍ନଟିଏ ସବୁବେଳେ ଜୀବନ୍ତ ଥିଲା, ଆଧୁନିକ ଆବେଦନ a symptom of the confusion and helplessness.. a mirror of the decline of our world?

ତେବେ ଆଧୁନିକ କବିତାକୁ ଏହି ଟ୍ରେଣ୍ଡର ସମସ୍ତେ ଗ୍ରହଣ କରିଥିଲେ ଯେମିତି ଏକ ସେନ୍‌ସିଟିଭ୍ ସବ୍‌ଷ୍ଟାନ୍ସ । ଓ୍ୱେଷ୍ଟଲ୍ୟାଣ୍ଡର ନୀତି ଆଲୋଚନାରେ ବ୍ୟକ୍ତ କରିଥିଲେ ଆଇ.ଏ.ରିଚାର୍ଡ୍‌ସ - ... his poetry a ‘music of ideas.’the ideas are of all kinds, abstract and concrete, general and particular, and like the musician’s phrases, they are arranged, not that they may tell us something, but that their effects in us may combine in to a coherent whole of feeling and attitude and produce a peculiar liberation of the will. (Modernism, Page 18, by Peter Faulkner) ।

କବିତାରେ ସଂଗୀତର ଢାଞ୍ଚା ଏବଂ ଅବଷ୍ଟ୍ରାକ୍ଟ ଓ କଂକ୍ରିଟ୍ ଶବ୍ଦମାନ ସାଧାରଣତଃ ସଂଗୀତର ଧ୍ୱନିରେ ବ୍ୟବସ୍ଥିତ । ମାତ୍ର ସମଗ୍ର ଅନୁଭୂତି ମିଶ୍ରିତ ହେଉଛି ବୋଧଗମ୍ୟତା ସହିତ, ଶାବ୍ଦିକ ବ୍ୟବସ୍ଥାର କିଛିକୁ କରୁଛି ଫଳପ୍ରଦ । କିଂତୁ ସବୁଠୁ ବଡ଼ କଥା ହେଲା, Modernism is very much more self conscious about its own technique. (Modernism, page 20, Methuem & co ltd. London EC up GEE, 1977, by Peter Faulkner)

କବିତାରେ ମଡ଼େର୍ଣ୍ଣଜିମ୍ ସଚେତନ କରାଏ ଦୁଇଟି ଦୃଷ୍ଟି, ଗୋଟିଏ ଆଧୁନିକ ଗୁଣ ବିଦ୍ୟମାନ ଥିବା ସତ୍ତ୍ୱ ଦ୍ୱିତୀୟଟି ଇଲିୟଟଙ୍କ ନିର୍ଣ୍ଣୀତି ଏ ମଡର୍ଣ୍ଣ ସେନ୍ସିବିଲିଟୀ ବୋଲି ଉଲ୍ଲେଖ କରିଛନ୍ତି Frank Raymond Levis। ଆଧୁନିକତାର ଦୁଇଟି ମାର୍ଗ - କଳା ଓ ବାସ୍ତବତା । କଳାର ମାର୍ଗଟି ବିପଦ ସଙ୍କୁଳ ଓ ବାସ୍ତବତାର ମାର୍ଗଟି ବିଭ୍ରମମୟ, ଉଲ୍ଲେଖ କରିଛନ୍ତି ହର ପ୍ରସାଦ ଦାସ । ଦାର୍ଶନିକ ମିସେଲ ଫୁକୋଙ୍କ ଠାରୁ ସିଏ ସଂଗ୍ରହ କରିଛନ୍ତି ଆଧୁନିକତାର ଚାରିଗୋଟି ଗୁଣ ।

୧. ସମୟ ପ୍ରବାହରୁ ବିଛିନ୍ନ ହେବାର ଅନୁଭବ, ୨. ପରମ୍ପରାରୁ ଅଲଗା ହେବାର ଭାବ,

୩. ନୂଆନୂଆ ଲାଗିବାର ଅନୁଭୂତି ଓ ୪. ପଳାତକ ମୁହୂର୍ତ୍ତଟିକୁ ଲକ୍ଷ୍ୟକରି ମୁହ୍ୟମାନତା ।

ଆଧୁନିକ ଚେତନାର ପ୍ରବକ୍ତା ବୋଦ୍‌ଲେୟାର୍‌ଙ୍କ ଠାରୁ 'ଆଧୁନିକତା'କୁ ସଂଗ୍ରହ କରିଛନ୍ତି ହର ପ୍ରସାଦ ଦାସ, କ'ଣ ଓ କିପରି ହୁଏ ଏହା ସମ୍ପାଦିତ, ମୋଟ ପାଞ୍ଚଟି ଲକ୍ଷଣ –

୧. ଆଧୁନିକତା ସମୟର ପ୍ରବାହମାନତା ପ୍ରତି ଏକ ଦୃଷ୍ଟିକୋଣ

୨. ଦୃଷ୍ଟିଭଙ୍ଗୀ ଆପେଆପେ ଆସେ ନାହିଁ, ଏହା ଆୟାସ ସାଧ୍ୟ । କାଳ ମଧ୍ୟରୁ କାଳାନ୍ତର ଆବିଷ୍କାର ପାଇଁ ପ୍ରସ୍ତୁତ ଏ ଦୃଷ୍ଟିଭଙ୍ଗୀକୁ ଆୟତ କରିବାରେ ବହୁ କ୍ଳେଶ, ବହୁ ଜଟିଳତା ।

୩. ଆଧୁନିକତାର ଦୃଷ୍ଟିଭଙ୍ଗୀ, ସମୟର ପ୍ରବାହମାନତା ବିରୁଦ୍ଧରେ ଯୁଦ୍ଧ ଘୋଷଣା, ଏଥିରେ ବର୍ତ୍ତମାନକୁ ନାୟକତ୍ୱରେ ଅଭିଷିକ୍ତ କରିବାର ଇଚ୍ଛାଶକ୍ତି ଓ ପ୍ରେରଣା ନିହିତ ।

୪. 'ଆଧୁନିକତା'ର ଦୃଶ୍ୟପଟରେ ମଣିଷ ଦର୍ଶକ ନୁହେଁ, ମଣିଷ ଅଂଶୀଦାର ଅଭିନେତା ।

୫. ଇତିହାସରେ କବିତା ଓ ପ୍ରଚଳିତ ଫେଶନ୍‌ରେ ଚିରନ୍ତନ ରୁଚିବୋଧର ସନ୍ଧାନ ଆଧୁନିକତାର କର୍ମ । (ଆଧୁନିକତାର ପରମ୍ପରା, ପୃଷ୍ଠା ୧୪–୧୫, ହରପ୍ରସାଦ ଦାସ)

ଓଡ଼ିଆ କବିତାରୁ ସେ ତିନୋଟି ପରିପୂରକ ଆଧୁନିକତାର ପରମ୍ପରାର ସ୍ରୋତ ଦେଖାଇଛନ୍ତି ।

ସେଗୁଡ଼ିକ : ୧. କଥିତ ଭାଷାକୁ କାବ୍ୟ – ଭାଷାରେ ରୂପାନ୍ତରିତ କରିବାର ନିପୁଣତା

୨. ବିମ୍ବ ନିର୍ମାଣର ଅଲୌକିକତା

୩. ବ୍ୟକ୍ତି ଚେତନାକୁ ସାର୍ବଜନୀନ ଚେତନାରେ ପରିଣତ କରିବାର ଦାର୍ଶନିକତା ।

ଶୈଳୀରେ ବା ବକ୍ତବ୍ୟରେ ଯାହା କିଛି ନୂଆ ଲାଗୁଛି, ତାହା ଆଧୁନିକ । ତା'ନହେଲେ ଆଧୁନିକ କନ୍‌ସେପ୍ଟଟି ଅସ୍ପଷ୍ଟ, ଆରମ୍ଭରେ ସୂଚିତ କରିଛନ୍ତି ଆଲୋଚକ ଶ୍ରୀଯୁକ୍ତ ଦାସ । ତେଣୁ ଭୁସୁକୁପାଦ, ସାରଳା ଦାସ, ଜଗନ୍ନାଥ ଦାସଙ୍କ ଠାରୁ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଉକ୍ତ ଚରଣ, ବଳଦେବ ରଥ, ଭୀମ ଭୋଇ, ନନ୍ଦ କିଶୋର ଓ ମାୟାଧର ମାନସିଂହ ଆଦି ତାଙ୍କ ଆଧୁନିକତାର ପରମ୍ପରା ଭିତରେ ସ୍ଥାନୀତ ହୋଇ ରହିଛନ୍ତି ।

'କୋଇଲି ତୁ ଚୁପ୍ ରହ'ର କବିଙ୍କୁ ଏହି ଦୃଷ୍ଟିରୁ ଅନାଧୁନିକ ଓ ଆଧୁନିକତାର ପରମ୍ପରା ରହିତ ବୋଲି କୁହାଯିବ କେମିତି ? କିଛି ଭାବନ୍ତି ଆଧୁନିକ କାଳଗତ ଦୃଷ୍ଟି ଅଟେ ସମକାଳ ଏବଂ ଗୁଣଗତ ଦୃଷ୍ଟିରୁ ବା ବୈଶିଷ୍ଟ୍ୟ ଗତ ଦୃଷ୍ଟିରୁ ନୂଆବାଗ । ଫ୍ୟାଶନର ପରିବର୍ତ୍ତନ ହେତୁ ସ୍ୱାଦ ଓ ରୁଚିର ବଦଳା ସ୍ଥିତି ! କବିତା ତ ସବୁବେଳେ ଖଣ୍ଡେ ବଦଳା ଅଭିବ୍ୟକ୍ତିର ନୂଆଶାଢ଼ୀ !

ଜି.ଏସ୍.ଫ୍ରେଜର୍ ଖଣ୍ଡେ ବହି ଲେଖିଛନ୍ତି 'ଦି ମଡ୍ରେର୍ଣ୍ଣ ରାଇଟର୍ ଏଣ୍ଡ୍ ହିଜ୍ ୱାର୍ଲଡ୍' ଏହାର ପ୍ରଥମ ଭାଗର ତୃତୀୟ ପର୍ବ 'କଂପ୍ଲେକ୍ସିଟୀ', ଆଲୁସିଭ୍‌ନେସ୍, ଆଇରନୀ, ଅବସ୍କୁରିଟୀ ଇନ୍ ମଡ୍ରେର୍ଣ୍ଣ ପୋଏଟ୍ରୀ, କବିତାରେ ଆଧୁନିକତା ସିଏ ଶୀର୍ଷକ ରଖି ବ୍ୟାଖ୍ୟା କରିଛନ୍ତି । ପାଠକଙ୍କ ତୀକ୍ଷ୍ଣ ସେନ୍ସ କ'ଣ ମଡ୍ରେର୍ଣ୍ଣ ତାହା ବାରି ନେବେ ।... ...it is hard to suggest a single and simple touch stone for the note of modernity in poetry. Again, much poetry even of the remoter past strikes us as 'modern' in tone, while some good poetry of our own time... does not seem contemporary at all.

'ଟୋନ୍' ଦୃଷ୍ଟିରୁ ଆଧୁନିକ ମନେ ହେଉଥିବା Catullusଙ୍କ ଗୋଟିଏ କବିତା ସେ ଉଦ୍ଧୃତି ନେଇଛନ୍ତି –

I hate and love
you ask how that can be?
I do not know, but know it tortures me.

ରବର୍ଟ ବ୍ରିଜେସ୍‌ଙ୍କ ଧାଡ଼ି ସଂଗ୍ରହ କରିଛନ୍ତି, କହିଛନ୍ତି ନଟ୍ ଆଟ ଅଲ୍ ମଡ୍ରେର୍ଣ୍ଣ–

Love come in to Love
To the heart by courage and might

Escaped from hell
from the torment of raging fire
from the sights of the drawing main
from the shipwrack of fear and pain
from the track of night.

କେଉଁଥି ପାଇଁ ବ୍ରିଜେସ୍‌ଙ୍କ ଧାଡ଼ି ନୁହେଁ ଆଧୁନିକ ଫ୍ରେଜର କରିଛନ୍ତି ସ୍ପଷ୍ଟ, Where Catullus is tying a knot and pulling it tight till it hurts, Briges is beautifully unwinding the same knot ଆଗକୁ ଫ୍ରେଜର ରଖିଛନ୍ତି ନିଜ ମତ The 'modern' tone is the one which appeals to us in our Situation. So long as the age ties itself in to tight knots, we are likely to enjoy such hurtful knots in poetry. (Modern writer and his world, page 32) ଯୁଗକୁ ବାନ୍ଧିଛି ଯଂତ୍ରଣାର ଗଣ୍ଠି, ସେହି ଗଣ୍ଠିର ଯଂତ୍ରଣା କବିତାରେ ଉପଭୋଗ ହେଲେ କବିତା ହୁଏ ଆଧୁନିକ ? କବିତା ଏକ ନକଲ, ବିଶ୍ୱଗଣ ଚେତନାର ପ୍ରଜ୍ୱଳିତ ଯଂତ୍ରଣାର ନକଲ ଶବ୍ଦରେ ପ୍ରସାରିତ ହେଲେ ହୁଏ ଆଧୁନିକ ।

'କୋଇଲି ତୁ ଚୁପ୍ ରହ', କେତେ ସୁସ୍ପଷ୍ଟ ଓ କାବ୍ୟିକ ଫ୍ରେଜ ଓ Idiomର ଅଭିବ୍ୟକ୍ତ, 'ସହପାଠୀ ଧୋବଲିର / ଗୋଡ଼ ଖସିଗଲା ଗୋବରରେ / ଧଳାପାରା ଉଡ଼ିଗଲା ଦିଗନ୍ତ ସେପାରି / ଆଉ କେବେ ଆସିବନି ଫେରି !' 'ଧଳାପାରା ଉଡ଼ିଗଲା' Idiom, ଯାହାର ଅର୍ଥ ଆକ୍ଷରିକ ଅର୍ଥ ଠାରୁ ଭିନ୍ନ !

ମୁହଁ ବନ୍ଦ କୋଣାର୍କଭଳି
ମୁଁ ଚାହିଁ ବସିଥିଲାବେଳେ
ଆକାଶର ନୀଳ ହାୱାନିରୁ
ରକ୍ତ ଛିଟା ପୋଛା ସରିଲାଣି
ଛୋଟ ଛୋଟ ଧର୍ମପଦଙ୍କର ।

ଏହା ଆଉ ଗୋଟିଏ ଆଧୁନିକ କବିତାର ଛତ୍ର । କାବ୍ୟ ନାୟକର ମୁହଁ ବଂଦ କୋଣାର୍କଭଳି, କୋଣାର୍କ ମନ୍ଦିର ମୁଖଶାଳା ମୁହଁ ବାଲି ଓ ଇଟାରେ ବଂଦ ! ସିଏ ଅସହାୟ ଓ ନିରୂପାୟ । ବିପର୍ଯ୍ୟସ୍ତ ମଣିଷର ଭାଗ୍ୟ ଧୋବଲିର ସହପାଠୀଟିର ! ଭୟାନକ ପରିସ୍ଥିତି – 'ହଇଏ, ଜଳ ସ୍ଥଳ ଆକାଶ ବଂଦ ହୋଇଗଲେ / ଆମେ କେମିତି ଯିବା ମହାକୁମ୍ଭ ?' 'ମହାକୁମ୍ଭ' ଗୋଟିଏ ଅସାଧାରଣ ମିଥିକାଲ୍ ସିମ୍ବଲ ।

'ଏଠି ସିନା ତାପମାତ୍ରା ଛୟାଳିଶ'! ପାଣିପାଗ ବିପର୍ଯ୍ୟୟର ବାସ୍ତବବାଦୀ ଆଧୁନିକ ଅଭିବ୍ୟକ୍ତି କବିତାକୁ ଆଧୁନିକ ପ୍ରାଣ ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ କରିଛି। ଆଧୁନିକ ମୃତ୍ୟୁ ଚେତନାର ସ୍ୱର – 'ଶୁଭେ ସକାଳ ସଂଜରେ / ଯିବା ଫେରିବାର ସ୍ୱର ନିୟମିତ / ଅତି ପରିଚିତ। (କୋଇଲି ତୁ ଚୁପ୍ ରହ, ପୃଷ୍ଠା ୭)'

୨୦୧୨ରେ ଥିଲେ ସିନା, ମାହାର୍କେ
୨୦୧୫ କୁ ନବ କଳେବର କରିବା
ଯଦି ସ୍ୱପ୍ନରେ ଦାରୁର ସନ୍ଧାନ ମିଳେ
ମାଲ୍‌କାନ୍‌ଗିରି କି ନବରଙ୍ଗ ପୁରେ ?
ସ୍ମରଣ କରାଇ ଦିଏ ଇଲିୟଟଙ୍କ 'Gerontion'ର ଧାଡ଼ି-

History has many cunning passages,contrived corriders
And issues, deceives with whispering ambitions guides us by varities.

'ମାହାର୍କେ' ଇତିହାସର ଚତୁର ଗମନ ପ୍ରକ୍ରିୟା, ନବ କଳେବର ଏକ concrive corridor, ୨୦୧୨ ଓ ୨୦୧୫ ପ୍ରଭୃତି କାଳର ପ୍ରତୀକ। ମାଲ୍‌କାନ୍‌ଗିରି ଓ ନବରଂଗପୁର ନକ୍ସଲ ପ୍ରବଣ ଆତଙ୍କିତ ଭୂମି। 'ସ୍ୱପ୍ନରେ ଦାରୁ ସନ୍ଧାନ' ଗୋଟିଏ ପ୍ରାଚୀନ ପରମ୍ପରା ଭିତରୁ ଆଧୁନିକତା ବାଟ ଖୋଜିବାବେଳେ ଅନୁଭବ କରିଛି 'ବେଳା ଭଲ ନାହିଁ।'

ଜେନୁଇନ୍ ଲାଙ୍ଗୁଏଜ୍ ଅଫ୍ ପାସ୍‌ସିସନ୍ ଠାରୁ ଭିନ୍ନ କାବ୍ୟିକ ଡ଼ିକ୍ସନ। ... the proper diction of poetry consists in the language of the natural conversation of men under the influence of natural feelings

ହଁ ରେ କିଛି, ନାହିଁରେ କିଛି
ଏପରି ବିଶ୍ୱାସ କରି କାଳ କାଟୁଥିବା ମଣିଷକୁ
ଡ଼ାକୁଛ ମୈଦାନକୁ, ଡ଼ାକୁ ଥାଆ...
ପୁରୁଣା ପାରେଡ଼୍ ସେମିତି ଚାଲିଛି
ପୁରୁଣା ପଢ଼ିଆ ସେମିତି ପଡ଼ିଛି।
(ଏକା ଏକା ତାଳ ଗଛ, କୋଇଲି ତୁ ଚୁପ୍ ରହ, ପୃଷ୍ଠା ୧୮)

ଲାଙ୍ଗୁଏଜ୍ ଅଫ୍ ନାଚୁରାଲ୍ କନ୍‌ଭରସେସନ୍ ଏଠାରେ ଡ଼ିକ୍ସନ । ନାଚୁରାଲ୍ ଫିଲିସ୍ – 'ହଁ'ରେ କିଛି, ନାହିଁ କିଛି' କେତେ ସୁନ୍ଦର ବର୍ଣ୍ଣିତ ହୋଇଛି ! ଅନୁଭବର ଭାଷା କାବ୍ୟିକ ଗଢ଼ଣରେ କେତେ କାଚପରି ସ୍ୱଚ୍ଛ ! ଅଳଙ୍କରଣ ନାହିଁ, ଆଧୁନିକା ଯୁବତୀ ଜଣେ ଯେମିତି ଲଙ୍ଗଳା ହାତ, ମୁକୁଳା ବେକ, ମୁକୁଳା ମୁହଁ ଓ ଲଙ୍ଗଳା କାନ, କିଂତୁ ବକ୍ଷରେ ଭର୍ତ୍ତି ସୌନ୍ଦର୍ଯ୍ୟ ତା' ଲାବଣ୍ୟ ! ଦେଖନ୍ତୁ ଏଇ ଧାଡ଼ିଙ୍କ ଆଚରଣ–

କାହାରି କଥା ଖାପ୍ ଖାଉ ନାହିଁ କାହା ସହିତ
ଇଏ ତା' ଦୁଃଖ କହିଲାଣି ତ ସେ ତା' ଦୁଃଖ
ଥିବା ଲୋକର ଦୁଃଖ ଯେତିକି ନଥିବା ଲୋକର ସେତିକି !

ଯେମିତି ସାଦାକଥା, କେହି କାହାକୁ କହୁଛି, ସେହି କହିବା ଫଲ୍‌ଗୁ ଭିତରେ ପ୍ରଚ୍ଛନ୍ନ ରହିଛି ଆଧୁନିକ କାବ୍ୟିକତାର ବହୁଜନ ହୃଦୟକୁ ସ୍ପର୍ଶ କରୁଥିବା ସ୍ରୋତ । ମୁକ୍ତଛଂଦ ସହିତ ଗଦ୍ୟ ଛଂଦର ମିଳନରେ କେମିତି ଫୁଟି ଉଠିଛି ଅନୁଭୂତିର ରୂପ, ଦେଖାଯାଇପାରେ ଏହିଛତ୍ର –

ୟୁନିଫର୍ମ ନଥିବା ପିଲାଟିଏ ତା' ଖୋଲା ଦିହରେ
କାନ୍ଦିକାନ୍ଦି ଘରକୁ ଫେରିଯାଉଛି ।
ତା' ଦିହରେ ଜର ଅଛି କି କ'ଣ
ଆଜି ପ୍ରାର୍ଥନା ବଦଳି ଯାଇଛି ଦେଶ ବନ୍ଦନାରେ ।

କଥା ରୀତି ଓ କାବ୍ୟରୀତିର ମିଳନ ଘଟିଛି । ଶେଷ ଧାଡ଼ିଟି ସ୍ମୃତି ଭିତରେ ଝଲସାଇ ଦେଉଛି ଇଲିୟଟଙ୍କ ଚେତନାର ବିଚ୍ଛେଦ ଓ ସମନ୍ୱୟ ତତ୍ତ୍ୱଟି !



## 'ଦିବ୍ୟ ଅସନ୍ତୋଷ' ମନୋଭାବର ସ୍ଥୂଳ ଓ ସୂକ୍ଷ୍ମ

କେଉଁ ଆନଂଦ କଂଦରୁ ଝରଟିଏପରି କାଂଦିକାଂଦି ଫିଟି ପଡ଼ିଚି କବିତା । ଅକ୍ଷର ବଦଳେ ନାହିଁ ଅଥଚ ନୂଆ କିଛି ସରିଛି ଲେଖା ! ଶବ୍ଦ ବଦଳି ନାହିଁ, ସେହି ପୁରୁଣା ଶବ୍ଦ ଅଛି । ଅଛି ମଧୁରତା, ଯେମିତି ଶିଶୁର କଥା ! କବିତା ଜଣେ ମନ୍ତ୍ର ଦ୍ରଷ୍ଟାର ପ୍ରାର୍ଥନା ! ଆତ୍ମୀୟତାରେ ଚିହ୍ନା, ଆଶ୍ୱାସନା ଭର୍ତ୍ତି କେଇ ପଂକ୍ତି ଅସ୍ପଷ୍ଟ କାଂଦ ! କବିତା ହିଁ ପୁନର୍ଜନ୍ମ, ପ୍ରାଣ ପକ୍ଷୀର କୂଜିତ ଜୀବନ ! କବିତା ଏକ ଦିବ୍ୟ ଅସନ୍ତୋଷ ! କବିଙ୍କ ଅନୁଭବ କରିଥାଏ ଖ୍ରୀଷ୍ଟିୟାନ୍ ମ୍ୟାଗିର ଜର୍ଣ୍ଣ; ଦିନ ରାତି ନଥିବା କାଳରେ !

କବି ବେଶ୍ ନିୟନ୍ତିତ ନିର୍ଲିପ୍ତ ସନ୍ନ୍ୟାସୀ ! ସେ ଶୂନ୍ୟ ଦୃଷ୍ଟି । ନିଜର ଶୃଙ୍ଗକୁ କରୁଛନ୍ତି ଗତି । ଖର୍ଚ୍ଚ କରୁଛନ୍ତି ଆବେଗ, ସାମ୍ନାରେ ମାୟା ବଜାର, ଶବ୍ଦସବୁ ସଜିତ । ଗ୍ରାହକକୁ କରୁଛନ୍ତି ଆକର୍ଷିତ । ଦେଖ, ଦେଖ ଅମୃତ ! ଦେଖ ପିତଳ ମୂର୍ତ୍ତି, ମାର୍ବଲ ମୂର୍ତ୍ତି, ସଭ୍ୟତା ଓ ସଂସ୍କୃତି । ଦେଖ ଐଶ୍ୱର୍ଯ୍ୟର ଇତିହାସ, ଗୋ ଦୋହନ ଓ ଜ୍ଞାନ ବିଜ୍ଞାନ ! ଅଥଚ ଅନ୍ଧାରରୁ ଉଦ୍ଧାର ଲାଭକରି ପାରୁନାହିଁ ରାତ୍ରୀର ରୂପସୀ ଦେବୀଟି !

ଗୋଟିଏ ବଦଳା ସମୟ ତା'ର ଡ଼େଣା ବିସ୍ତାର କରିଛି, ତା' ମଧ୍ୟରେ ନାହିଁ ଅସ୍ୱାଭାବିକତା, କିଂତୁ ଅନୁଭବରେ ରହିଛି ଆକସ୍ମିକତା ! ସମୁଦ୍ର କଥା କ'ଣ କହିବା / ଆଜି କାଲି ସେ' ବି କ'ଣ ଦେଖାଉଛି / କମ୍ ଚମତ୍କାର /

ଆଜିକାଲି ସେ ଏତେ ଉତ୍କ୍ଷିପ୍ତ ଯେ / ହାତ ମାରିଲେ କରେଣ୍ଟ୍ ଦେଖୁନା କେମିତି ନିର୍ବିକାର ଭାବେ / ଫେରାଇ ଦେଉଛି / ନିଖୋଜ ଶବ ଚାରୋଟି (ସତ୍ୟଯୁଗ, ଦିବ୍ୟ ଅସନ୍ତୋଷ) । 'ଶବ ଚାରୋଟି, ଗୋଟିଏ ଇନ୍‌ଫରମେଟିଭ୍ ବା ତଥ୍ୟଥିବା ମିଷ୍ଟେରିଅସ୍ ସିମ୍ୱଲ ! ତାହା ସେହି ମହା ଦାରୁ, ଯାହା ଭିତରୁ ବାହାରନ୍ତି ଚତୁର୍ଦ୍ଧା ମୂର୍ତ୍ତି ! ତାହାକୁ ମନ୍ତରେ ଜୀବନ୍ନ୍ୟାସ କରି କିଂବା ବ୍ରହ୍ମରୋପଣ କରି କଟା ବୃକ୍ଷାଂଶର ପ୍ରତିମା (ଶବ)କୁ କରାଯାଏ ଶିବ ! ସତ୍ୟର ଘଟେ ଅବତରଣ । ସେ ହୁଏ ଦାରୁବ୍ରହ୍ମ ! କାଳ କଳା ରୂପରେ ନେଇଛି ଆକୃତି, 'କୂର୍ମ ଅବତାର', କବିତା କବିଙ୍କ ସମକାଳ ବେଖାପ ଘଟଣାଙ୍କ ଅନୁଭବ । ସମକାଳର କଳାତ୍ମକ ସମାଲୋଚନା, ଶାଣିତ ଶାନ୍ତରସର ବ୍ୟଙ୍ଗ - ସେଠି ଦୁଆର ଝର୍କା କଡ଼ି ବର୍ଗା ଟାଇଲ ଇଟା ଭୁଷୁଡୁଛି / ସେମାନେ ଯିଏ ପ୍ରାର୍ଥନା କାଳରେ ବସି ଚିଲମ ଟାଣୁଛନ୍ତି / ପାରିବେତ ଅକ୍ତିଆର କରନ୍ତୁ / ସେମାନେ ତ ସେଇଆ ପ୍ରାର୍ଥନା କରୁଥିଲେ / ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ପରିପୂର୍ଣ୍ଣ ଯୁଗଳ ମୂର୍ତ୍ତିଙ୍କୁ !'

ଅବକ୍ଷୟର ଦୃଶ୍ୟ ଟେକିଛି ତା' ଛତ୍ର । ମଠବାଡ଼ି ଅଟ୍ଟାଳିକା ଭୁଷୁଡ଼ି ପଡୁଛି ! ରକ୍ଷଣା ବେକ୍ଷଣ ପାଇଁ ଅର୍ଥ ଓ ଆଗ୍ରହ ନାହିଁ । ଜମି ମାଫିଆ ଦଖଲକୁ ସବୁ ଚାଲି ଯାଇଛି । ନୂଆନୂଆ କୋଠା, ନୂଆ ମାର୍କେଟ, ବିଗ୍‌ବଜାର ସେହି ଶ୍ରମିକମାନେ ଗଢୁଛନ୍ତି ଯାହାଙ୍କ  ସିମ୍ୱଲ 'କୂର୍ମ ଅବତାର' ! ସେମାନଙ୍କ ବସବାସ ଫ୍ଲାଇ ଓଭର୍ ତଳେ କିଂବା ପଲିଥିନ୍ ଚାଳ ତଳେ ! ଯୋଜନା ଓ ପରିଶ୍ରମ ବଦଳରେ ସେମାନଙ୍କ ପାଇଁ ନାହିଁ ଆପାର୍ଟମେଣ୍ଟ କି ଆନଂଦ ମଠ ! କିରୋସିନିରେ ଆତ୍ମାହୁତି ଦେଲେ ବି ନାହିଁ ଆଶ୍ରୟ, ଆତ୍ମ ସମର୍ପଣରେ ବି ମିଳୁନାହିଁ ସେମାନଙ୍କୁ ଆତ୍ମ ସାକ୍ଷାତ । ଯେଣୁ - 'ପ୍ରଭୁ ନାହାନ୍ତି / ଯୁଗଳ ମୂର୍ତ୍ତି ଚୋରି ହୋଇ ବିଦେଶକୁ ଚାଲି ଯାଇଛନ୍ତି !'

ଏଠାରେ ଅଭିବ୍ୟକ୍ତ ଦୁଇଟି ଜିନିଷ, Freedom ଏବଂ Truth ଯାହା ମାନବ ଓ ମାନବିକତାର ପ୍ରକୃତ ମାପଦଣ୍ଡ ଏବଂ ହ୍ୟୁମାନିଜିମ୍‌ର ସ୍ୱରୂପ । ଆଇଡ଼ିଓଲୋଜୀ ଓ ଆର୍ଟ ପ୍ରତିଫଳିତ କରୁଛି ଏକ ବିଶୁଦ୍ଧ ସାମାଜିକ ଅସ୍ତିତ୍ୱ । ଗୋଟିଏ ପଟେ ବେ ଘର ଶ୍ରମିକ, ଅନ୍ୟ ପଟେ ମାର୍କିନ୍ ପୁଂଜି ଓ ନୂତନ ଶୋଷଙ୍କ ସାମ୍ରାଜ୍ୟବାଦ ! 'ଈଶ୍ୱର ସେ / ବିଶ୍ୱର କେ'ଠାରୁ ନୂଆ ଚିନ୍ତା ଧାରା ମୂଲ୍ୟବାନ ସେମାନଙ୍କ ପ୍ରାଚୀନ ପିତଳ ଓ ପଥରର ମୂର୍ତ୍ତି ! ସଂଭ୍ରାନ୍ତବାଦୀ ସଂସ୍କୃତି ପାଇଁ ଉପାଦାନ, ଡ୍ରଇଂରୁମ୍ ଓ ବିଳାସ କକ୍ଷ ସୌନ୍ଦର୍ଯ୍ୟ ପାଇଁ ହିଂଦୁଙ୍କ ଆରାଧ ପ୍ରତିମା ଚୋରାରେ କ୍ରୟ ପ୍ରତ୍ୟକ୍ଷ ଭାବେ ପରିଦୃଷ୍ଟ ଘଟଣା ମଧ୍ୟରେ ସଂଯୋଗ ସଂପାଦନ । ହରିହର ମିଶ୍ରଙ୍କ 'ଦିବ୍ୟ ଅସନ୍ତୋଷ' ଏକ ସେନ୍‌ସିଟିଭ୍ ଦର୍ପଣ, ଏଥିରେ ପ୍ରତିଫଳିତ ହୋଇଛି ପୁରୀର ସୋସିଆଲ୍ ସାଇକୋଲଜୀ ଏବଂ ସମକାଳର ଚିତ୍ର । ଆଗକୁ

'ପୁନଶ୍ଚ ଅଭିଯାନ', 'ସମୟ ଡ଼େଇଁଯାଏ ଶୃଙ୍ଗରୁ ଶୃଙ୍ଗକୁ / ଅତିକାୟ ପକ୍ଷୀଟିଏ ପରି, 'ହ୍ରଦ କୂଳରେ ବସିଥିବା ସନ୍ନ୍ୟାସୀ ଆଜି ରକ୍ତାକ୍ତ ସୈନିକ', ସେ ସନ୍ୟାସୀ କିଏ ? ନିଜେ ମୁଁ? ଚୈତ୍ୟ ପୁରୁଷର ଅସ୍ତିତ୍ୱ, ଜୀବନ ଫୁଲର ଭଙ୍ଗାପାଖୁଡ଼ା ନିଶ୍ୱାସ ! ବିଶ୍ୱାସକୁ ସାକ୍ଷୀ ରଖି କରୁଣାକୁ ଦେଇଛି ପ୍ରାଧାନ୍ୟ 'ହେ ସାରଥି, ତମରି ଦୟାରେ / ବର୍ତ୍ତିଯାଏ ଚାଖଣ୍ଡକେ, ରଥ ମୋର / ଦବିଗଲା ପରେ'! ରଥଚକ ଦବିବା ମହାଭାରତୀୟ ମିଥ୍ ମହାନାୟକ କର୍ଣ୍ଣର ମୃତ୍ୟୁ ଆଗମନ ପୂର୍ବ ସୂଚନା !

'ବରଫ ହ୍ରଦ, ସୂର୍ଯ୍ୟ ଓ ମୁଁ', ଗୋଟିଏ ନୂଆ ରୂପର ପ୍ରେମ କବିତା । ଆବେଦନରେ ସମର୍ପଣର ନୂଆ ନକ୍ସା, 'ଯାହାକୁ ସମର୍ପି ଦେଲ ନିଜକୁ ... ସେ ତୁମକୁ ବିଗଳିତ କରେ'! ପୁରୁଷର ତୃଷା ଅସୀମ ଓ ତୀବ୍ରତର ହେତୁ ସେ ନିଜକୁ ଦ୍ୱିଧା ବିଭକ୍ତ କରି ସୃଷ୍ଟି କରିଥିଲା 'ଇଭ୍'କୁ ! 'ମୁଁ ଏକ ଧରାସ୍ରାବୀ ବୃଷ୍ଟିର ଅଭୀପ୍ସା... ମୁଁ ଲୋଡ଼େ ତୁମକୁ !' କାହିଁକି ଲୋଡ଼େ ? ଲୋଡ଼ିବା ତ ଯୁଗଯୁଗର ଅଭୀପ୍ସା ଏବଂ ତା' ଅନ୍ତରାଳରେ ବିଦ୍ୟମାନ ସମର୍ପଣ । ସମର୍ପଣ ଚିରକାଳ ନିଃସର୍ତ୍ତ ! ଏହା ଦ୍ୱାରା ଆପେଆପେ ସଂପର୍କ ଘଟେ ଏବଂ ଆତ୍ମୀୟତାରେ ତରଳି ଯାଏ ଦୁଃଖ । ଇନ୍ଦ୍ରିୟର ଅନୁଭବ ମନରେ ନିଏ ସମାଧି, ପ୍ରସରି ଯାଏ ମହକ ! କାହାର ମହକ ? ପ୍ରେମର ତ ! ମହକ ନିଜେ ହିଁ ପୁଣି ପ୍ରେମ ! ରଚନା କରେ 'ବସୁଧୈବ କୁଟୁମ୍ବକମ୍' ।

'ତୁମକୁ ମୁଁ ଖୋଜି ପାଏ / ବଙ୍ଗୋପସାଗର ତଳେ / ତମେ ଶୋଇ ଥାଅ / ଜ୍ୟୋତ୍ସ୍ନା ସିକ୍ତ ବାଲୁକାରେ / ସଫେଦ୍ ଶଯ୍ୟାରେ / ମତେ ଦେଖି ତମେ ଚମକି ବି ଉଠୁଥାଅ ଧୀରେ' - କବିତା ନୁହେଁ ଏହା, ଏହା ସୌନ୍ଦର୍ଯ୍ୟ ରୋକ୍ଷଣୀ ! ଲାବଣ୍ୟର ରୂପ ଅନୁଭୂତିରେ ପରିଧାନ କରିଛି କୀର୍ତ୍ତିମୟ ଆକୃତି । କବିତାର ଡ୍ରଇଁ ଖାତାରେ ଅଲିଭା ଓ ଅଭୁଲା ଏହି ଅଙ୍କନ ଶୈଳୀ ! ତମେ : ସତେ ଅବା କୋଣାର୍କର ଭଗ୍ନ ଚୂଳ / ସଂଧାନ ପାଇଲି / କୀର୍ତ୍ତି ରୂପା ମତେ ଦେଖି / ଉଠିଲ ଶିହରି, (କୀର୍ତ୍ତିରୂପା, ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୫୩୨)

ଗୋଟିଏ ଶ୍ରେଷ୍ଠ ସତ୍ୟ - 'ସ୍ୱପ୍ନ ତ ଭାଙ୍ଗିବ ବୋଲି ଜାଣିଛି ମୁଁ / କିଂତୁ ସ୍ୱପ୍ନଟିଏ ଗଢ଼ା ହୁଏ... ! ଯେଣୁ ସ୍ୱପ୍ନ ନ ଆସିଲେ ଆସେ ନାହିଁ ନିଦ୍ରା ଏବଂ ନିଦ୍ରା ନ ଆସିଲେ ଆସେ ନାହିଁ ସ୍ୱପ୍ନ ! ମାତ୍ର ଏଠାରେ ଏକ ସ୍ୱପ୍ନର ସୃଜନୀକୁ ଅପେକ୍ଷା କରେ କାବ୍ୟ ପୁରୁଷ ଏବଂ ସିଏ ସଂଦେହରେ ଛଂଦି ହୁଏ, ତାହା କ'ଣ ନାହିଁ ତା' ସ୍ମୃତିରେ ? ଆକାଶର ନୀଳ ସ୍ରୋତରେ ଭାସୁଥିବା ଛୋଟ ଫୁଲଟିଏ, ତାକୁ ସିଏ ପାଇଥିଲେ ସବୁ ପିତାମାତାଙ୍କପରି ! 'ଅପରୂପା ସେ ଫୁଲଟି ତମରି ମୁହଁଭଳି',

ଚମକ ଆଣେ ଧାଡ଼ି ଏବଂ ଦୁଇଟି ସଂପର୍କର ସୁବାସକୁ ବିତରିତ କରେ ପ୍ରତୀକ: ପ୍ରତିଥର ଦିଶୁଥିଲା / ହେ, ମୋର ପ୍ରୀତିରୂପା ! 'ପ୍ରୀତିରୂପା' ଏକ ବ୍ୟବହୃତ ଏପରି ଏକ ଶବ୍ଦ 'ଉଇଥ୍ ସେଭେରାଲ୍ ଏକ୍ସଟେଣ୍ଡେଡ୍ ମିନିଂସ୍, (ଇମ୍ପାସନ୍) ! ଆଗକୁ ରହିଛି, 'ଏ ପୃଥିବୀ ଅବା ଅପରୂପା ସେହି ଫୁଲ'; ସଂପର୍କର ତିନୋଟି ରୂପ କନ୍ୟା, ପ୍ରେମିକା ଓ ମାତା ହୋଇଛନ୍ତି ଚିତ୍ରାୟିତ । 'ସେ ନାରୀକୁ ମୁଁ ଚିହ୍ନିଛି' ସିଏ: ମହାମହିମଙ୍କ ପତ୍ନୀ' ତ କେଉଁଠି ଏକା ଏକା ମାଳିକାଣୀ; ପୁଣି କେଉଁଠି ହୃଦୟ ତଳ ସାଇତା ସ୍ମୃତି !

ସ୍ମୃତି ହିଁ କବିତାମାନଙ୍କୁ ପ୍ରଦାନ କରିଛି ଆଙ୍ଗିକ । ଅଥଚ କବିତାର ଆତ୍ମିକ ନୁହେଁ ସ୍ମୃତି, କବିତାର ଆଙ୍ଗିକଠୁ ଅବିଚ୍ଛେଦ୍ୟ ଆତ୍ମିକ । 'ଆଉ ଏକ ମଦ ମୃତ୍ୟୁ' ସୂଚିତ କରେ ଗୋଟିଏ ନୂଆ ମଦ ମୃତ୍ୟୁ ସ୍ମୃତି । ରିକ୍ସାରେ ସାଙ୍ଗରେ କବିତା ପାଠୋତ୍ସବକୁ ଯାଉଥିବା ପୂର୍ଣ୍ଣେନ୍ଦୁ ମିଶ୍ର ଗାଳ୍ପିକ । ଗପ ଲେଖିଥିଲା ବିଭୂତି ପଟ୍ଟନାୟକଙ୍କ ସଂପାଦିତ 'ଗଳ୍ପ' ପତ୍ରିକାରେ, ଜଣେ କବି ପଇସାଠୁ ଅଧିକ ବା ବଡ଼ ମଣୁଥିଲେ କବିତାକୁ, ତେଣୁ ସିଏ ପର୍ସରେ ପଇସା ପତ୍ର ନରଖି ରଖୁଥିଲେ କବିତା ! ମାଷ୍ଟର କ୍ୟାଣ୍ଟିନ୍ ପାଖ କ୍ୟାବିନ୍‌ରେ ମଦ ପିଇ ସେହି ଗାଳ୍ପିକ ପୂର୍ଣ୍ଣେନ୍ଦୁ ମିଶ୍ର ମରିଗଲା ! ସତ ସତିଆ ଗପ ଖୋଳୁଖୋଳୁ ଗପ ହୋଇଗଲା ! କବିତା କ'ଣ କହୁଛି ତାହା ବଡ଼ କଥା ନୁହେଁ, ବଡ଼ କଥା କବିତା ଯାହା କହୁଛି ତାହା କେତେ ମଂଜ ଥରା, କେତେ କାରୁଣ୍ୟପୂର୍ଣ୍ଣ ବେହାଗ, ବଂଚିବାର ଏହା ସୁଯତ୍ନପୂର୍ଣ୍ଣ ମୂଲ୍ୟ ନିର୍ଦ୍ଧାରଣ ! କବିତା ଏଠି କବିତା ନୁହେଁ, ଜୀବନର ସମୀକ୍ଷା । କବିତା ଏଠି କଳା ଦୃଷ୍ଟିରୁ ବା ଶିଳ୍ପ ପ୍ରାସଙ୍ଗିକତାରୁ ସ୍ମୃତି ପରିକ୍ରମାର ଗୋଟିଏ ସ୍ୱାକ୍ଷର !

'କବିତାର ଦୁଃଖ', କବିତା ଯେମିତି ଏକ ସଫେଦ୍ ବୈରାଗ୍ୟ, 'ଚିର କୁମାରୀ ହୋଇ ବୈଧବ୍ୟ ଭୋଗିବା ବ୍ୟତୀତ / ଆଉ କ'ଣ ଅଛି ମୋ ଭାଗ୍ୟରେ ?' ପୁରସ୍କାର ତ କେହି ମୋତେ ଦିଏନା, ଦିଏ କବିକି', କବିତାର ଦୃଷ୍ଟିକୋଣ ଅତି ଶାଣିତ ଏବଂ ତାହାର ଅନୁଭବ ମଧ୍ୟ ସୁତୀବ୍ର – 'ମୁଁ ତ ଲେଖା କାଗଜଟିଏ / କିଛି କରିପାରିନି କାହାର / କାହାର ଲୁହ ବି ପୋଛି ପାରିନି / ଭିଜି ମିଳେଇ ଯିବା ବ୍ୟତୀତ !' ଧାଡ଼ି ଯେମିତି ଚକମକି ମୋତି ମାଣିକ, ଅନୁଭବକୁ ଦେଉଛି ମର୍ମଭର୍ତ୍ତି ଉପଭୋଗର ଭବ ! ଆନନ୍ଦରେ କବିତା ଲେଖୁଛି / ଆଉ କଷ୍ଟ କ'ଣ ଲେଖି, ଲେଖି / ସମ୍ମାନ ପରେ ସମ୍ମାନ / ସାଇତା ହୋଇରହିଛି ତମ ପାଇଁ, – (କଷ୍ଟ) । କବିର କଷ୍ଟ କେଉଁଠି ତାକୁ ଦେଖାଇ ହୋଇନାହିଁ, କବିତାର ଚିତ୍ରିତ ଚଦର ଘୋଡ଼େଇ ହୋଇରହିଛି କବି । ଯେମିତି ବ୍ୟାଣ୍ଡେଜ୍ ତଳ ଘା' ତାକୁ ଅନ୍ୟମାନେ ଦେଖିବେ କେମିତି, ତାକୁ ପୁଣି ଆଚ୍ଛାଦିତ କରିଛି 'ସମ୍ମାନ' ରୂପକ ପୋଷାକ !

ସାଦା ବଂଚିବା ସାଧାରଣ ଏବଂ କବିଙ୍କ ବଂଚିବା ଅସାଧାରଣ । କବି ଅନ୍ତର୍ଚେତନାରେ ପ୍ରତିଟି ନୂଆ ମୁହୂର୍ତ୍ତରେ ମୁହୂର୍ତ୍ତପରି ପ୍ରସ୍ଫୁଟିତ ହେଉଥାଏ ନୂଆ ଜୀବନ । ଶିମ୍ବ ମଂଜି ଫାଟିବାପରି ପୁରୁଣା ଜୀବନ ତାଙ୍କ ଫାଟି ଖୋଳପା ପରି ହୋଇଯାଉଥାଏ ଅଲଗା ! ସେ ଅଲଗା ହେବା ଯନ୍ତ୍ରଣା ବା ଖୋଳପା ଛଡ଼ାଇବା ବେଦନା ଅନ୍ୟ କେହି କାହିଁକି ବୁଝିବ ? ଟିକିଏ ଚମ ଛିଡ଼ିଗଲେ କେଡ଼େ ପୋଡା ! ସଂସାରର ସମସ୍ତ ଶୋକର ଗନ୍ତାଘର କବିର ହୃଦୟ, ଏହା ଅବରୋଧ କରାଇ ଦିଏ 'ଦିବ୍ୟ ଅସନ୍ତୋଷ' ଆର୍ଟ । ସୃଜନର ତାନ ସୁଂଦର ସୁଖକର କଳା ପୂର୍ଣ୍ଣ ହେବାବେଳେ ହୋଇଛି ଜୀବନ୍ତ ! ଜୀଇ ରହିବାଠାରୁ ଅଧିକ କଷ୍ଟ ପୂର୍ଣ୍ଣ ଓ ସଂଘର୍ଷ ପୂର୍ଣ୍ଣ ଆଉ ଅଛି କ'ଣ !! 'କଷ୍ଟ' କବିତାକୁ ବିଚାର କଲାବେଳେ ଗୋଟିଏ ମତ ମନେହୁଏ ଯଥାର୍ଥ ଯେ 'ପୋଏଟ୍ରୀ ଇଜ୍ ଦି ମୋଷ୍ଟ ଫିଲୋସଫିକ୍ ଅଫ୍ ଅଲ୍ ରାଇଟିଂ: ଇଟ୍ ଇଜ୍ ସୋ: ଇଟସ୍ ଅବଜେକ୍ଟ ଇଜ୍ ଟ୍ରୁଥ୍',(ୱାର୍ଡ଼ସୱାର୍ଥ) । 'ଲିରିକ୍‌ଲ ବାଲାଡ଼୍ସ'ର ମୁଖବନ୍ଧ, ଅନେକ ଚିନ୍ତା କରିଛନ୍ତି ୱାର୍ଡ଼ସୱାର୍ଥ, ବହୁ ସତ୍ୟ କରିଛନ୍ତି ଉପସ୍ଥାପିତ । ତନ୍ମଧ୍ୟରେ ଗୋଟିଏ, କବି ଜଣେ ମଣିଷ, ସ୍ପିକିଂ ଟୁ ମେନ୍! ଏ ମ୍ୟାନ୍ ଇଜ୍ ଟ୍ରୁ, ଏଣ୍ଡୋଡ୍ ଉଇଥ୍ ମୋର ଲଭଲୀ ସେନ୍‌ସିବିଲିଟୀ ! କବିତା କବି ଲୋକଙ୍କୁ କହୁଛନ୍ତି, ମନୁଷ୍ୟ ସତ୍ୟ, ଜଣେ ମନୁଷ୍ୟ ବିଶୁଦ୍ଧ ମନୁଷ୍ୟ, ନିର୍ଭୁଲ ମାନବ ! ବୁଦ୍ଧିମତାର ସହିତ ଅତ୍ୟନ୍ତ ଜୀବନ୍ତ ଭାବେ ଅନୁଭବ କ୍ଷମତା ରହିଛି ଯାହାର ! ପାଠକ ଜୀବନ୍ତ ଭାବେ ଅନୁଭବ କରେ ହରିହର ମିଶ୍ରଙ୍କ କଥା-

ଦେବତାମାନଙ୍କର ତମେ କେତେ ପ୍ରିୟ
ହେ, ମାୟାବୀ
କେତେ ଦିନ ସେ ସୁଖର ପୀୟୂଷ
ତମେ ରଖିବ ଲୁଚେଇ
ନିଜ ଦାନବୀୟ ଯଂତ୍ରଣା ଠାରୁ
ଅମରତ୍ୱର ଦୁରୁପଯୋଗରୁ (କଷ୍ଟ, ଦିବ୍ୟ ଅସନ୍ତୋଷ)

'ଲୁଚେଇ' ଠାରେ ବକ୍ତବ୍ୟ ସରିଯାଉଛି, ରହସ୍ୟ ରହି ଯାଉଛି, 'କ'ଣ' ? ପ୍ରଶ୍ନଟି ଭିତରେ ଏବଂ କବିତା ଦ୍ୱିଭାଙ୍ଗ (ଟୁ ଫୋଲ୍‌ଡ଼ ହୋଇଛି) । 'ନିଜ ଦାନବୀୟ ଯଂତ୍ରଣା ଠାରୁ, ଅମରତ୍ୱର ଦୁରୁପଯୋଗରୁ' ଗୋଟିଏ ଦ୍ୱଂଦାତ୍ମକ ଚେତନା ଚିହ୍ନାଇ ଦେଇଛି ରୁମାଲ ଚୋରି ଖେଳରେ ରୁମାଲ ଅଛି ଯାହା ପାଖରେ ଯେମିତି ତାହାକୁ !

ଗୋଟିଏ ପୁରୁଣା ରୂପା ମୁଦ୍ରାକୁ ଓଲଟ ପାଲଟ ଓ ଟିପରେ ବଜାଇ ତାହାର ଅସଲିଗୁଣ ପରୀକ୍ଷା କରିବା ଭଳି ଅନୁଭୂତିମାନଙ୍କୁ ଟିପରେ ବଜାଇ ପରଖିଛନ୍ତି

କବି । 'ସେବା ନିବୃତ୍ତ ବ୍ୟକ୍ତିର ପ୍ରାତ୍ୟହିକ' ସ୍ୱରରେ ଜଣେ ପଦସ୍ଥର କରୁଣ ଅପଦସ୍ତ ଜୀବନ ଗାଥା ବଂଚିଛି କବିତା । ଶେଷକୁ - 'ନିଃସ୍ୱପ୍ନରେ ଶୋଇବାକୁ ପ୍ରାର୍ଥନା କରୁଛ ଚଉବାହାଙ୍କୁ' ଅସହାୟ ଓ ନିର୍ଯ୍ୟାତିତଟିର ଅନନ୍ୟୋପାୟ ଅବସ୍ଥା ! ପାଶ୍ଚାତ୍ୟ ମଣିଷଙ୍କପରି ସିଏ ମୂକ ହୋଇଯାଉନାହିଁ ! ଆମେରିକୀୟ ବୃତ୍ତି ଅଭୀପ୍ସିତ । ସାମାଜିକ ଦୁଃଖ ଠାରୁ ଅମାପ ସମ୍ବଳର ବଳ ତା' ପ୍ରାର୍ଥନା କରୁଣା ବରଂ ମିଳୁ କି ନା' ! କବିତା ତା' ବର୍ଣ୍ଣନା ବର୍ଣ୍ଣରେ ପ୍ରସାରିତ କରିଛି ଡେ଼ଣା ।

'ନିଜକୁ ପ୍ରତ୍ୟାହାର କରି ନେଲା ପରେ' ସଂପର୍କ ହୋଇଯାଏ ସ୍ୱଚ୍ଛ ଓ ଅନାବିଳ । କାବ୍ୟ ପୁରୁଷ ତାକୁ ତାସ୍‌ପରି ବାଣ୍ଟେ, ଭଗିନୀ, ଜାୟା, ଜନନୀ ଓ ଦେବୀ ରୂପରେ ! ତାସ୍ ଚାରି ପ୍ରକାର ! ଠିକିରି, ନାଲିପାନ, ଚିଡ଼ିଆ ଓ କଳାପାନ ! ହରିହର ମିଶ୍ରଙ୍କ ଏହି କବିତାରେ ନାରୀର ଚାରି ରୂପ । କିଂତୁ ଗୋଟିଏ ବସ୍ତୁ ସତ୍ୟ ! ସିଏ ନାରୀ । ମହେଂଜୋଦାରୋ ସଭ୍ୟତା ପୂର୍ବରୁ ପ୍ରାଚୀନ ନାଗ ସଭ୍ୟତାରେ ସେହି ଏକ ବସ୍ତୁ, ସିଏ ଶକ୍ତି । ତା'ର ରୂପ ଦୁଇଟି । ପ୍ରଥମେ ସେ ଭୋଗ୍ୟା, ତା'ପରେ ହୁଏ ଜନନୀ ! ନାଗ ସଭ୍ୟତା ତାନ୍ତ୍ରିକ ସଭ୍ୟତା । ତାନ୍ତ୍ରିକ ସଭ୍ୟତାରେ ଶକ୍ତି ଭୈରବୀ । ତାହା ସାମରସ୍ୟରେ ପୂର୍ଣ୍ଣ ହୁଏ ସାଧନା ।

ହରିହର ମିଶ୍ର ଲେଖିଛନ୍ତି, 'ମହୁମାଛି' । ସୌଭାଗ୍ୟ ମିଶ୍ର ଲେଖିଛନ୍ତି 'ଅନ୍ଧ ମହୁମାଛି' । ମହୁମାଛି କେବଳ ଫୁଲକୁ ଚୁମେ, ମାଛି ପାଇଁ ସେପରି କିଛି ନିୟମ ନାହିଁ । ସେ ସ୍ୱାଦିଷ୍ଟ ଖାଦ୍ୟରେ ବସେ ଏବଂ ବିଷ୍ଠାରେ ବି ବସେ ! ମହୁମାଛି କେବଳ ଫୁଲରେ ବସେ, ମହୁ ଶୋଷେ । ହରିବାବୁଙ୍କ 'ମହୁମାଛି' ଯେମିତି ଗୋଟିଏ ସ୍ୟାଡ଼ୋ - ମାସୋଚିଷ୍ଟ୍, ମନୋସ୍ତାତ୍ତ୍ୱିକ ଅସୁସ୍ଥ ! ବିଷାଦ ଓ ଖେଦର ଅନ୍ଧକାରରୁ ଲାଭ କରୁଛି ସୁଖର ସ୍ୱାଦ !

'ମରୁ ମନ୍ଥନ କଲା ପରେ ମୁଁ
ନାଗଫେଣୀ ଫୁଲରୁ ପାଇଲି ଟୋପାଏ ମହୁ
ତମେ କହ, ଏ ମହୁରେ ମିଠା ନାହିଁ...'

ଏଇଠି ବକ୍ତବ୍ୟ ସରିଥିବାପରି ଲାଗୁଛି, କିଂତୁ ଆଗକୁ ରହିଛି ଆଉ ଗୋଟିଏ ଧାଡ଼ି ରାହା, 'ଏ ମହୁ ଅନିଷ୍ଟ କରେ ମହୁଫେଣାର' ! 'ମହୁଫେଣା'ର ଭାବ ବା ଫିଲିଂ ସୂଚିତ କରେ ପରିବାରକୁ ! 'ମଧୁ ସନ୍ଧାନୀ ମଣିଷ ମୁଁ, 'ମୋର ଟୋପାଏ ମହୁର ନିଶା' ସ୍ପଷ୍ଟ କରେ ମହୁମାଛି (ପ୍ରେମିକ) ବ୍ୟକ୍ତିତ୍ୱକୁ ! ଇଲିୟଟ ଆଧୁନିକ କବିଙ୍କୁ ରାଣ ଖୁଆଇଛନ୍ତି,.... It is not the expression of personlity, but an escape from personality. ମାନ୍ୟବର କବି, ଆପଣମାନଙ୍କ ବ୍ୟକ୍ତିତ୍ୱ

ଅଭିବ୍ୟକ୍ତ ନହେଉ ବରଂ ମୁକ୍ତ ଥାଉ ।' Poetry is not a turning loose of emotion, but an escape from emotion. 'ମୁଁ' ମହୁମାଛିରେ ବଦଳି ଯିବା ସହିତ ବଦଳି ଗଲା ଭାବାବେଗ, ଇମେଜ୍‌ର ସିରିଜ୍‌ରେ ମଧୁ ପୋଷଣରେ ଆହତ ଜୀବନ ହେଲା ପ୍ରସାରିତ –

କମ୍ ସୋହାଗ କରି ନାହିଁ ଫୁଲମାନଙ୍କୁ
ସବୁରି ମହକ ମିଶି ସେ ମହୁ ତ ମହମହ ବାସେ
ଯାହାର ଅନ୍ଧ ନିଶାରେ ବାରମ୍ବାର ମୁଁ
କ୍ଷତ ବିକ୍ଷତ କରେ ପୁଷ୍ପର ଗର୍ଭ କୋଷ
ସେ ମତେ ଫେରାଇ ଦିଏ ପୀୟୂଷରେ

ଭାବାବେଗ ବସ୍ତୁ ଚେତନାରେ ବଦଳିଛି ଏବଂ ପ୍ରତୀକର ସିରିଜ୍‌ରେ କବିତା ତା' ସୌନ୍ଦର୍ଯ୍ୟର ପାଖୁଡ଼ା ଖୋଲିଛି । ଆଗକୁ କବିତା ତା' କବିତା ସୁଷମାରୁ ମୁକ୍ତ ହୋଇ myticism ରେ ଅନୁପ୍ରବେଶ କରିଛି । ଅମୃତ ଆଡ଼କୁ ବଢ଼ାଇଛି ହସ୍ତ 'ସେ ମହୁକୁ ମାଟିରେ ବୁହାଇ କିଛି ଲାଭ ନାହିଁ / ବରଂ ପାଦାର୍ଘ୍ୟ କରି ଢ଼ାଳି ଦେବି / ଅଦୃଶ୍ୟ ପାଦରେ ଏକ କାଳ ଭୁଜଙ୍ଗର !'

'କାଳ ଭୁଜଙ୍ଗର ଅଦୃଶ୍ୟ ପଦ', କାଳୋଽସ୍ମି ଲୋକ କ୍ଷୟକୃତ୍ ପ୍ରବୃଦ୍ଧୋ.., କବଳ କରୁଛ ପ୍ରାଣ ପବନ ସବୁରି, ହେ ମହାବାହୁ ! 'ଅଦୃଶ୍ୟ ପାଦ –'ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତମ୍' ଏବଂ ସେ 'ସର୍ବତଃ ପାଣିପାଦମ୍ ! ସନ୍ଥ ଅଗଷ୍ଟିନ୍ ତାଙ୍କ 'କନ୍‌ଫେସନ୍ସ'ରେ ଲେଖିଛନ୍ତି –

We ascend the ascending grades in our
heart and we sing the song of ascension. (xiii, 9)

'ଢ଼ାଳି ଦେବି' ଭବିଷ୍ୟତ କାଳ, ମାତ୍ର କବିତାର କାଳ ଗୋଟିଏ ଏବଂ ତାହାସଦା ବର୍ତ୍ତମାନ । ପ୍ରେମ ଜୁଡୁବୁଡୁ ସର୍ବାଙ୍ଗ ଓଜାଡ଼ି ହୋଇଯାଇଛି, 'ସମର୍ପିତ ଏ ମଣିଷ' (ନିଃସର୍ଗ କଳ୍ପସୂତ୍ର), ଏବେ ସିଏ ଏକାକ୍ଷର ଶବ୍ଦଟି, ସେଇ 'ମୁଁ', ଆଧ୍ୟାତ୍ମିକ ! ଗୋଟିଏ 'ascension' ଓ ତାହାର ପ୍ରତୀକ ।

ଏହି ସଂକଳନରେ ରହିଛି ଚତୁର୍ଧା-ମୂରତି, 'ଅଣସର', 'ଆକାର', 'ନନ୍ଦିଘୋଷ ତୋର ଅଟକିଗଲା' ପରି ପବିତ୍ର ଶାବ୍ଦିକ ଆବେଦନ । ଶେଷକୁ 'ପ୍ରୀତିମଂତ୍ର'ଟପି ଗଲେ ଆସେ ବିରାମ ଚିତ୍ର ଦିବ୍ୟ ଅସନ୍ତୋଷ ।

ତଥାପି ସରେନା ଦୁଃଖ
ତଥାପି ହୁଏନା ଶାନ୍ତ ଏ ସମୁଦ୍ର
ଆଜି ଏ ସମୁଦ୍ରର ପାଣି ଟୋଳେ
ଲୋଡ଼ା ହୁଏ ସୂର୍ଯ୍ୟଙ୍କୁ ଟେକି ଦେବା ପାଇଁ
ତାରି ଜଳରେ ନୀରାଜନା ହୁଏ ତା'ର! (ହରିହର ମିଶ୍ରଙ୍କ କବିତା ୧୦୦୧, ପୃଷ୍ଠା ୫୭୨)

ଜୀବନର ପରମ ବିସ୍ମୟ ଏଇ ବଂଚିବା, ଏଇ ବଂଚିବାକୁ ଜଳ ଟେକୁଛି କାବ୍ୟ ପୁରୁଷ, ଅନୁଭବ ଓ ଅଭିଜ୍ଞତାରେ ସେ ଏକ ନୀଳ ସମୁଦ୍ର! ଅଥଚ ଜଳ, ଅସୀମ ନୀଳନୀଳ! ମର୍ମଦାହ ଓ ମୃତ୍ୟୁଜଂୟ! ସୃଷ୍ଟିର ଆଦି ଅବସ୍ଥା ଏହି ସମୁଦ୍ର, ଅନନ୍ତ ଜଳରାଶି ପରିବ୍ୟାପ୍ତ। ଅସନ୍ତୋଷ ବି ଅସୀମ ଏବଂ ସାରା ଜୀବନ ପରିବ୍ୟାପ୍ତ! ସଂପର୍କ ଓ ମନୁ ପୁତ୍ରର ଅଭୀପ୍ସା ଅସୀମ ଓ ଅଖଣ୍ଡ! କବିତା ଶୁଣାଇଛି ଶବ୍ଦର ସ୍ୱର! ମନ୍ଥିତ ସ୍ମୃତିର ଆକୁଳ ନିନାଦ, ଅବ୍ୟକ୍ତ ନାଦ! ଯେମିତି 'ଅଲ୍ ମାଇଁ ଲଭ୍ ଇଜ୍ ଡ଼ିକ୍ଲେୟାରଡ଼୍'!

କବିତା ଯେମିତି ଅଭୀପ୍ସାର ଦ୍ୱାର, ସୂର୍ଯ୍ୟ ଆଡ଼କୁ ଖୋଲିଛି ତା' କବାଟ, କିଏ ଖୋଲିଚି? ସିଏ ସ୍ମୃତି ସାଇତା ଏକ କୁମାରୀ ଯଂତ୍ରଣା! ତା' ମୂର୍ତ୍ତି ଇମେଜ୍‌ରେ ଗଠନ କରିଛନ୍ତି କବି 'କୁମାରୀ ବିଧବା'। ଅଶୁଭ ଶୁଭ୍ର ଶୁଭ ପକ୍ଷୀଟିଏ ହୋଇ ସମୁଦ୍ର ଉର୍ଦ୍ଧ୍ୱ ଆକାଶକୁ ଚିରି ଉଡ଼ୁଛି। ସମୁଦ୍ର ଘନ ନୀଳ ଏବଂ ଆକାଶ ସୁନୀଳ ମଝିରେ ସଫେଦ୍ ପକ୍ଷୀ ମନୁଷ୍ୟର ଏହି ଜୀବନ। ଜୀବନ ଏକ ଚିରନ୍ତନ ଫେଡ଼ାଣ ଚିହ୍ନ, ରଫ୍‌ଖାତାର ଫର୍ଦ୍ଦପରି ଚିରାଚିରା ହୋଇ ରହିଛି। ସେ ଫର୍ଦ୍ଦରେ ବସନ୍ତ ଋତୁ ଫୁଟାଇଛି ନୀଳ ପଦ୍ମ ଓ ଲାଲ ଗୋଲାପ! ପଛ ଜୀବନର ଗୁରିଆ ରିଲ୍ ଖୋଲିବା ମାତ୍ରେ ଦିଶିଯାଉଛି ଖାଲି ପ୍ରକୋଷ୍ଠ ଓ ଚଟାଣରେ ତା' ପଡ଼ିଛି ଖଣ୍ଡେ କାଠ ଚୌକୀ। ଆଗରେ ଟିପୟ ଉପରେ ଫୁଲଦାନୀ, ଫୁଲଦାନୀରେ ସଦ୍ୟଫୁଟା ପଦ୍ମ, ଗୋଲାପ, ମେରିଗୋଲଡ଼୍ ଓ ଆଉ କ'ଣ ଫୁଲଙ୍କ ତୋଡ଼ା। ପବନ ତ ଫୁଲ ରସିଆ!

କାବ୍ୟ ପୁରୁଷ ସ୍ୱପ୍ନ ଦେଖୁଚି, ସଜାଗ୍ରତ ସ୍ୱପ୍ନ। ତା'ର ପୂର୍ଣ୍ଣେନ୍ଦୁ ମିଶ୍ରପରି ଜଣେ ବଂଧୁଥିଲା, ବଂଧୁଟି ଚିହ୍ନି ଥିଲା ଏବଂ ସଂସାରକୁ ଦେଖାଇ ଦେଇଥିଲା ବଂଧୁଟି ତା' ସ୍ୱପ୍ନପ୍ରତି କେତେ ସତ୍ୟନିଷ୍ଠ ଏବଂ ଅଙ୍ଗୀକାରବଦ୍ଧ। ଏମିତି ବି ମଣିଷ ଅଛନ୍ତି ବିଶ୍ୱରେ; ସିଏ ତାଙ୍କୁ ଦେଖାଇ ଅନ୍ୟ ବିଜ୍ଞ ବ୍ୟକ୍ତିଙ୍କୁ କରିଦେଇଥିଲା ବିସ୍ମିତ। ବିଚାରା ସମକାଳ ମଦମୃତ୍ୟୁ ଟ୍ରାଜେଡ଼ୀର ଶିକାର ହୋଇଗଲା! ବଂଧୁ ଚାଲିଗଲା,

ଶରତ ରାତି ଆକାଶର ଜହ୍ନ ବି ଚାଲିଗଲା, ବାକି ରହିଛି ଚଟାଣ ମଝିର ସେହି ଖାଲି କାଠ ଚୌକୀ ଖଣ୍ଡିକ ଏବଂ କବାଟ ଆର ପଟେ ସମୁଦ୍ର ! ସମୁଦ୍ରଠୁ ଶ୍ରୀମନ୍ଦିର କେତେ ଦୂର ?

ଗୁରୁବାବୁ ପ୍ରଶ୍ନ କରିଥିଲେ ରାମକୃଷ୍ଣ ମିଶନଠୁ ଏମାର ମଠ କେତେବାଟ ? ରାମକୃଷ୍ଣ ମିଶନ ଓ ଏମାର ମଠ ଦୁଇଟି ଯାକ ଗୋଟିଏ ଋତୁର ପୁଷ୍ପ ଏବଂ ସେ ଋତୁର ନାମ ଆଧାତ୍ମିକ । ହରିବାବୁଙ୍କ ଦୃଷ୍ଟିରେ 'ଅଣସର', ଯେଉଁଠୁ ଘଟେ ପୁନର୍ଜନ୍ମ ! ପୁନର୍ବାର ହୁଏ ଶରୀର । ଅନୁଭବର ମୂର୍ତ୍ତି ନିଏ ଆକୃତି (ଆକାର), 'ଶୂନ୍ୟତାକୁ ଦିଏ ସ୍ଥାପତ୍ୟ' ।

'ନୀଳ ଆକାଶର ଢ଼ାଙ୍କୁଣି / ଓ ଧୂସର ଧରଣୀର ସଂପୁଟ ଭିତରେ / ରତ୍ନଭଳି ଚକ୍‌ମକ୍ ଦିଶେ ସତ୍ୟ' (ଚତୁର୍ଥୀ - ମୂରତି) ! 'ଅଚିନ୍ତ୍ୟ ଅବ୍ୟକ୍ତ' ତୁମକୁ ଅନୁଭବ କରି ହେଲା ଶ୍ରୀମଂଦିରରେ, 'ଶୂନ୍ୟରେ ଆତ୍ମ ଗୋପନ କରି ବଂଚୁଛ ଆନଂଦରେ..' ! ଅଥଚ ଏଣେ ସମୁଦ୍ର ବମନ କରୁଛି ବର୍ଜିତ ହଳାହଳ/ ରୋହିଣୀ ଛଳଛଳ କାନ୍ଦୁଛି ଗୋପନରେ / ପଥର ହୋଇଛି କାକ ଚତୁର୍ଭୁଜ / ଓ ଅକୂପାର କୂର୍ମ/ ପଦ୍ମ ନାହିଁ ପଙ୍କିଳ ତୀର୍ଥ ଜଳ... ! 'ଅବକ୍ଷୟ' ଠିକଣା ବଦଳାଇ ହୋଇଛି ସମକାଳ 'ପ୍ରଦୂଷଣ' । କଂପ୍ଲେକ୍ସିଟୀ ଅଫ୍ ମଡ଼େର୍ଣ୍ଣ ଲାଇଫ୍: ଏ ଚାଲେଂଜ ଟୁ ରାଇଟର ! ସେହି ଚାଲେଂଜର ସମୀକରଣ ମାନ୍ୟବର ଶ୍ରୀ ମିଶ୍ରଙ୍କ 'ଦିବ୍ୟ ଅସନ୍ତୋଷ ! 'ଦିବ୍ୟ ଅସନ୍ତୋଷ' ତାଙ୍କ Authentic Comment ! 'ଦିବ୍ୟ ଅସନ୍ତୋଷ' ସେହି ପରିବେଶ, ଯାହା ମଝିରେ ସିଏ ଅଛନ୍ତି ! ଯାହା ତାଙ୍କୁ ଘେରି ରହିଅଛି Spiritual unrest ଭିତରେ ଯୁଗଯଂତ୍ରଣାରେ ।

'ଫୋର୍ କ୍ୱାର୍ଟେଟସ୍'ରେ ଇଲିୟଟ୍ ପ୍ରକାଶ କରିଛନ୍ତି ତାଙ୍କ ଅସନ୍ତୋଷ - So here I am, in the middle way, having had twenty years. / Trying to learn to use words and every attempt / Is wholly a new start, and a different kind of failure.

କବିଙ୍କ Intention ସହିତ କବିତାର ଡ଼ିଜାଇନ୍ ମେଳ ଖାଉ ନାହିଁ, ଶବ୍ଦର Behaviour କବିଙ୍କ ଚଂପିଆନ୍‌ସିପ୍ ଅଫ୍ ଆଇଡ଼ିଆକୁ ସଠିକ୍ ମୂଲ୍ୟ ପ୍ରଦାନ କରିନାହିଁ,ପାଖାପାଖି ମୂଲ୍ୟଦାନ କରିଛି । କବିତା Feelingରେ Ultimate Value ବଦଳରେ Isolation of thought ଅନୁଭବ କରାଇଛି କବିତା ଅର୍ଗାନାଇଜ୍‌ରେ କବିଙ୍କ ଅନଭ୍ୟାସ ! ସୁଦୀର୍ଘ କୋଡ଼ିଏ ବର୍ଷ ଧରି ଲେଖି ଚାଲିଛନ୍ତି ଇଲିୟଟ କବିତାର ହସ୍ତାକ୍ଷର !

ଇଲିୟଟଙ୍କ ସମସ୍ୟା ଠାରୁ ଭିନ୍ନ ହରିହର ମିଶ୍ରଙ୍କ ଅନୁଭବ । 'ବୈଦିକ ମଂତ୍ର' ତାଙ୍କର 'ବାଟ ଭୁଲେ ବାସ୍ନାରେ / ମହମହ ମହାପ୍ରସାଦର / ଆମେ ହିଁ ତୁମକୁ ଲୁଚିଛୁ ପ୍ରଭୁ' ! ଜଗନ୍ନାଥ ଧାର୍ମିକ ଆନ୍ଦୋଳନରେ 'କ୍ଷୁଧାର୍ତ୍ତ ବାଳକ' ବିମ୍ବ ସାମାଜିକ ବ୍ୟବସ୍ଥା କଂଚା ଆମ୍ବରେ ଫୋପଡ଼ ବଜା ଫଟାକୁ ଦେଖାଇ ଦେଇଛି ! 'ଭେଦ... ଆମ କଥା ଓ କାମରେ !' ଆଧୁନିକ ମାନବ ନୈତିକ ବଂଧନ ବିମୁକ୍ତ କିଂତୁ ନୁହେଁ ସ୍ୱ-ଅଧୀନ, ଆହତ ମାନବିକତାର କ୍ଷତ ମନରୁ କ୍ଷରିତ କରିଛି କବିତାର ଶୋଣିତ ।

ନିଅଣ୍ଟିଆ ପରିବାର, 'ତମେ ସବୁ ଗଲା ପରେ' କବିତା 'ଅନେକ ମୋ ତ୍ୟାଗକୁ ଚଳୁ କଲେ', 'ସବୁଠି ମାରିନେଲେ ମହାପାତ୍ରେ / ଚାହିଁରହିଲି ମୁଁ ଜଳକା, ଜଣେ ମଣିଷର ସାମାଜିକ ଅବସ୍ଥା ! ସେ ଅବସ୍ଥା ଓ ବ୍ୟବସ୍ଥା ବିରୋଧରେ ଆହତ ମାନବିକତାର ମୁଣ୍ଡପିଟା ଶବ୍ଦ 'ଦିବ୍ୟ ଅସନ୍ତୋଷ' । ଅକ୍ଷରର କାଚପାତ୍ରରେ ବଂଦିନୀ କବିତା ଗୋଟିଏ ନୂତନ ସୂର୍ଯ୍ୟର ଅଭିଷେକ ଉତ୍ସବ ! ମୁହୂର୍ତ୍ତର ପୃଥିବୀରେ ସେ କବିତା ନୁହେଁ ବଳକା ସମୟପରି ସାଦା ! ବିଜୁଳି ଯେତିକି ଜାଗା ଦେଖାଏ ସେତିକି ସମୟ ସେ କବିତାରେ ଦିଶୁଛି ! ନୂଆ ନୂଆ ପାତ୍ର କଂଚାରେ ପୋଡ଼ା ଯାଇ ଟାଣ ହୋଇଛନ୍ତି ।

କବିତା ଓ ଜୀବନ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଦୁଇ ପାର୍ଶ୍ୱକୁ ବେଶ୍ ପରଖ କରିଛନ୍ତି କବି ହରିହର ମିଶ୍ର । 'ତଥାପି ସରେନା ଦୁଃଖ / ତଥାପି ହୁଏନା ଶାନ୍ତ ଏ ସମୁଦ୍ର / କ୍ଷାରକୁ କ୍ଷୀର ସମୁଦ୍ରରେ / ବଦଳାଇ ପାରିନାହିଁ... / ସ୍ୱର୍ଗକୁ ସୁନା ସିଡ଼ି କରିବାର / ଫମ୍ପା ପ୍ରତିଶ୍ରୁତି କା'ର /ବଦଳି ଯାଏନା କେବେ ଅମାପ ଲୁହ ତା'ର..!

କବି ଯେମିତି ଖଣ୍ଡେ ନିଃସଙ୍ଗ ମେଘ, ଶବ୍ଦ ଲୋକରେ ଭାସି ଚାଲିଛନ୍ତି ଯେମିତି 'a traveller under open sky / much witnessing of change and cheer'. ଆଖିକୁ ପ୍ରଭାବିତ କରିଛି ତାଙ୍କ ଭାବନା ଓ ଭାବର ପ୍ରତିମା ।

ସ୍ୱପ୍ନପରି ବର୍ତ୍ତମାନର ଥାକେ ଦୃଶ୍ୟମାଳା (Phantasmagoria) 'ଦିବ୍ୟ ଅସନ୍ତୋଷ', ଯେତେ ପ୍ରୀତିଧାରା କ୍ଷରିଲେ ବି ମେଣ୍ଟେନାହିଁ ଯେମିତି ଧରଣୀର ଶୋଷ, ସେମିତି ସେ ମେଣ୍ଟି ନାହିଁ !

ମୋଭଳି କୁଳୁକୁଳୁ ହୋଇ ତାକୁ ଚାହିଁ ରହେ । ଅବଶୋଷରେ, ଅସନ୍ତୋଷରେ କିଂବା ବିସ୍ମୟରେ ? ଜୀବନ ଏକ ଯାତ୍ରା, ଜନ୍ମରୁ ଯୌବନ, ତାରୁଣ୍ୟ ଓ ପ୍ରୌଢ଼ ଏବଂ ଶେଷକୁ ବାର୍ଦ୍ଧକ୍ୟ ! ଆଉ ଆଗକୁ ରାସ୍ତା ନାହିଁ, କାହ୍ନୁ ! ମାତ୍ର -

ଯିବାକୁ ହେବ ବାରମ୍ବାର / ଶୃଙ୍ଗକୁ ନିଜର / ଖୋଜିବାକୁ ହେବ ଜଳଛତ୍ର, 'ଜଳଛତ୍ର ପାଇଗଲେ ମେଣ୍ଟିଯିବ ଶୋଷ ଓ ଅବଶୋଷ । ଆଉ ରହିବ ନାହିଁ ଦିବ୍ୟ ଅସନ୍ତୋଷ'! ଭାଗ୍ୟବାଦୀ ମଣିଷ, କାବ୍ୟ ପୁରୁଷର ସ୍ୱପ୍ନପରି ବର୍ତ୍ତମାନର ସେହି ଦୃଶ୍ୟ (Phantasmagoria) -

ଏମିତି ଦିହକ ଗଲାଣି ଦିହକ ବି ଯିବ
ସେତିକି ତ ପ୍ରଭୁଙ୍କ ବରାଦ ।
← ଦିବ୍ୟକୃପା ଉତ୍ତରଣ ପାଇଁ ଅଭୀପ୍ସା -
ହେ ମୋର ରୂପସୀ ଉପତ୍ୟକା
ତମେ କ'ଣ ମେଣ୍ଟାଇ ପାରିବ
ମୋର ସେ ସୂର୍ଯ୍ୟ ତୃଷ୍ଣାକୁ ?

ଆତ୍ମାର ଶୋଷ ଓ ପ୍ରାଣର ଅବଶୋଷ ମନ ଭୂମିରେ ଗୋଟିଏ ଘୂର୍ଣ୍ଣି ରଚନା କରିଛି ତାହା ଅସନ୍ତୋଷ! 'ମୁଁ ଲୋଡ଼େ ତମକୁ ଏଠି' 'ସଫେଦ୍ ଶଯ୍ୟାରେ', ନୁହେଁ ଗୋଲାପୀ ଶେଯରେ, 'ସଫେଦ୍' ଶୁଭ୍ର ଓ ଆଧ୍ୟାତ୍ମିକତାର ସିମ୍ବଲ । 'ସୂର୍ଯ୍ୟତୃଷ୍ଣା'ର ପ୍ରତୀକ ।

'ଏ ରାତି କ'ଣ ପାହିବାର ନାହିଁ?' ଭୋଗ ଓ ଅନୁଭବର ରାତ୍ରୀ ପାଏ ନାହିଁ । 'ତେଣୁ ଭବିଷ୍ୟତ କେବେ କାର/ ଭଲ ହେବ ନାହିଁ, ଯେଣୁ ଭବିଷ୍ୟତ ମେଦ ବହୁଳ ମଧୁମେହ ରୋଗୀ!' 'କିଛି କରିପାରିନି ଆଉ କ'ଣ ଅଛି ମୋ ଭାଗ୍ୟରେ? ପ୍ରାୟତଃ ସମସ୍ତ କବିତା ଉପସଂହାରରେ ପ୍ରଶ୍ନବାଚୀ ମଣିଷର ଅସହାୟତାକୁ ଚିରି ଉନ୍ମୋଚିତ କରିଛି । 'ଅମରତ୍ୱର ଦୁରୁପଯୋଗକୁ ନିଜ ଦାନବୀୟ ଯଂତ୍ରଣା ଠାରୁ ଲୁଚେଇ ରଖିବ? 'ପ୍ରାର୍ଥନା କରୁଛ... ତମକୁ ଚାହିଁଥିବା ମଣିଷମାନଙ୍କୁ ମନରୁ ପୋଛି ଦେବ? କିଏ କହେ ତମ ପ୍ରତି ମୋହ ନାହିଁ ମୋର?' 'ଓଠକୁ କାମୁଡ଼ି ତୁମ ପାଦ ଧରି କାଂଦି ଉଠେ / କ୍ଷମା କର', ଘନନୀଳ ସ୍ୱପ୍ନପରି ଦୃଶ୍ୟମାଳା ବା 'ଫାଣ୍ଟାସ୍‌ମାଗୋରିଆ' ସଂଦିଗ୍ଧ ଭାବମାନଙ୍କ ଦିଏ ସୂଚନା । ମନୋସ୍ତାତ୍ତ୍ୱିକ ସ୍ତରରେ ସେଇ ସୂଚନାମାନଙ୍କ ସ୍ୱରୂପ କେଉଁଠି ଅସନ୍ତୋଷ ତ କେଉଁଠି ଅବଶୋଷ! ଅଭୀପ୍ସିତ ହେଉଥିବା ହେତୁ ହୁଏତ ତାହା ଦିବ୍ୟ! ବ୍ରହ୍ମମୟ ଜଗତ ହେତୁ ଅନୁଭବକୁ କେମିତି କହିବା ଜଡ଼? ଜଡ଼ ଚେତନାର ବକ୍‌କଳ, ଯେମିତି ମାଂସର ଚର୍ମ!'



# ‘ଅକିଂଚନ’ ଶବ୍ଦ ଗୁହର ପ୍ରତୀକମାନଙ୍କରେ ଚିତ୍ରକଳ୍ପମାନଙ୍କ ଭାବ ପ୍ରଭା

ଅହଂକାର ବ୍ୟାପକ ହୋଇ ଯେତେବେଳେ ପଥରୁଦ୍ଧ ହୁଏ, ଆଉ ଆଗକୁ ତା’ ନଥାଏ ସ୍ଥଳ, ତାହା ବହୁକାଳ ଧରି ଅଟକି ଅଟକି ଅବକ୍ଷୟ ଦ୍ୱାରା ହୁଏ ବିଲୁପ୍ତ। ବିଂଦୁରୁ ଆରମ୍ଭ ବୃତ୍ତର ପରିଧି ଲିଭିଗଲା ପରେ ଆଉ ନଥାଏ ମୂଳ ବିଂଦୁଟି ମଧ୍ୟ! ଥାଏ କେବଳ ଏକ ଶୂନ୍ୟତାର ଅସ୍ତିତ୍ୱ। ସେହି ଶୂନ୍ୟତାର ଅସ୍ତିତ୍ୱକୁ ପ୍ରକାଶିତ କରେ ଏକ ପ୍ରତୀକ ‘ଅକିଂଚନ’! ହୁଏତ ଏହା ‘ମୁଁ’ର ବିଶେଷଣ। ବିଶେଷଣ ବିଶେଷ୍ୟର ବଳ। ବିଶେଷ୍ୟଟି ଯେତେବେଳେ ଏକ ସର୍ବନାମ ହୁଏ, ସେହି ସର୍ବନାମର କ୍ରିୟାପଦ ‘ଅକିଂଚନ’।

କବିତାରେ ବ୍ୟକ୍ତିତ୍ୱକୁ ନମନୀୟ, ଅହଂକାର ବିମୁକ୍ତ କମନୀୟ ଓ ଅନୁଗ୍ରହ ବାଂଛିତ କରିବା ଆବେଗର ନାମ ‘ଅକିଂଚନ’। କବି ହରିହର ମିଶ୍ରଙ୍କ ପ୍ରାଜ୍ଞ ଚେତନାର ରୂପାୟନ, ଖଣ୍ଡିଏ କାବ୍ୟିକ ସୁଷମାର ଶୀର୍ଷକ। ଚାରୋଟି ଦିଗପରି ତଥା ଚତୁର୍ଦ୍ଧା ମୂର୍ତ୍ତିପରି ତାଙ୍କ ଇମୋସନ୍‌ର ଚାରୋଟି ରୂପ; ଯଥା କ୍ରମେ :

୧- ଅକିଂଚନର ଆସିବା ପରେ

୨- ଅକିଂଚନର ସ୍ୱୀକାରୋକ୍ତି

୩- ଅକିଂଚନର ଦର୍ଶନ ସୁଖ

୪- ଅକିଂଚନର ଉପନ୍ୟାସ।

ଚାରୋଟି ଉଜ୍ଜ୍ୱଳ ନକ୍ଷତ୍ର ଆରମ୍ଭର ଆକାଶରେ ଦୃଷ୍ଟିଗୋଚର ହେବାବେଳେ ମଝି ଆକାଶରେ ରହିଛି ଭିନ୍ନ ଏକ କାବ୍ୟିକ ଅନୁଭବ: ଥଣ୍ଡା ପ୍ରତି ଅକିଂଚନ। କବିତା ପରୋକ୍ଷ ଭାଷଣ, କିଂତୁ କର୍ତ୍ତା ପ୍ରଥମ ପୁରୁଷ ଏକ ବଚନ। ସର୍ଜ୍ଜନାର ଉନ୍ମେଷ ବିଂଦୁ ମୂଳାଧାର ଚକ୍ରରେ ଲାଲ ଓ ଶ୍ୱେତ କଣିକା। ଦୁଇ କଣିକାଙ୍କ ମିଳିତ ରୂପ ପରା ଶକ୍ତି। ପରାଶକ୍ତିଙ୍କ ଆଙ୍ଗିକ ବା ଦେହର ରୂପ ବୈଖରୀ। ଠିକ୍ ସେହିପରି 'ମୁଁ'ର ଆଙ୍ଗିକ ଚିତ୍ର 'ଅକିଂଚନ'। ମୁଁ ର ଅସ୍ତିତ୍ୱ ପ୍ରଚ୍ଛନ୍ନ। ତାହା କେବଳ ଏକ ପ୍ରାଣଧାରର ଶକ୍ତି। ଯେତେବେଳେ 'ମୁଁ' ପରିସ୍ଥିତି ଓ ପରିବେଶ ଅନୁସାରେ ସାମାଜିକ ଚେତନାରେ ବଦଳିଛି, ତାହା ହୋଇଛି 'ଅକିଂଚନ'। 'କ'ଣ ସବୁ ହୋଇ ଥାଆନ୍ତା / ଅକିଂଚନର ଆସିବା ପରେ / ହୋଇପାରିଲାନି ଯାହା?' (ଅକିଂଚନ, ପୃଷ୍ଠା ୭, ହରିହର ମିଶ୍ର)। 'ଅକିଂଚନ ଆସିଛି ଗୋଟିଏ ସାଧାରଣ ବର୍ଗରୁ, ଇମାଜିଜିମ୍ ବା Echolalia କରେ ସୂଚିତ। ତେଣୁ ତା' ଆସିବାର ଗୁରୁତ୍ୱ ନାହିଁ, ପ୍ରଶ୍ନଚିହ୍ନ ହୋଇଛି ଅଂକିତ!'

... Literature 'represents ''life; and 'life' is, in large message a social reality, ଏହା ଅକିଂଚନର ସ୍ୱୀକାରୋକ୍ତି, 'ଜୀବନ' ଅର୍ଥାତ୍ - ମାନବ ବଂଚୁଛି ସହ୍ୟ କରି ସହସ୍ର ଫଣାର ଆଘାତ! ସାମାଜିକ ଚୋଟ ଠାରୁ ଭୟାନକ ତା' ଅବଚେତନର ଚୋଟ! ନିଷିଦ୍ଧ ଆକାଂକ୍ଷା ଓ ବାସ୍ତବତା ଅଲଗା ଅଲଗା ଦୁଇଟି ଚିତ୍ର କିଂତୁ ଗୋଟିଏ କାନ୍‌ଭାସ୍ ଉପରେ ଅନୁଭବ କରୁଛି ଚଳିତ ଶତକର ମାନବ! ନିଦରେ ଫିଟୁନି ପାଟି, କଙ୍କଡ଼ାଟେ ତଣ୍ଟିକୁ ଚିପି ଧରିଛି ଏବଂ ପଚାରିଛି, 'ସତ କହ ଧର୍ମବକ, / କେଉଁ ପରନାରୀ ହରିବାକୁ ମନ ତୁ ବଳାଇଥିଲୁ ସତ କହ।' ପ୍ରଳାପରେ କିଛି କହିବା ଆଗରୁ, ଦେହ ମୋ ଯାବୁଡ଼ି ଧରି ବସିଥିଲେ / ଧର୍ମପତ୍ନୀ...!

'ମୁଁ' କିଂତୁ ପାହାଚ ଓହ୍ଲେଇ ଯାଏ / ଆଉ କେଉଁ ଉଚ୍ଚ ପାହାଚକୁ / ବହୁତ ଚଢ଼ା ଉତରା..., କାବ୍ୟ ନାୟକ ସାମାଜିକ ଅଭିଯୁକ୍ତ କିଂତୁ ବୃତ୍ତିରେ ବହୁ ପଦବୀର ଚଢ଼ିଚି ପାହାଚ! ମାତ୍ର ତା' ଚରିତ୍ରର ଗୁମର - 'ସଂପର୍କର ମାନସାଙ୍କ / ବୁଝି ନପାରି ସରଳା ବାଳିକାଟିଏ / ବିଶ୍ୱାସରେ ମୋ ଦେହ ଉପରେ / ଡ଼ିଆଁ ଡ଼େଇଁ କରିଗଲା / ଯା ବୃତ୍ତାନ୍ତ ଅତିସାଧାରଣ! ଯେତେବେଳେ ଖୋଲିଗଲା, ସେହି 'ଅତିସାଧାରଣ', ସମାଜର ଖାଉଦଙ୍କ ପାଖରେ ତାକୁ କରିଦେଲା 'ବିପକ୍ଷ'।'

ଅକିଂଚନର ଆସିବା ପୂର୍ବରୁ - 'ସବୁ ଭଲ ଥିଲା! କବି ସ୍ୱତତୋକ୍ତି କରିଛନ୍ତି, 'ଏବେ କ'ଣ ହୋଇଚି ସେ ଆସିବା ପରେ କେଜାଣି, ବ୍ୟାଙ୍କରେ

ନୋଟ ବଦଳ ତାରିଖ, ଘନଘନ ଫୋନ୍ ବଂଦ, ମାଲକାନଗିରିକୁ ଭିଶୋଇଙ୍କ ବଦଳି; ତାକୁ ପକାଇଛି ଅସୁବିଧା ଓ ମାନସିକ ଚାପ । କାରଣ ତା' ଯୌନ ବିକାରର ଯେତେ ବ୍ୟର୍ଥ ସାର୍ଥକତା' - ଏ ଗୁଡ଼ିକ ?

୨୦୧୮ମସିହା ଆସିଲା ତା' ସାମାଜିକ କ୍ୟାଲେଣ୍ଡର ଫର୍ଦ୍ଦ ପଛରେ ଲେଖି ଗୋଟିଏ ଅସୁସ୍ଥ ମାନସିକତା 'କାଷ୍ଟିଂ କାଉଚ' ସିନେମାରେ ଓ ସାହିତ୍ୟରେ ଏବଂ ତାହା ପାଖକୁ ଆଉ ଗୋଟିଏ ନୂଆ ସ୍ୱୀକାରୋକ୍ତି 'ମିଠୁ' ! ଅସଂଖ୍ୟ ପାହାଚ ଚଢ଼ା ଧର୍ମବକ କେତେ ଅଯାଚିତ ସୁଖ ବିପକ୍ଷରେ ଦେଖୁଥିଲେ ଦୁଃଖ ! କୁଢ଼କୁଢ଼ ମୂର୍ଦ୍ଧାର ଭିତରେ ସେମାନଙ୍କୁ ମିଳୁନଥିଲେ ନିଜ ଲୋକ ! କବିତା କବିଙ୍କ ଦି ଇସ୍ୟୁ ଅଫ୍ ହିଜ୍ ଟାଇମ୍ !

ଜୀବନକୁ ସିଧା ଉଦ୍ଦୀପକ କରି ନାହାନ୍ତି କବି । କବିତା କୋମଳ ପାଖୁଡ଼ା ସଂପନ୍ନ ସୌନ୍ଦର୍ଯ୍ୟବତୀ, ସମୟର ମୁହଁ । ବାସ୍ତବ ଜୀବନ ପ୍ରକ୍ରିୟା ଭିତରୁ ତାଙ୍କ କବିତାର ଅନିବାର୍ଯ୍ୟ ଆଦର୍ଶ ବିଶ୍ୱସ୍ତତାର ସହିତ ବିକଶିତ । ଶେଲୀଙ୍କ ସମୟରେ ଥିଲା, ପୋଏଟ୍ରୀ ଇଜ୍ ଇମେଜ୍ ଅଫ୍ ମ୍ୟାନ୍, ଏବେ ତାହା ମ୍ୟାନ୍ସ ଆକ୍ଟିଭିଟୀ ଏବଂ ତା' ମାଇଣ୍ଡସ୍ ଆକ୍ଟିଭିଟୀ ! ଲକ୍ଷ୍ୟ କରିହେବ ଏହି ଧାଡ଼ି ଦୁଇଟିରୁ ସମକାଳ ତତ୍ତ୍ୱଟି - 'ସେ ଆଖିର ଦି'ପଟ ରୁଟିରେ / ପେଟ ପୂରିଯାଏ ଅକିଂଚନର' (ପୃଷ୍ଠା ୧୩) ।

ସେ ଆଖି ଦୁଇଟି କାହାର ? ଓଡ଼ିଶାରେ ଆଖି ଦୁଇଟି କେବଳ ଜଣକର, ସିଏ ଚକା ଆଖି ! ମହାନାୟକଙ୍କର ! ପରବର୍ତ୍ତୀ ପର୍ଯ୍ୟାୟକୁ କାବ୍ୟ ନାୟକ 'ଅକିଂଚନ' ଲଭିଛି ଦର୍ଶନ ସୁଖ । ଘଟିଛି ଆଧାତ୍ମିକତାର ଉତ୍ତରଣ । କାବ୍ୟ ନାୟକର ଆସ୍ପୃହାରେ ବିଶେଷତ୍ୱପୂର୍ଣ୍ଣ ଇମୋସନ୍, ଅଭିବ୍ୟକ୍ତିରେ ରହିଛି ଟ୍ରାଡ଼ିସନ୍‌ର ପ୍ରଶସ୍ତ ବିଶେଷତ୍ୱ । ଯେଉଁଠି ନୂଆ ଇମୋସନ୍ ମୂଲ୍ୟବୋଧ ଦୃଷ୍ଟିରୁ ନୁହେଁ ଉପଯୁକ୍ତ ଏବଂ ସ୍ୱାଦିଷ୍ଟ । ସେହି ପୁରୁଣା ଇମେଜ୍‌ମାନ କେତେ ସୁଭୋଗ୍ୟ ! ଦେଖନ୍ତୁ ଏହି 'ଦର୍ଶନ ସୁଖ' -

ଦୂରରୁ ଉଚ୍ଚ ସ୍ୱରରେ ଡ଼ାକେ ଗଜରାଜ
ଡ଼ାକେ ମୁକ୍ତକେଶା ଅର୍ଦ୍ଧୋଲଗ୍ନା କୂଳବଧୂ
ନିଆଁ ଘେରରେ ପଡ଼ିଥିବା ହରିଣୀ
କପୋତୀର ସଂସାର
ଏତେ ବେଳେ ଜଳୁଥାଏ ବନସ୍ତ ।

ପୌରାଣିକ ନୈତିକତା ଓ ଦାର୍ଶନିକତା, ଯେଉଁଥିରେ ନିବିଷ୍ଟ ହୁଏ ମନ, ପ୍ରାଚୀନ ଚେତନାର ଚେର ଇମେଜ୍ ମାଟିରେ ସୁଦୃଢ଼, ମାନବିକତାକୁ କରୁଛି ବଳିଷ୍ଠ । ନାଂଦନିକତା କାବ୍ୟିକ ଉଚ୍ଚାରଣରେ ନୁହେଁ ଅସଂଲଗ୍ନ ବା ବିଚ୍ୟୁତ ! ଏଠାରେ ଅଭିବ୍ୟକ୍ତ ଚିତ୍ର ସୁନ୍ଦର ଏବଂ ତାହା ଠାରୁ ସୁନ୍ଦର ବା ସୁନ୍ଦରତର ପଂକ୍ତିମାନଙ୍କ ଉଦ୍ଦେଶ୍ୟ । ଏହା ପରିପକ୍ୱ ଜୀବନର ସ୍ୱର ।

ପ୍ରଭୁଙ୍କ ସମୀପରେ ଝାଳେଇ ଯାଏ ସର୍ବାଙ୍ଗ
ଶିହରି ଉଠନ୍ତି ଉଭୟ
ଭକ୍ତ ଓ ଭଗବାନ ।

କବିତା ଜୀବନର ବ୍ୟାଖ୍ୟା କରିବା ସହିତ କରିଛି ଆଧ୍ୟାତ୍ମିକ ଅନୁଭବର ବ୍ୟାଖ୍ୟା । କାବ୍ୟିକ ସତ୍ୟ ଓ ସୌନ୍ଦର୍ଯ୍ୟ କବିତାର ଭାଗ୍ୟକୁ କରିଛନ୍ତି ନିୟନ୍ତ୍ରିତ । ଏଠାରେ ସାଧାରଣ ଅନୁଭବର ଇମେଜ୍ ନାହିଁ, ବରଂ ଶାସ୍ତ୍ରୀୟ ଉପଲବ୍ଧିର ସୌନ୍ଦର୍ଯ୍ୟ କବିତାକୁ କରିଛି ପ୍ରାଣବନ୍ତ । ଗୋଟିଏ ଧାଡ଼ି ଲେଖିଛନ୍ତି ଆଲୋଚକ ୱାର୍ଡ଼ସୱାର୍ଥ, The poet writes under one restriction only, namely, the necessity, of giving immidiate pleasure to a human Being, ମାନବୀୟ ସତ୍ତାକୁ ସୁଖ ଲାଗେ, ସୁନାବେଶରେ ଫଟୋ ଦେଖିଲେ / ତିନି ରଥରେ / ଇଚ୍ଛା ହୁଏନା ଅକିଂଚନର ଆନନ୍ଦୃଶ୍ୟ, (ପୃଷ୍ଠା ୧୫) । ଅଭିବ୍ୟକ୍ତିର ବାସ୍ତବବାଦୀ ଏକ ନୂଆ ଠାଣି, 'ଦୂରଦର୍ଶନ ହିଁ ଅଟେ ସମୀପ ଦର୍ଶନ' !

ଆଲେକ୍‌ଜାଣ୍ଡାର୍ ପୋପ୍‌ଙ୍କ ଏକ ବାକ୍ୟାଂଶ ଏଠାରେ ଯଥାର୍ଥ, So vast is art, ଶୁଣାଯାଉଛି ସହଜ କିଂତୁ ଭାବଟି ବ୍ୟାପକ । 'ଦୂରଦର୍ଶନ' ଟେଲିଭିଜନ୍ ଅନୁଷ୍ଠାନ ହେବାବେଳେ ଦୂରଦର୍ଶନ ଅନ୍ତର୍ଚକ୍ଷୁରେ ଅନ୍ତର୍ଚେତନାର ଦର୍ଶନ । ହୁଏତ ଏହା 'ମୁଁ' ର ସ୍ୱର୧ ଯେଣୁ ଆଗକୁ ବଢ଼ାଯାଇଛି ପଂକ୍ତି, - 'ମୋ ଭିତରେ କେଉଁଠି ଥିଲା ଏ ସତ୍ତା', (ଅକିଂଚନର ଉପନ୍ୟାସ) । ଆଉ ଗୋଟିଏ ଚିତ୍ର, 'ଦିଗବିଦିଗ ଧାଉଁଥିବା ସେ ଗଣ୍ଡ ଭୈରବ / ଖୋଜୁଥାଏ କେଉଁଠାରେ ନୀଡ଼' ! ଆତ୍ମ-ପକ୍ଷୀର ନୀଡ଼ ଦେହ ନୁହେଁ, ଏକ ଅଦ୍ୱୈତ ସ୍ଥିତିର ଅନୁଭବ, 'ଯୁଗଳ ମୂର୍ତ୍ତି' ! ମୁଁ ତ ସେହି ସଦା ପରଦେଶୀ / ସୌଦାଗର, ପାରମ୍ପରିକ ଆତ୍ମାଙ୍କ ଦେହାନ୍ତର ଚେତନାର ନବ ଚିତ୍ରକଳ୍ପ !

ଟ୍ରାଡ଼ିସନ୍ ଏଣ୍ଡ୍ ଦି ଇଣ୍ଡିଭିଜୁଆଲ୍ ଟାଲେଣ୍ଟ ପ୍ରବନ୍ଧର ପ୍ରଥମ ପର୍ବରେ ଇଲିୟଟ୍ ସ୍ୱୀକୃତି ଦେଇଛନ୍ତି, ଇଂରାଜୀ କବିତାରେ ସମସ୍ତ ୟୁରୋପୀୟ ସାହିତ୍ୟ ତଥା ହୋମର୍‌ଙ୍କ ଠାରୁ ନିଜ ଦେଶ ରଚନାର ଅନୁଭବ ଓ ଜୀବନ ପ୍ରକ୍ରିୟାର ଅନୁଭବ ରହିବ ଏକକାଳୀନ ! ଅକିଂଚନର ଉପନ୍ୟାସରେ ସମଗ୍ର ଭାରତୀୟ ସାହିତ୍ୟର ଅନୁଭବକୁ ନିଜ ଭୂଖଣ୍ଡର ବ୍ୟାପକ କରାଯାଇଛି,

ଆଶ୍ରମ ପାଳିତା ସେ କନ୍ୟାଟିଏ
କେଉଁ ଋଷି ଆଉ କେଉଁ ଅପ୍ସରାର
ପ୍ରେମର ସନ୍ତତି ।
ସେ ବାଳିକା ନାଁ ତା'ର ମନେ ନାହିଁ,
କେବେ ତାକୁ ଦେଖିଥିଲି ଦରୀ ରଂଗମଂଚେ
ଦେବଦାସୀ ସୁତନୁକା ବେଶେ
ଅବା କେବେ ଫେରୁଥିଲା ଅଳକା ପୁରୀରୁ
ମେଘର ବୋଇତେ ବସି
ଏକାକିନୀ ଯକ୍ଷବଧୂ... ।

ପ୍ରଥମ ଚିତ୍ର ମହାଭାରତ ଗ୍ରନ୍ଥସ୍ଥ 'ଶକୁନ୍ତଳା' ଓ କାଳିଦାସଙ୍କ ଅନବଦ୍ୟ ନାଟକ ଅଭିଜ୍ଞାନ ଶକୁନ୍ତଳମ୍ । ସମକାଳ ଅନୁଭୂତି – 'ତାକୁ ଦେଖିଥିଲି ଦରୀ ରଂଗମଂଚେ', ଐତିହାସିକ ଅନୁଭୂତି, ସୁତନୁକା ନାମ ଦେବଦାସୀକ୍ୟ ତଂ କାମୟିତ ବାଲନାଶେୟ ଦେବଦିନ୍ନେ ନାମ ଲୁପଦ କଥିଛେ, ପ୍ରାକୃତ ଭାଷାର ସରଗୁଜା ପାହାଡ଼ର ଶିଳାଲେଖ ! ଶେଷ ଚିତ୍ରକଳ୍ପ ଏକାକିନୀ ଯକ୍ଷବଧୂ, ବିଶ୍ୱ ପ୍ରସିଦ୍ଧ ମେଘଦୂତର ଅନୁଭବ ରିଲ୍ ପାଠକ ସ୍ମୃତିପଟରେ ଦେଇଛି ଫିଟାଇ ।

ଗୋଟିଏ ଉଚ୍ଚ ମୂଲ୍ୟବୋଧକୁ କବିତାର ଆଙ୍ଗିକରେ ଅନ୍ୱେଷା କରିଛନ୍ତି କବି ! 'କେଉଁଠାକୁ ଚାଲିଗଲେ ସେ ଋଷି ପ୍ରବର' 'ସେ ବାଳିକା ହାତ ମୋର ଧରି ପଚାରଇ, ସଂସ୍କୃତିର ଅବକ୍ଷୟ କାଳ । ମଣିଷର ବିଚିତ୍ର ଶୋଷ, ଯାହା ପାଇଁ କୁରୁକ୍ଷେତ୍ର ହିରୋସୀମା / ନାଗାସାକୀ ହୋଇନି ଯଥେଷ୍ଟ, 'ମୋର ମନେ ହୁଏ ଅଧୋଗତି' ! କଳସୀରୁ ପାଣି ଢ଼ାଳୁଥିବା ଇଏ ସଭ୍ୟତାର 'ସୁକେଶୀ ବାଳିକା ! ନୈତିକତାର ଧଳାଧୋତି ଓ ଚାଦର ସ୍ୱାଭିମାନରେ ଅଥଚ ଚକ୍‌ମକ୍ !'

ଚିତ୍ରକଳ୍ପମାନଙ୍କ ଭିତରେ ସମକାଳ ଜୀବନଟି ପ୍ରଚ୍ଛନ୍ନ । ସେ ଜୀବନ କବିତାପରି ନୁହେଁ ସୁଂଦର କିଂବା ବୋମା ବିଧ୍ୱସ୍ତ ହିରୋସୀମା ପରି ନୁହେଁ ଭୟାନକ । ସଂସାରର ପାଚିଲା ଧାନ କ୍ଷେତକୁ ଆସୁଥିବା ଏବଂ ଯାଉଥିବା ଗୋଟିଏ ପକ୍ଷୀ ଜୀବନ (କଟାସ ଠାରୁ ଚଢ଼େଇ ଯାଏଁ) ! 'ଦେହକୁ ଝୁଣିଝୁଣି / ଅସାଡ଼ କରି ଦେଇଥିବା ଜନ୍ତୁ', ବ୍ୟାଧି ଏବଂ ଶେଷ ବ୍ୟାଧି ମୃତ୍ୟୁ ! ପକ୍ଷୀଟିକୁ ଶିକାର କରିଦିଏ ବ୍ୟାଧ ! 'ଆନ୍ ଏସେ ଅନ୍ କ୍ରିଟିସିଜିମ୍' କାବ୍ୟିକ ପ୍ରବନ୍ଧରେ ଦୁଇଟି ପଂକ୍ତିରେ ପୋପ୍ ବାଢ଼ିଛନ୍ତି ତତ୍ତ୍ୱ,

Life, force and beauty must to all impart

At once the source, and end, and test of Art.

ଜୀବନ ଶକ୍ତି ଏବଂ ସୌନ୍ଦର୍ଯ୍ୟ କାବ୍ୟିକ ଉତ୍ସ ପାଇଁ ପ୍ରଦାନ କରିଛି ଅଂଶ । ଏହି ତ୍ରିଦୃଷ୍ଟି କଳାର ମାନ ନିର୍ଣ୍ଣୟକ । କଳାର କଳାକୁ ବ୍ୟବହୃତ ପ୍ରତୀକ କଳାତ୍ମକ କରିବା ସହିତ କରିଛି ରହସ୍ୟମୟ । ରହସ୍ୟବାଦ ସାମାଜିକ ପ୍ରତୀକବାଦ ଭିତରେ କବିତାମାନଙ୍କୁ କରିଛି ସମୃଦ୍ଧ । କିଏ ଏଠୁ କ'ଣ ନେଇ ପଳେଇବ, ନୀଳାମ୍ବୁ ଚିଲିକାର ଅଜଣା ତୁଠରେ ଠିଆ ହୋଇଛି କାବ୍ୟ ନାୟକ । ତା' ହୃଦୟରେ ଭର୍ତ୍ତି ଭଲ ପାଇବା, ତା' କାନ୍‌ଭାସ୍‌ରେ ଭର୍ତ୍ତି ନୂଆନୂଆ ରଂଗୀନ ଚିତ୍ର, ଯାହା ତା'ର ବଂଚିବା ! ଯାହା ତା'ର ସଂଚିତ ଅନୁଭୂତିର ଅର୍ଜନ, ରମ୍ୟ କାବ୍ୟିକ ବୀକ୍ଷଣ ! ଏହାକୁ ଶୀର୍ଷକଟିଏ ପ୍ରଦାନ କରିଛନ୍ତି କବି 'ଭାବ କୁଣ୍ଡଳିନୀ' ।

ମୂଳାଧାର ଚକ୍ରରେ ଶାୟିତ ଶକ୍ତିର ନାମ କୁଣ୍ଡଳିନୀ ଶୟନ ସ୍ଥାନଟି କୁଣ୍ଡପରି ହୋଇଥିବାରୁ କୁଣ୍ଡର ଅଧୀଶ୍ୱରୀ ସିଏ କୁଣ୍ଡଳିନୀ ! 'ଭାବ କୁଣ୍ଡଳିନୀ' ଏକ ମେଟାଫର୍ । ମାକ୍‌ଲିସ୍ ଲେଖିଛନ୍ତି, ମେଟାଫର୍ ଇଜ୍ ଏ ରିଲେସନ୍‌ସିପ୍ । ଆରିଷ୍ଟଟଲ ଏହାର ଅର୍ଥ ଭାବନ୍ତି, 'ଏ ଗୁଡ୍ ମେଟାଫର୍ ଇଂପ୍ଲାଇଜ୍ ଦି ଇନ୍‌ଟ୍ୟୁଟିଭ୍ ପର୍‌ସିପ୍‌ସନ୍ ଅଫ୍ ଦି ସିମିଲାରିଟୀ ଇନ୍ ଡ଼ିସ୍‌ସିମିଲାରସ୍ ?' ମାକ୍‌ଲିସ୍ ମେଟାଫର୍‌ର କେତୋଟି ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି, ଯଥା Vegetable Love, Time's winged chariot, Time's slow - chapt power, the iron gate of life ପ୍ରଭୃତି, (ପୋଏଟ୍ରୀ ଏଣ୍ଡ୍ ଏକ୍ସ୍‌ପିରିଏନ୍ସ, ପୃଷ୍ଠା ୮୫) ।

"ଶୈବାଳ ଶରୀର ସତେ ଅନନ୍ତର / ଅଭ୍ୟନ୍ତର ନିଭୃତ ଅନ୍ତର ।" ବସ୍ତୁ ଦୃଶ୍ୟ ଏଠାରେ ବାସ୍ତବ ଜଗତ ଠାରୁ ଊର୍ଦ୍ଧ୍ୱ ଅତୀନ୍ଦ୍ରିୟ ଜଗତ ସହିତ ତୁଳିତ । ସୀମିତକୁ ଅସୀମ କରିବା କବିତାର କାମ । ଅନ୍ୟ ପକ୍ଷରେ, ଦି ଆର୍ଟ ଇଟସେଲ୍ଫ ଇଜ୍ ନେଚର, (କଲେରିଜ୍), କବିତା ନିଜେ ପ୍ରକୃତି । ତେଣୁ କବି ଉଚ୍ଚାରଣ କରିଛନ୍ତି,

କେଉଁଠୁ ଆରମ୍ଭ ତା'ର

କେଉଁଠାରେ ଶେଷ

କେଉଁଠାରେ ଆଗ ତା'ର

କେଉଁଠାରେ ପଛ ? (ଉଚ୍ଛଳ ଜଳଧି)

କିଏ ଏଇ ନୀଳ ଶୈବାଳ, ସେଇ ଘନନୀଳ କଳେବର ସର୍ବେନ୍ଦ୍ରିୟ ବିବର୍ଜିତ ଓ ସର୍ବେନ୍ଦ୍ରିୟ ଗୁଣାଭାସ ରହସ୍ୟ ନୁହନ୍ତି ତ ? ସେ ନୁହନ୍ତି ତ ବାଙ୍କି ମୁହାଣରୁ ଜଳରୁ ପ୍ରାପ୍ତ ଏବଂ ଶୈବାଳ ଜଳରୁ ଜାତ ବ୍ରହ୍ମ ଦାରୁ ? 'ଆଶୀଷ କଳି କଲୁଷର' !

ୱାର୍ଡ୍‌ସୱାର୍ଥ ରଖିଛନ୍ତି ମତ, Poetry is the most philosophic of all writing, କବିତାର ସ୍ୱାଦ, a taste for rope-dancing! ରଜ୍ଜୁରେ ପାଦ ଦେଇ ଚାଲିବା ଯେମିତି ! ଯଦି ବାଜିକର ରଜ୍ଜୁରେ ପୟର ଦେଇ ନ ପାରିବ ଚାଲି, ହସି ଦେବେ ଥୋକେ ବାଦ୍ୟକାର ଦେବ ଗାଳି ! କବିତା ଆଦର୍ଶ ଯୁକ୍ତ ବା ଆଦର୍ଶ ସଂପନ୍ନ ହେବା ଅନିବାର୍ଯ୍ୟ, ଏହା ପ୍ରତ୍ୟାଖ୍ୟାତ । ଏଥିରେ ହଠାତ୍ ବିବର୍ଜିତ । ଯାହା ବିଦ୍ୟମାନ ତାହାର ରମଣୀୟ ଉପସ୍ଥାପନ ହରିହର ମିଶ୍ରଙ୍କ କବିତାର ସ୍ୱଭାବ । ପ୍ରେମିକାର ସାନ ଭଉଣୀ ତା' ବିବାହ ଫୁଲ ସଭାରେ ହାର୍ମୋନିୟମ ଧରି ଗାଇଥିବା ଗୀତ, ରୋମାଂଟିକ୍ ଚେତନାର ଚଂମକ 'ଅକିଂଚନ' ବେଳକୁ ତିରୋହିତ, କହୁଛି କାବ୍ୟ ନାୟକ । ଯେଣୁ ସିଏ ଜାଣି ଗଲାଣି ବୁଦ୍ଧଙ୍କୁ, ଏବଂ ବୁଦ୍ଧ ପ୍ରାପ୍ତି ହିଁ ଯେମିତି ତା' ଲକ୍ଷ୍ୟ !

'ମହାନଦୀ+ ବାଣାନାସି, ନରସିଂହପୁର' କବିତାଟିରେ ତୃତୀୟ ଛତ୍ରରେ ପ୍ରଥମେ ଅନୁପ୍ରବେଶ କରିଛି ପ୍ରଶ୍ନ, କେଉଁଠାରେ ବୁଦ୍ଧ, ସେହି ପ୍ରଶ୍ନର ପୁଣି ରିପିଟ୍ ଶେଷ ଆଡ଼କୁ, କେଉଁଠି ସେ ଅବଲୋକିତେଶ୍ୱର ? ଅବଲୁପ୍ତ ଗୋଟିଏ ପ୍ରାଚୀନ ସଂସ୍କୃତିକୁ ଏଠାରେ ଖୋଜା ଯାଇଛି । ଉତ୍କଳରେ ଗୋଟିଏ ସମୟରେ ବୌଦ୍ଧ ସ୍ଥାପତ୍ୟକୁ ଶିବଲିଙ୍ଗରେ ବଦଳାଇ ଦିଆଯାଇଛି । ପ୍ରତ୍ନତାତ୍ତ୍ୱିକ ପ୍ରମାଣ ପ୍ରାପ୍ତ ହୋଇଛନ୍ତି । ଅନ୍ୟ ପକ୍ଷରେ ଶ୍ରୀମନ୍ଦିର ଦ୍ୱାର ଦଶାବତାର ମୂର୍ତ୍ତି ମରାମତି ପରେ ବସାଯିବା ବେଳେ ଗୋଟିଏ ବିତର୍କର ଶିଖା ଉଠିଛି, ନବମ ଅବତାର ବୁଦ୍ଧ ମୂର୍ତ୍ତି ନୁହେଁ ! ମତଲବୀମାନଙ୍କ ବୟାନ ବାଜି ଭକ୍ତି ପ୍ରାଣ ଲୋକଙ୍କୁ କରିଛି ବିସ୍ମିତ । କଲେରିଜଙ୍କ ଦୃଷ୍ଟିରେ କବିତା, ଏକ୍ସକ୍ଲୁଡେସ୍ ଅଲ୍ ଆକ୍ସିଡେଣ୍ଟ ଏବଂ ଅନିବାର୍ଯ୍ୟ ଆଦର୍ଶକୁ କରେ ଆଭଏଡ୍, ମାତ୍ର କବିତାର ଅବ୍‌ଜେକ୍ଟ ସତ୍ୟ; ଦେଖା ଯାଇପାରେ ଏହି ଦୃଷ୍ଟାନ୍ତ–

କାହା ପାଇଁ ଉତ୍‌ଥିତ ଏ ବାଣ ଲିଙ୍ଗ,<br>
ବାଟ ଖୋଜେ ଚିତ୍ରୋତ୍ପଳା ନୀଳ ଗର୍ଭାଶୟେ<br>
ବିଂନ୍ଦୁ ପଡ଼େ ଝରି<br>
ପବନରେ ଉଡ଼ିଯାଏ କଳାମେଘୀ ଶାଢ଼ୀ ।

ଅନ୍ୟ ଗୋଟିଏ ଚମତ୍କାର ଛତ୍ର, ଯେଉଁଠି 'ପୋଏଟ୍ରୀ ଇଜ୍ ଦି ଇମେଜ୍ ଅଫ୍ ମ୍ୟାନ୍ ଏଣ୍ଡ ନାଚର୍' (ପ୍ରିଫେସ୍ ଟୁ ଲିରିକ୍‌କାଲ୍ ବାଲାଡ୍‌ସ, ୪୧୯–୪୨୦)–

କେଉଁଠାରେ ବୁଦ୍ଧ

କେଉଁଠୁ ଲାଗିଛି ରକ୍ତ ନୀଳ ଶାଢ଼ୀଟିରେ

ଆକାଶର ?

ଦର୍ପଣରେ ଓଠ ଚିହ୍ନ ପ୍ରତିବିମ୍ବ ପାହାଡ଼ର

ନିଜେ କରେ ନିଜକୁ ଚୁମ୍ବନ ।

ପ୍ରକୃତିକୁ ପ୍ରତିମାରେ ବଦଳାଇବାରେ କବି ହରିହର ମିଶ୍ର ବିଚକ୍ଷଣ ଶିଳ୍ପୀ । ଦେଖନ୍ତୁ ତାଙ୍କ ଅନୁଭବର ସ୍ଥାପତ୍ୟ -

ଶାଳ ପତ୍ରେ ହୀରା ମୋତି

ତୋଳୁଥାଏ ଦୁର୍ଦ୍ଦାନ୍ତ କାଠ କଟାଳି

ଠପ୍ ଠପ୍ ବୃଷ୍ଟି

ବର୍ଷା ବୁନ୍ଦା ଯେମିତି ହୀରା ମୋତି, ପ୍ରକୃତିର ଐଶ୍ୱର୍ଯ୍ୟ ! ତୃଷିତ କାଠକଟାଳି ଶାଳପତ୍ରରେ ପାନ ପାଇଁ ଜଳ ଆହରଣର ଏହି ଚିତ୍ର ! ପ୍ରାଚୀନ ସାହିତ୍ୟରେ ମାଘଙ୍କ ବର୍ଣ୍ଣନାପରି ମଧୁର ଓ ମଂଜୁଳ ଏହି ଦୃଷ୍ଟିକୋଣ ।

ଗୋପବନ୍ଧୁ ଦାସ ଲେଖିଛନ୍ତି,

ଭାରତେ କୈବଲ୍ୟ ସକଳ ଆଧାର

ଭାରତେ ଶ୍ମଶାନ ସ୍ୱରଗ ଦୁଆର ।

ଶ୍ରୀହରି ଚଂଦନ ଭାରତ କର୍ଦ୍ଦମ

କାରାଗାର ମୋର ସ୍ୱରାଜ୍ୟ ଆଶ୍ରମ ।

ଉତ୍କଳ ପୁଣ୍ୟ ଭୂମି । ତାହାର ସଂସ୍କୃତି ଏକ ନିଆରା ସମୃଦ୍ଧ ସଂସ୍କୃତି । ଯେଉଁଠି ମୃତ ଦେହ ହୁଏ ସଂସ୍କାର, ତାହା ଭୟାନକ ଶ୍ମଶାନ । କିଂତୁ ଭାରତରେ ଏକମାତ୍ର ଶ୍ମଶାନ ଶ୍ରୀକ୍ଷେତ୍ରରେ ବିଦ୍ୟମାନ, ଯାହାର ନାମ 'ସ୍ୱର୍ଗଦ୍ୱାର' । ସ୍ୱର୍ଗ ଗମନ ପଥର ଦ୍ୱାର ! 'ଅକିଂଚନ'ର ଦଶମ ଚିତ୍ର 'ତ୍ରସ୍ତ ସ୍ୱର୍ଗଦ୍ୱାର' । ଏହାର କାରଣ 'ତୁମ ଅନନ୍ତ ଶୟନ' 'ଅନନ୍ତ ଶଯ୍ୟା ଉପରେ କେତେ କାଳ / ସୁସୁପ୍ତ ଏ ନୀଳ କଳେବର ? ଭାରତ ନଦୀ ସଭ୍ୟତାର ଭୂମି । କାବ୍ୟ ନାୟକ ସ୍ମୃତିରେ ଚହଟିଛି, 'ନଦୀ ତୀରେ ପୋଛି କେତେ / ଆର୍ଯ୍ୟ ଓ ଅନାର୍ଯ୍ୟ ଛାଇ ଆସିଛି ମୁଁ (ପୃଷ୍ଠା ୩୮) ! ମୁଁ ମହାକାଳ । ସୃଜନ ଓ ବିଲୟର ନାହିଁ ଅନ୍ତ, ଏହା ହିଁ ତ ପରମ ବିସ୍ମୟ ! ଶୁଭୁଛି ଯେ ମୂରଲି ସ୍ୱନ / ରହ ରହ, ମୁଁ ଯିବି, ଯୁଆଡ଼କୁ ଚିରକାଳ ଗମନ କରୁଛନ୍ତି ସମସ୍ତେ ! ଡ଼ାକୁଚି ମୂରଲି ସେହି ମୃତ୍ୟୁର କୁଂଜକୁ !'

ଅନନ୍ତ ଶଯ୍ୟା ସହ ଉପରୋକ୍ତ ଇମୋସନ୍‌ରୁ ସୃଷ୍ଟି ଇମେଜ୍‌ମାନଙ୍କ ସଂପର୍କ କ'ଣ ? ସଂପର୍କଟି ପରବର୍ତ୍ତୀ କବିତା କରିଛି ସୂଚିତ, 'ସବୁକାଳେ ତମେ ଥିବ ମୋ ଭିତରେ / ମୁଁ ଥିବି ତମରି ଭିତରେ' ! କିଏ କାହା ଭିତରେ ଅଛି, ଏହା ଏକ କାବ୍ୟିକ ଭାବାବେଗ । ଶବ୍ଦମାନଙ୍କ ସଂପର୍କ ବରଂ ଏଠାରେ ଲଳିତ ଓ ଲାବଣ୍ୟ ଖଚିତ । ମୁଁ ଓ ତୁମେ ଏକ ଆପଣାର ଅନୁଭବ କବିତାର ଭଏସ୍‌କୁ କରିଛି ଜୀବନ୍ତ । କବିତା ଭିତରେ ବିଦ୍ୟମାନ ଆଧ୍ୟାତ୍ମିକତା ଏବଂ କବିତା ବାହାରେ ଯାହା ବିଦ୍ୟମାନ ତାହା ନୁହେଁ Isolation, ଜୀବନ ପ୍ରକ୍ରିୟାର ବରଂ ଏକ କଡ଼ !

ସାମାଜିକ ସିଂବଲିଜିମ୍ କାବ୍ୟିକ ରହସ୍ୟବାଦ (Mysticism)ରେ ପ୍ରାୟତଃ ସମସ୍ତ କବିତାରେ ବଦଳିଥିବା ଦୃଷ୍ଟିଗୋଚର ହୋଇଛି । ଜୀବନ ପ୍ରକ୍ରିୟାରେ ପବିତ୍ର ଉତ୍ତରଣ ସମସ୍ତ କବିତାର ଯେମିତି ପ୍ରାଣ ! ନିରୀକ୍ଷଣ କରାଯାଉ ଭିନ୍ନ ଏକ ଦୃଷ୍ଟାନ୍ତ – 'ଆମ ହାତରେ କ'ଣ ଅଛି, / ସେମାନଙ୍କ ରୂପ ଲାବଣ୍ୟ / ଯେ ନେଉଛି ଦେଉଛି / ସେ ଯେ କିଏ / ମୁଁ ଜାଣେନା ।'

ସେ କିଏ ? ଏହାକୁ ଜିଜ୍ଞାସା କରି ଆସିଛି ଅନାଦି କାଳରୁ ମାନବ । ସେହି ଜିଜ୍ଞାସାର ଉତ୍ତରରେ ନିର୍ମିତ ହୋଇଛି ଆମ ସାହିତ୍ୟ, ଧର୍ମ ଓ ସ୍ଥାପତ୍ୟ । ସେହି ଦିବ୍ୟ ରହସ୍ୟକୁ ପ୍ରଦାନ କରାଯାଇଛି ଏକ ନିଆରା ରୂପକଳ୍ପ 'ଅଜଣା ଷ୍ଟେସନ୍' । 'ଜୀବନଟା ରଫ୍‌ଖାତା', ଆଧୁନିକ ମଣିଷର ପ୍ରତ୍ୟେକ ମୁହୂର୍ତ୍ତ ବଂଚିବାର ଏକ ଏକ ପରୀକ୍ଷା ! ଏହାର ଅନ୍ତ ନାହିଁ ଯେମିତି ! ପ୍ରଭାତ ଓ ସନ୍ଧ୍ୟା ପିଛା କରୁଛନ୍ତି ଜଣେ ଅନ୍ୟ ଜଣକର ! ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ, ଆଶ୍ଚର୍ଯ୍ୟବତ୍.... କହନ୍ତି ଶାସ୍ତ୍ର । ଅନ୍ଧ ତୋଫାନ ବାଧା ନ ମାନିଲେ ଥାଇପାରେ ମୃତ୍ୟୁ, ପୁଣି ଥାଇପାରେ ବି ପ୍ରେମ (ପୃଷ୍ଠା ୫୨) !

ମୃତ୍ୟୁ ଓ ପ୍ରେମ ଦୁଇଟି ଯାକ 'Holy Ascension'ଏକ ଜାତୀୟ କାର୍ଯ୍ୟକଳାପ, ଏହାକୁ ଗ୍ରହଣ କରିଥାଏ ଉଚ୍ଚତର ଚେତନା । ରହସ୍ୟମୟ ଚେତନାର ଚକ୍ଷୁରେ...a virgin, Leader of ways;

A dancing but no movement! ଠିକ୍ ସେହିପରି –
Suddenly I was walking and not walking.
I looked at the flying birds: they had turned to stone.

- George Seferis, Engomi

ରହସ୍ୟବାଦୀ ତତ୍ତ୍ୱ ଯେତେବେଳେ କଳା ଆଙ୍ଗିକରେ ହୁଏ ବ୍ୟକ୍ତ, ସେତେବେଳେ ବ୍ରହ୍ମମୟ ହୋଇଯାଏ ଜଗତ। କବିତା ହୋଇଯାଏ ଶବ୍ଦମୟ। ଦୁଃଖ ଘେରରେ ଛଟପଟ ହେଉଥିବା ଜୀବନ ଦିନକୁ ଦିନ ହୋଇଆସେ ପ୍ରଶାନ୍ତ। ବ୍ୟାଧିର ଜାଲରେ ଛଟପଟ ହେଉଥିବା ଦେହର ନାଭି ଚକ୍ରରୁ ଅମୃତ ବିଂଦୁ ଆରମ୍ଭ କରେ ତାହାର କ୍ରିୟା। 'ମଦ୍‌ଗାଲିନି' (୨)' କବିତାରେ ଋଷୀୟ ବୋରିଶ ପାଶ୍ଚୁରନାକ୍‌ଙ୍କ ଫିଲିଂ-

That in the frightening interval
I shall grow up to the Resurrection.

'Earth' କବିତାରେ ସିଏ ବର୍ଣ୍ଣନା କରିଛନ୍ତି, ନିଶ୍ଚିତ ଏହା ମୋର ଡ଼ାକ, ଦୂରାନ୍ତରରୁ ହଜି ଯାଇନାହିଁ ହୃଦୟ, ସହର ସୀମାର ଉର୍ଦ୍ଧ୍ୱ, ପୃଥିବୀକୁ ଛୁଇଁବ ନାହିଁ ନିଃସଙ୍ଗବୋଧ! ଶ୍ରୀଅରବିନ୍ଦ ତାଙ୍କ 'ଟ୍ରାନ୍ସଫରମେସନ୍' କବିତାରେ ବ୍ୟକ୍ତ କରିଛନ୍ତି, 'ମୋ ଆତ୍ମା ଅଜ୍ଞାତ ଭାବେ ଅମାପ ଦୃଶ୍ୟ ଦିଗକୁ ପ୍ରଶସ୍ତ ହୋଇଯାଇଛି!' ସିଏ ଅନୁଭବ କରିଛନ୍ତି, -

My body is God's happy living tool
My spirit a vast sun of deathless light.

'ତେଢ଼ା ମଣିଷ କଥା' ରେ ହରିହର ମିଶ୍ର ରଖିଛନ୍ତି ଗୋଟିଏ ଚିତ୍ରକଳ୍ପ, 'ଷଣ୍ଢର ଶିଙ୍ଘ ହଲାଇବାରେ ଭୟ ଯେ/ କେତେ ସାଇଡ୍ ମାରି ବାଟ ଚାଲିବ?' ଏହି କବିତାର ଆରମ୍ଭ ଶବ୍ଦ 'ଡ଼ରିଲ'! ଇଲିୟଟ୍ 'ଇଷ୍ଟ୍ କୁକେର୍' ରେ ଭୟଟିର ମୀମାଂସା କରିଛନ୍ତି -

I said to my soul, be still, and let the dark
come upon you
which shall be the darkness of God.

'ଅକିଂଚନ'ର କାବ୍ୟନାୟକ ଘୋର ଦ୍ୱଂଦ୍ୱରେ ପଡ଼ିଛି, ସିଏ ଚିହ୍ନି ପାରି ନାହିଁ, 'କୋଉଟା ବୀଫ୍ କୋଉଟା ଖାସି!' କିଂତୁ ଇଲିୟଟ୍‌ଙ୍କ ନାୟକ ଚିହ୍ନିପାରିଛି, 'ଡ଼ାର୍କନେସ୍ ଅଫ୍ ଗଡ୍'! ସେହିପରି ଷଣ୍ଢଟିକୁ ଚିହ୍ନିପାରିଛି ହରିହର ମିଶ୍ରଙ୍କ 'ତେଢ଼ା ଲୋକ', ସିଏ 'ଧର୍ମ ବୃଷଭ', 'ଧରମ ବାଣ୍ଡୁଛି'!

ହଁ
ଷଣ୍ଢଟା କ'ଣ ବୁଝିଲା



**ନକୁଳ ଚନ୍ଦ୍ର ସାହୁ (୧୯୫୧)**

ନକୁଳ ଚନ୍ଦ୍ର ସାହୁ, ଭାଷାର ଭାସ୍କର୍ଯ୍ୟ, ଭଂଗୀର ଭିନ୍ନତା, ଭାବର ଭବ୍ୟତାରେ ଏକ ବିସ୍ମୟକର ବ୍ୟତିକ୍ରମ । ତାଙ୍କ ଆଲୋଚନାରେ ରହିଛି କାବ୍ୟିକତାର ଚାତୁର୍ଯ୍ୟ, କଥାକାରିତାର ଆକର୍ଷଣ । ତାଙ୍କର ପ୍ରକାଶ ଭଙ୍ଗିମା ଯେତିକି ଆଧୁନିକ ସେତିକି ସମୟ ନିର୍ଭର ଓ ସର୍ବକାଳିକ । ଓଡ଼ିଆ ସାହିତ୍ୟରୁ ଆନ୍ତର୍ଜାତିକ ସାହିତ୍ୟ ପର୍ଯ୍ୟନ୍ତ ତାଙ୍କର ଉଡ଼ାଣ କଳାତ୍ମକ ଓ ସିଦ୍ଧି ପିଣ୍ଡିତା ପ୍ରତିଟି ସ୍ୱାକ୍ଷର ତତ୍ତ୍ୱ ଓ ତଥ୍ୟ ସଂରଚନାରେ ସୌନ୍ଦର୍ଯ୍ୟମୟ ଓ ପ୍ରାଣବନ୍ତ ।

ଏକବିଂଶ ଶତାବ୍ଦୀର ଓଡ଼ିଆ କବିତା ଓ ହରିହର ମିଶ୍ର ବହିଟି ସମୀକ୍ଷା ଓ ସମାଲୋଚନାର ଶିଖର ସ୍ପର୍ଶୀ ଏକ କ୍ଲାସିକ । ହରିହର ମିଶ୍ରଙ୍କ କାବ୍ୟ ସୌନ୍ଦର୍ଯ୍ୟକୁ ଅନ୍ତର୍ଭେଦୀ ଦୃଷ୍ଟି ନେଇ ତା'ର ଭାବ ଭାବନା ସୂକ୍ଷ୍ମ ଆବେଦନକୁ ମାର୍ମିକ ଭାବେ ଆବିଷ୍କାର କରାଯାଇଛି । ବହିଟି ଉତ୍କଳୀୟ ସମକାଳ କାବ୍ୟିକ ସଂସ୍କୃତିର ଖଣ୍ଡିଏ ପ୍ରାମାଣିକ ଗ୍ରନ୍ଥ । ଓଡ଼ିଆ କାବ୍ୟିକ ସମୃଦ୍ଧିର ଅନନ୍ୟ ଭାସ୍କର୍ଯ୍ୟ ।

– ପ୍ରକାଶକ



₹200.00

ପକ୍ଷୀଘର ପ୍ରକାଶନୀ



978-81-932168-2-8

SAMAKAL KABYATATWA
O KABI HARIHAR MISHRA
An Essay
by Nakula Chandra Sahoo
A Pakshighar Publication 2019